

# ଜୀବନ ସ୍ମୃତି

## ଆତ୍ମଜୀବନୀ

ଯଦୁନାଥ ଦାଶମହାପାତ୍ର

# ଜୀବନସ୍ମୃତି

ଯଦୁନାଥ ଦାଶମହାପାତ୍ର

ଅଧ୍ୟୟନ
ବାଲୁଗାଁ, ଖୋର୍ଦ୍ଧା-୭୫୨୦୩୦

# ଜୀବନସ୍ମୃତି

(ଆତ୍ମ ଜୀବନୀ)

ଲେଖକ :
**ଯଦୁନାଥ ଦାଶମହାପାତ୍ର**

ପ୍ରକାଶକ :
**ଅଧ୍ୟୟନ**
ବାଲୁଗାଁ, ଖୋର୍ଦ୍ଧା-୭୫୨୦୩୦

ମୁଦ୍ରଣ :
**ଟେକ୍ନୋ ଆର୍ଟସ ଅଫ୍‌ସେଟ୍**
କଲ୍ୟାଣୀନଗର, କଟକ-୧୩

ପ୍ରଚ୍ଛଦ :
**ବିଜୟ ପ୍ରଧାନ**

ଅକ୍ଷର ସଜ୍ଜା :
**ଶବ୍ଦଲିପି**
କଲ୍ୟାଣୀନଗର, କଟକ-୧୩

ପ୍ରଥମ ସଂସ୍କରଣ :
**୨୦୧୩**

ମୂଲ୍ୟ : ଟ. ୨୦୦/-

**JIBANSMRUTI**

A autobiography

Author :
**Jadunath Dashmohapatra**

Publisher :
**Adhyayan**
Balugan, Khurda-752030

Printed at
**Techno Arts Offset**
Kalyani Nagar, Cuttack-13

Cover :
**Bijaya Pradhan**

D.T.P :
**Sabdalipi**
Kalyani Nagar, Cuttack-13

First Edition :
**2013**

Price : Rs. 200/-

# ସୂଚୀ

# ବଂଶ ପରିଚୟ

ବାଲେଶ୍ୱର ଜିଲ୍ଲା ସୋର ଥାନା ଅନ୍ତର୍ଗତ କୁଡ଼େଇ ଗ୍ରାମର ପ୍ରସିଦ୍ଧ ପ୍ରହରାଜ ବଂଶ ଜିଲ୍ଲାରେ ଏକ ପ୍ରସିଦ୍ଧ ଜମିଦାର ପରିବାର । ପରିବାରର ଇତିହାସ ଅତ୍ୟନ୍ତ ପ୍ରାଚୀନ । ଏହି ପରିବାରର ପ୍ରଥମ ବସତି ଥିଲା କାନ୍ୟକୁବ୍ଜ । ପୂର୍ବକାଳରେ ଓଡ଼ିଶାର ରାଜା କାନ୍ୟକୁବ୍ଜରୁ କିଛି ବ୍ରାହ୍ମଣ ପରିବାରଙ୍କୁ ଆଣି ଯାଜପୁରରେ ଥଇଥାନ କରିଥିଲେ । ପରବର୍ତ୍ତୀ କାଳରେ ସେହି ପରିବାରରୁ ଜଣେ ସୋରଠାରେ ପ୍ରତିଷ୍ଠା ଲାଭ କରିଥିବା ଗୋସେଇଁ ପୋଖରି ଆଡ଼ିରେ ଥିବା ମହାଦେବ ମନ୍ଦିରର ପୂଜକ ହୋଇ ସୋରକୁ ଚାଲି ଆସିଥିଲେ । ମନ୍ଦିର ପାଖରେ ସେ ପୋଖରି ଓ ଖୋଲା ପଡ଼ିଆ ଆଜି ବି ଅଛି । ଏହାର ଆଉ କିଛି ଦୂରରେ ଏକ ବିରାଟ ପୋଖରି ଓ ପୋଖରି ଆଡ଼ିରେ ମୁସଲମାନଙ୍କ କବରସ୍ଥାନ ଓ ଟିକିଏ ଛାଡ଼ି ଏକ ଦରଘା ରହିଅଛି । ପୂର୍ବକାଳରେ ସୋର ଏକ ପ୍ରସିଦ୍ଧ ଜନବସତି ଥିଲା । ସୁରସେନ୍ ନାମକ ଜଣେ ରାଜା ଏଠାରେ ରାଜତ୍ୱ କରୁଥିଲେ ବୋଲି ଜନଶ୍ରୁତି ଅଛି । ବର୍ତ୍ତମାନ ସୋର ଡାକ୍ତରଖାନା ଯେଉଁ ମାଟିସ୍ତୂପ ଉପରେ ଅବସ୍ଥିତ, ସେହି ସ୍ତୂପକୁ ଯଦି ଖନନ କରାଯାଏ, ହୁଏତ ତା' ଭିତରୁ ପ୍ରାଚୀନ ଭଗ୍ନାବିଶେଷ କିଛି ମିଳିପାରେ । ଏହି ସ୍ତୂପ ଚତୁଃପାର୍ଶ୍ୱରେ ଥିବା ବିଭିନ୍ନ ସାହିର ନାମକରଣରୁ ସ୍ପଷ୍ଟ ଜାଣିହୁଏ ଯେ ଅତୀତରେ ଏଠାରେ କୌଣସି ରାଜାଙ୍କର ବସତି ଥିଲା । ସେ ସବୁ ସାହିର ନାମ ହେଲା - ପାଇକସାହି, ଖଣ୍ଡାସାହି, ଗୁହାରିଆସାହି, କୋଦଣ୍ଡପୁର, ଛତ୍ରପୁର, ରାଉତରାୟପୁର, ରାୟପୁର, ମୁବାରକ୍‌ପୁର ପ୍ରଭୃତି ।

ସପ୍ତଦଶ ଶତାବ୍ଦୀର ଶେଷଭାଗ ଏବଂ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ମରହଟ୍ଟା ରାଜତ୍ୱ କାଳରେ ରଘୁଜୀ ଭୋନ୍‌ସ୍ଲେଙ୍କ ପ୍ରଧାନମନ୍ତ୍ରୀ ଭାସ୍କର ପଣ୍ଡିତ ଓଡ଼ିଶା ଆସି ଗୋସେଇଁ ପୋଖରି ଆଡ଼ିରେ ତମ୍ବୁ ପକାଇ ରହିଥିଲେ । ତାଙ୍କ

ସହିତ ଆସିଥିବା ତାଙ୍କ ପୁଅ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ଔଷଧ ସେବନରେ ତାଙ୍କ ପୁଅ ଭଲ ହେଲେ ନାହିଁ । ପୋଖରି ଆଡ଼ିରେ ତାଙ୍କ ତମ୍ବୁ ପାଖରେ ଥିବା ଶିବ ମନ୍ଦିରରେ ଶିବପୂଜା କରିବାପାଇଁ ପୂଜକଙ୍କୁ ଦାୟିତ୍ୱ ଦେଲେ । ସେ ନିଜେ ନିର୍ଜଳ ରହି ସଂକଳ୍ପ କରି ପୂଜାରେ ବସିଲେ । ପୂଜା ଆରମ୍ଭ ହେବା ମାତ୍ରେ ତାଙ୍କ ପୁଅ କ୍ରମଶଃ ଆରୋଗ୍ୟ ହେବାକୁ ଲାଗିଲେ ଓ ସଂପୂର୍ଣ୍ଣ ରୋଗମୁକ୍ତ ହେଲେ । ପଣ୍ଡିତଜୀ ପୂଜକଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ଅନେକଗୁଡ଼ିଏ ଗ୍ରାମ ଦାନ କରିଥିଲେ । ସେ ହେଲେ ଆମ ବଂଶର ପ୍ରଥମ ଜମିଦାର ।

ସେତେବେଳେ କୁଢ଼େଇ ଗ୍ରାମରେ ଜଣେ ଭୂୟାଁ ରାଜା ଥିଲେ । ଆମ ଘର ସାମ୍ନାରେ ଏକ ମାଟିକୁଦ ଦେଖିବାକୁ ମିଳେ । ଶୁଣାଯାଏ ଆମର ସେଇ ପୂର୍ବପୁରୁଷ ଗୋଟାଏ ବିରାଟ ଗାତ ଖୋଳାଇ ଭୂୟାଁ ରାଜାଙ୍କୁ ତା' ଭିତରକୁ ଠେଲିଦେଇ, ତାଙ୍କୁ ଜୀବନ୍ତ ଅବସ୍ଥାରେ ମାଟିରେ ପୋତି ଦେଇ ତାଙ୍କ ଘର ଥିବା ଜାଗାକୁ ଦଖଲ କରି ସେହିଠାରେ ବସତି ସ୍ଥାପନ କଲେ । ମରହଟ୍ଟା ରାଜତ୍ୱ କାଳରେ ଆମ ପୂର୍ବପୁରୁଷଙ୍କୁ ଦିଆଯାଇଥିବା ସନନ୍ଦ ଏବେ ମଧ୍ୟ ଆମଘରେ ଅଛି । ସେତେବେଳେ ସବୁକିଛି ରାଜକୀୟ ବ୍ୟବସ୍ଥା ଆମ ପୂର୍ବପୁରୁଷ ଉପଭୋଗ କରୁଥିଲେ । ଏବେ ମଧ୍ୟ ତାହାର ବହୁ ପ୍ରମାଣ ରହିଅଛି ।

ଶୁଣାଯାଏ ସେ ସମୟରେ ମହାରାଷ୍ଟ୍ରର ଅଶ୍ୱାରୋହୀ ଆକ୍ରମଣକାରୀ ଦଳ ଯାହାଙ୍କୁ ବର୍ଗୀ ବୋଲି କୁହାଯାଉଥିଲା, ସେମାନେ ଗାଆଁଗାଆଁରେ ପଶି ଲୁଣ୍ଠନ କରୁଥିଲେ । ସେମାନଙ୍କ ଆସିବା ଖବରପାଇ ଲୋକମାନେ ଘରଦ୍ୱାର ଛାଡ଼ି ଜଙ୍ଗଲକୁ ପଳାଇ ଯାଉଥିଲେ । ବର୍ଗୀମାନେ ସବୁ ଲୁଟିନେଇ ଯିବାବେଳେ ଘରସବୁକୁ ଭାଙ୍ଗି ଦେଇ ଗାଆଁଟାକୁ ପଦାକରି ଦେଇ ଯାଉଥିଲେ। ସେଥିପାଇଁ ଆମ ପୂର୍ବ ପୁରୁଷମାନେ ଓ ଗାଆଁର ଅନ୍ୟ ଲୋକମାନେ ମଧ୍ୟ ପକ୍କାଘର ନକରି ମାଟିଘର କରି ରହୁଥିଲେ ।

ସାଧାରଣ ଲୋକେ ଆମ ଘରକୁ ଉଆସ ବୋଲି କହୁଥିଲେ । ଆମ ଘରର ପ୍ରବେଶ ଦ୍ୱାରକୁ ସିଂହଦ୍ୱାର ବୋଲି କୁହାଯାଉଥିଲା । ଆମ ଘରେ ହାତୀ ଓ ହାତୀଶାଳ ଥିଲା । ହାତୀମାନେ ଯେଉଁ ପୋଖରିରେ ଗାଧୋଉଥିଲେ ସେ ପୋଖରୀଟି ଆଜି ବି "ହାତୀ ଗଡ଼ିଆ" ନାମରେ ପରିଚିତ ।

ଆମ ଗାଆଁ ଏକ ବଡ଼ ଗାଆଁ । ଆମ ପୂର୍ବ ପୁରୁଷ ଏହାକୁ ଅନେକ ସାହିରେ ବିଭକ୍ତ କରିଥିଲେ। ସେ ସାହିଗୁଡ଼ିକ ହେଲା – ବାବୁ ସାହି ଦାସ ସାହି, ଧୋବା

ସାହି, ପାଣ ସାହି, ଚମାର ସାହି ପ୍ରଭୃତି । ଆମ ପୂର୍ବପୁରୁଷମାନେ ଅନେକ ବ୍ରାହ୍ମଣ ଶାସନ ମଧ୍ୟ ବସାଇଥିଲେ ।

ଆମ ଘର ଆଗରେ ଗୋଟିଏ ବିରାଟ ପୋଖରି ଅଛି । ତା'ର ନାଆଁ "ହରି ସାଗର" । ତାକୁ ହରିହର ପ୍ରହରାଜ ଖୋଳାଇଥିଲେ । ଆମ ଘରର ବଡ଼ପୁଅଙ୍କ ନାଆଁରେ ଅନେକ ଗୁଡ଼ିଏ ଉପାଧି ଯୋଡ଼ା ହେଇଥିଲା । ମୋ ଜେଜେବାପାଙ୍କର ନାଆଁ ଥିଲା – "ଚୋଧୁରୀ ଶ୍ରୀବଳଭଦ୍ର ଦାଶ ପ୍ରହରାଜ ବିଦ୍ୟାଧର ଭୂୟାଁ ମହାପାତ୍ର ।" ଗାଆଁରେ ଥିବା ଭୂୟାଁ ରାଜାଙ୍କୁ ମାରି ତାଙ୍କ ରାଜ୍ୟ ନିଜ ଦଖଲକୁ ଆଣିଥିବାରୁ ତାଙ୍କର "ଭୂୟାଁ" ପଦବୀଟି ହାସଲ କରିଥିଲେ । ପରିବାରର ଅନ୍ୟମାନେ କେବଳ "ଦାଶ ମହାପାତ୍ର" ଲେଖୁଥିଲେ । ପ୍ରତିବର୍ଷ ସୁନିଆ ଦିନ ବଡ଼ପୁଅ ନୂଆ ଲୁଗା ପିନ୍ଧି ଗାଦିରେ ବସୁଥିଲେ । ଇଂରେଜ ଶାସନ କାଳରେ ଆମ ବଂଶ ଜମିଦାର ଭାବରେ ପରିଚିତ ହେଲେ । ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରି ତହିଁର ସରକାରଙ୍କ ପ୍ରାପ୍ୟ ଅଂଶ ଲାଟବନ୍ଦିଦିନ ସରକାରଙ୍କ ଖଜଣାଖାନାରେ ଦେଇ ଆସୁଥିଲେ ।

ଏଥିରେ ଖିଲାପ କଲେ ଜମିଦାରି ନିଲାମ ହୋଇ ଯାଉଥିଲା । ପ୍ରଚଳିତ ପ୍ରଥା ଅନୁସାରେ ବଡ଼ପୁଅ ସମସ୍ତ ଭୂସମ୍ପତିର ମାଲିକ ହେଉଥିଲେ ଓ ଅନ୍ୟପୁଅମାନେ ଖୋରାକ ପୋଷାକ ପାଉଥିଲେ । ମୋ ଜେଜେବାପା ଥିଲେ ତତ୍‌କାଳୀନ ପରିବାରର ତିନିପୁତ୍ରଙ୍କ ମଧ୍ୟରେ କନିଷ୍ଠ ପୁତ୍ର । ତତ୍‌କାଳୀନ ଜ୍ୟେଷ୍ଠ ପୁତ୍ର ଶ୍ୟାମାନନ୍ଦ ପ୍ରହରାଜ ଅନ୍ୟ ଦୁଇ ଭାଇଙ୍କୁ କିଛି ନଦେଇ ସମସ୍ତ ଭୂସମ୍ପତ୍ତି ଭୋଗ ଦଖଲ କଲେ । ମୋ ଜେଜେବାପା ମୋକଦ୍ଦମା କରିବାକୁ ଚାହିଁଲେ, ମାତ୍ର ଏଥିପାଇଁ ତାଙ୍କ ପାଖରେ ପଇସା ନଥିଲା ।

ସେତେବେଳେ କଲିକତାରୁ ଆସି ବାଲେଶ୍ୱରରେ ବାସ କରି ମୁକ୍ତିଆରି କରୁଥିବା ଲଳିତ ମୋହନ ସରକାରଙ୍କର ସେ ଶରଣାପନ୍ନ ହେଲେ । ଚୁକ୍ତି ହେଲା ଲଳିତବାବୁ ମୋକଦ୍ଦମାରେ ଜିତାପଟ ହୁଏ, ସେ ଆମେ ପାଉଥିବା ଜମିଦାରି ଅଂଶର ଅର୍ଦ୍ଧେକ ନେବେ ।

ମୋକଦ୍ଦମା ଆରମ୍ଭ ହେଲା । ଜ୍ୟେଷ୍ଠଅଂଶର ଦାବୀ ହେଲା ଆମ ବଂଶ ପାଇଁ Law of Primogeniture ପ୍ରଯୁଜ୍ୟ ଅର୍ଥାତ୍ ଜ୍ୟେଷ୍ଠପୁତ୍ର ଗାଦିରେ ବସିବେ ଓ ସମସ୍ତ ସଂପତ୍ତିର ମାଲିକ ହେବେ । ଅନ୍ୟମାନଙ୍କର ସଂପତ୍ତି ଉପରେ କୌଣସି ଦାବୀ ନାହିଁ ।

ଅବଶ୍ୟ ଗଡ଼ଜାତର ରାଜ ପରିବାର ପରି ଏ ନିୟମ ଆମ ପରିବାରରେ ଥିଲା, ମାତ୍ର ଦେଖାଗଲା ଅତୀତରେ ଥରେ ଏ ନିୟମର ବିଚ୍ୟୁତି ଘଟିଛି । ଅତୀତରେ ଥରେ ରାଜସ୍ୱ ପଇଠ କରାନଯିବାରୁ ଆମ ଜମିଦାରି କଲିକତାଠାରେ ନିଲାମ ହୋଇଯାଇଥିଲା । ସେତେବେଳେ ବଙ୍ଗଳା ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା ଓ ଭୂରାଜସ୍ୱ କଲିକତାଠାରେ ପଇଠ କରାଯାଉଥିଲା । ପୂରା ଜମିଦାରି ନିଲାମ ହୋଇଯିବା ପରେ ସେତେବେଳର କନିଷ୍ଠପୁତ୍ର ଜମିଦାରିର ଅର୍ଦ୍ଧେକ ଦାବୀ କରି ମୋକଦ୍ଦମା ଦାୟର କରିଥିଲେ। ମୋକଦ୍ଦମାର ସାରମର୍ମ ହେଲା- ବାକୀରହିଥିବା ରାଜସ୍ୱ ପରିମାଣ ଯାହା, ସେଥିରେ ସମସ୍ତ ଜମିଦାରିକୁ ନିଲାମ କରିଦେବା ଉଚିତ ନୁହେଁ । ରାଜସ୍ୱ ପଇଠ କରି ନଥିବା ଜ୍ୟେଷ୍ଠପୁତ୍ରଙ୍କର ଅର୍ଦ୍ଧେକ ଅଂଶ ନିଲାମ ହୋଇଯାଉ ଓ ଅବଶିଷ୍ଟ ଅର୍ଦ୍ଧାଂଶ ତାଙ୍କ ନାମରେ ଦରଜ କରାଯାଇ ତା'ର ରାଜସ୍ୱ ପଇଠ କରିବାର ଅଧିକାର ତାଙ୍କୁ ଦିଆଯାଉ । ସେତେବେଳେ (Law of Primogeniture) କଥା କେହି ଉଠାଇ ନଥିଲେ। ତେଣୁ ଅଧା ସମ୍ପତ୍ତି ପରିବାରକୁ ଫେରି ଆସିଥିଲା । ଇତି ମଧ୍ୟରେ ରାଜସ୍ୱ ପଇଠ କରିନଥିବା ବଡ଼ଭାଇ ବାରାଣସୀ ଯାଇ ଗଙ୍ଗାନଦୀରେ ଆତ୍ମହତ୍ୟା କରିଥିଲେ। ଅଧା ସଂପତ୍ତି ଫେରିଆସିବାପରେ ବଡ଼ଭାଇଙ୍କ ଉତ୍ତରାଧିକାରୀ ସମେତ ପରିବାରର ସମସ୍ତେ ତାହା ଭୋଗ ଦଖଲ କଲେ । କିନ୍ତୁ ପରବର୍ତ୍ତୀ କାଳରେ ବଡ଼ଭାଇଙ୍କ ଦାୟାଦ ଅନ୍ୟମାନଙ୍କୁ କିଛି ନଦେବାରୁ, ମୋ' ଜେଜେବାପା ଯେଉଁ ମୋକଦ୍ଦମା କଲେ ତାହାର ଶେଷ ନିଷ୍ପତ୍ତି ଇଂଲଣ୍ଡର ପ୍ରିଭି କାଉନ୍‌ସିଲ ଦ୍ୱାରା ହୋଇଥିଲା । ଜେଜେବାପା ବଳଭଦ୍ର ଉକ୍ତ ମୋକଦ୍ଦମାରେ ଜୟଯୁକ୍ତ ହେଲେ। ଚୁକ୍ତି ଅନୁଯାୟୀ ଆମ ଭାଗରେ ପଡ଼ିଥିବା ଜମିଦାରିରୁ ଅର୍ଦ୍ଧେକ ଲଳିତ ମୋହନ ସରକାର ନେଲେ । ମୋକଦ୍ଦମାରେ ଜିତିବାପାଇଁ ଲଳିତ ବାବୁ ବୋଧହୁଏ କାଳୀଠାକୁରାଣୀଙ୍କ ପାଖରେ ମାନସିକ କରିଥିଲେ । ତାଙ୍କ ମୃତ୍ୟୁପରେ ତାଙ୍କର ଉତ୍ତରାଧିକାରୀ ବାଲେଶ୍ୱର ସହରର ମୁଖ୍ୟ ରାସ୍ତା ପାଖରେ ଏକ ସୁଦୃଶ୍ୟ କାଳୀମନ୍ଦିର ନିର୍ମାଣ କରି ମା କାଳୀଙ୍କ ପୂଜାର ବ୍ୟବସ୍ଥା କରିଛନ୍ତି ।

ମୁଁ କଲିକତା ବିଶ୍ୱବିଦ୍ୟାଳୟରେ ଆଇନ୍ ଅଧ୍ୟୟନ କରୁଥିବା ବେଳେ ଆମର ଏହି ମୋକଦ୍ଦମାର ପ୍ରିଭିକାଉନ୍‌ସିଲ୍ ରାୟ ଏକ Leading case ହିସାବରେ ଆମେ ଅଧ୍ୟୟନ କରୁଥିଲୁ । Law of Primogeniture ବହିରେ ଏହି ମୋକଦ୍ଦମା "ଶ୍ୟାମାନନ୍ଦ ବନାମ ବଳଭଦ୍ର" ର ବିବରଣୀ ସ୍ଥାନ ପାଇଛି ।

ଆମ ପୂର୍ବପୁରୁଷମାନେ ବସାଇଥିବା ବ୍ରାହ୍ମଣ ଶାସନର ବ୍ରାହ୍ମଣମାନଙ୍କୁ ଅନେକ ନିଷ୍କର ଜମି ଦାନ କରିଥିଲେ । ସେହି ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେକ ଆସି ଆମ ମନ୍ଦିର ତଥା ଆମ ଘରେ ହେଉଥିବା ପୂଜାମାନ ସମ୍ପାଦନ କରୁଥିଲେ । ସେହିଭଳି ଭାବରେ ଆମ ପରିବାରର କ୍ଷୌର କାମ କରୁଥିବା ନାପିତ, ଲୁଗା ସଫା କରୁଥିବା ରଜକ, ଦାଣ୍ଡ ସଫା କରୁଥିବା ମେହେନ୍ତର, ପର୍ବପର୍ବାଣିରେ ଓ ଆମ ଘରର ବିବାହ ବ୍ରତରେ ଢୋଲ ବଜାଉଥିବା ପାଣ, ନଡ଼ିଆ ଗଛରେ ଚଢ଼ି ନଡ଼ିଆ ବିଛାଉଥିବା ଚମାରମାନଙ୍କୁ ନିଷ୍କର ଜମି ଦିଆଯାଇଥିଲା । ଜମିଦାରି ଉଚ୍ଛେଦ ପରେ ସେ ସବୁଜମିର ମାଲିକାନା ସେମାନଙ୍କ ପାଖକୁ ଗଲା ।

ଆମ ଘର ସଂଲଗ୍ନ ମନ୍ଦିରରେ ଅନେକ ଦେବଦେବୀ ଯଥା- ଶ୍ରୀଶ୍ରୀ କିଶୋର କିଶୋରୀ ଜୀଉ, ଶ୍ୟାମରାୟ, ଶ୍ରୀରାଧା, ଲକ୍ଷ୍ମୀନାରାୟଣ ପ୍ରଭୃତି ପୂଜା ପାଆନ୍ତି । ମନ୍ଦିରରେ ପ୍ରତିଦିନ ବାରସେର ଓଜନର ଅରୁଆ ଚାଉଳ ରନ୍ଧାହୁଏ । ପ୍ରତ୍ୟହ ଅନେକ ବାବାଜୀ ଆସି ପ୍ରସାଦ ସେବନ କରନ୍ତି । ଅବଶ୍ୟ ଆଜି ଆଉ ଏତେ ପରିମାଣର ଚାଉଳ ରନ୍ଧା ହେଉନାହିଁ ଓ କୌଣସି ବାବାଜୀ ମଧ୍ୟ ପ୍ରସାଦ ସେବନପାଇଁ ଆସୁ ନାହାନ୍ତି । ଠାକୁରଙ୍କ ଝୁଲଣ ଯାତ୍ରା ଖୁବ୍ ପ୍ରସିଦ୍ଧ ଯାତ୍ରା ଥିଲା । କୁହାଯାଉଥିଲା -" ପତିରାଜପୁର ମେଳଣ, କୁଡ଼େଇ ଝୁଲଣ ଓ ମଙ୍ଗଳପୁର ଚନ୍ଦନ" ଯାତ୍ରା ସେ ଖଣ୍ଡ ମଣ୍ଡଳରେ ଖୁବ୍ ପ୍ରସିଦ୍ଧ ଥିଲା । ଆମ ଘରେ ଥିବା ପାର୍ବଣ ବଙ୍ଗଳାରେ ଦୁର୍ଗାପୂଜା ମଧ୍ୟ ଅନୁଷ୍ଠିତ ହୁଏ । ମାଆଙ୍କ ପାଖରେ କଖାରୁ ବଳି ପଡ଼େ । ଏତଦ୍ ବ୍ୟତୀତ ମେଳଣ, ଚନ୍ଦନ, ରଥ ଓ ଜାଗର ଯାତ୍ରା ମଧ୍ୟ ଖୁବ୍ ଜାକ୍‌ଜମକରେ ଅନୁଷ୍ଠିତ ହେଉଥିଲା । ଗାଆଁରେ ଜଗନ୍ନାଥ ମନ୍ଦିର, ମହାଦେବ ମନ୍ଦିର ମଧ୍ୟ ପୂର୍ବପୁରୁଷମାନେ ନିର୍ମାଣ କରାଇଥିଲେ। ଗାଆଁର ମଧ୍ୟସ୍ଥଳରେ ଅନେକ ଠାକୁରାଣୀ ଯଥା - ଜାଗୁଳାଇ, ମରୀଚେଇ, ପଶ୍ଚିମା ଓ ଆମ ଘରର ପୂର୍ବ ଦିଗରେ ଗଡ଼ଚଣ୍ଡୀ ପୂଜା ପାଆନ୍ତି । ରଜ ସମୟରେ ତିନିଦିନ ଧରି ଠାକୁରାଣୀ ମାନଙ୍କର ଯାତ୍ରା ହୁଏ । ଠାକୁରାଣୀମାନେ ନିର୍ଦ୍ଦିଷ୍ଟ ଲୋକଙ୍କ ପାଖରେ ମାନସିକ କରିଥିବା ଲୋକମାନେ ପିଠିରେ ଲୁହା କଣ୍ଟା ଫୋଡ଼େଇ ଓ ସେହି କଣ୍ଟାରେ ଦଉଡ଼ି ବାନ୍ଧି ପୋତା ହୋଇଥିବା ବାଉଁଶ ଖୁଣ୍ଟରେ ଯାଇ ଝୁଲନ୍ତି । ଏବେ ମଧ୍ୟ ରଜଯାତ୍ରା ବେଳେ ଏ ଦୃଶ୍ୟ ଦେଖିବାକୁ ମିଳୁଛି । ଆଶ୍ଚର୍ଯ୍ୟ ଲାଗେ ଝୁଲୁଥିବା ମଣିଷର ଓଜନରେ ପିଠିରେ ଫୋଡ଼ା ହୋଇଥିବା କଣ୍ଟା ଛିଣ୍ଡି ପଡେନାହିଁ କେମିତି ?

ଦୋଳପୂର୍ଣ୍ଣିମା ଦିନ ମେଳଣ ଯାତ୍ରାରେ ଠାକୁର ବିମାନ ସବୁ ବସିଯିବାପରେ ଘରର ବଡ଼ ପୁଅ ଯାଇ ବିମାନ ସାମନାରେ ବିଛା ହୋଇଥିବା ଗାଲିଚା ଉପରେ ବସନ୍ତି । ତା'ପରେ ଯାଇ ଆଳତି, ଭୋଗ ହୁଏ । ମଜ୍‌ଲିସ୍‌ରେ ବସିଥିବା ବୃଦ୍ଧ ଓ ତରୁଣ ଗାୟକମାନେ ଭଜନ ପରିବେଷଣ କରନ୍ତି ।

ଆମ ପରିବାରପାଇଁ ସ୍ୱତନ୍ତ୍ର ଶ୍ମଶାନ ରହିଛି । ଏହା ଆମ ଘରର ପଛ ପଟେ ଆମ ବାଡ଼ିକୁ ଲାଗି ରହିଛି । ଗାଆଁ ଲୋକଙ୍କର ଶବ ଏଠାରେ ଦାହ କରାଯାଏ ନାହିଁ। ସେମାନଙ୍କ ପାଇଁ ଗାଆଁର ଅନ୍ୟ ସ୍ଥାନରେ ଶ୍ମଶାନ ରହିଛି । ଆମ ଘରର କାହାର ମୃତ୍ୟୁ ହେଲେ ତାଙ୍କର ଶବକୁ ଘରର ସାମ୍ନା ଦରଜା ବା ସିଂହଦ୍ୱାର ବାଟଦେଇ ଶ୍ମଶାନକୁ ନିଆଯାଏ ନାହିଁ । ଯଦି ଜ୍ୟେଷ୍ଠ ପୁଅ ଯେ' ରାଜା ବା ଜମିଦାର ହେଉଥିଲେ, ତାଙ୍କର ମୃତ୍ୟୁ ହେଉଥିଲା, ତେବେ ତାଙ୍କର ଜ୍ୟେଷ୍ଠ ପୁଅ ସିଂହାସନ ଆରୋହଣ କରି ଶବ ସତ୍କାରପାଇଁ ଆଦେଶ ନଦେବା ପର୍ଯ୍ୟନ୍ତ ଶବ ଶ୍ମଶାନକୁ ଯାଇ ପାରୁନଥିଲା। ମୃତ୍ୟୁ ପରେ ତାଙ୍କର ବଡ଼ ପୁଅ ଆଉ ତାଙ୍କ ମୁହଁ ଦେଖିବା ମନାଥିଲା । ଶବକୁ ଶ୍ମଶାନକୁ ନିଆଯାଉଥିଲା ବାରିପଟ ଦରଜା ଦେଇ । ଶବକୁ ଜ୍ଞାତିମାନେ ଶ୍ମଶାନକୁ ନେଉଥିଲେ। ବଡ଼ପୁଅ ମୁଖାଗ୍ନି ଦେଉ ନଥିଲେ । ମୁଖାଗ୍ନି ଦେବାପାଇଁ ଜ୍ଞାତିମାନଙ୍କ ମଧ୍ୟରୁ ନିର୍ଦ୍ଦିଷ୍ଟ ଏକ ପରିବାର ନିଷ୍କର ଜମି ଭୋଗ କରୁଥିଲେ। ଆଜି ମଧ୍ୟ ଆମ ପରିବାରରେ ଏ ପ୍ରଥା ପ୍ରଚଳିତ ଅଛି ।

ଇଂରେଜ ଶାସନ ସମୟରେ ବାଲେଶ୍ୱର ଜିଲ୍ଲାରେ ଯେଉଁସବୁ ବଡ଼ ଜମିଦାର ଥିଲେ ସେମାନେ ହେଲେ ସୁନହଟର ସାମନ୍ତ, ବାରବାଟୀର ରାଜା, ଆଗରପଡ଼ାର ମହତାବ୍, ଇରମର ପାଢ଼ୀ, କୁଡ଼େଇର ପ୍ରହରାଜ, ବାଲିଖଣ୍ଡର ଚୌଧୁରୀ, ମଙ୍ଗଳପୁର ଭୂୟାଁ, କାଉପୁରର ମହାଶୟ, ବାଲେଶ୍ୱରର ମଣ୍ଡଳ ଓ ସରକାର ପ୍ରମୁଖ ।

ଏମାନଙ୍କ ବ୍ୟତୀତ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ କନିକା ରାଜାଙ୍କର ମଧ୍ୟ କିଛି ଜମିଦାରି ଥିଲା । ରାଜସ୍ୱ ପଇଠ କରିବାରେ ଖିଲାପ କରିଥିବା କିଛି ଜମିଦାରଙ୍କର ନିଲାମ ହୋଇଥିବା ଜମିଦାରକୁ ନିଲାମ ଧରି କଲିକତାର କିଛି ବଙ୍ଗୀୟ ବ୍ୟକ୍ତି ଓଡ଼ିଶାରେ ଜମିଦାର ହୋଇଥିଲେ। ଆଗରପଡ଼ାର ରାଜା ମହତାବ ପରିବାର ସହିତ ଆମର ସୂର୍ଯ୍ୟବନ୍ଧୁ ସଂପର୍କ ଥିଲା । ବିବାହାଦିରେ ଗୁଆ ପଡୁଥିଲା ।



# ଜନ୍ମ ବୃତ୍ତାନ୍ତ

ଏହିଭଳି ଏକ ପ୍ରସିଦ୍ଧ ଜମିଦାର ବଂଶରେ ମୁଁ ଜନ୍ମ ଗ୍ରହଣ କରିଥିଲି ୧୯୨୯ ମସିହା ମାର୍ଚ୍ଚମାସ ତାରିଖରେ । କୁଡ଼େଇ ଗାଆଁ ହିଁ ମୋର ଜନ୍ମସ୍ଥାନ । ମୋ ଜେଜେବାପା ବଳଭଦ୍ର ପ୍ରହରାଜଙ୍କ ମଧ୍ୟମପୁତ୍ର ରାଜନାରାୟଣ ଓ ରାସମଣି ଦେବୀଙ୍କର ମୁଁ ଦ୍ୱିତୀୟ ସନ୍ତାନ । ମାତା ରାସମଣି ତତ୍‌କାଳୀନ୍ କେନ୍ଦୁଝର ଗଡ଼ଜାତରେ ଥିବା ଢେଙ୍କା ଜମିଦାର ପରିବାରର କନ୍ୟା ଥିଲେ । ମୋ ଜନ୍ମର ତିନିବର୍ଷ ଆଗରୁ ମୋ' ବଡ଼ଭାଇ ସୀତାନାଥ ଜନ୍ମ ଗ୍ରହଣ କରିଥିଲେ । ବାପାଙ୍କ ଜ୍ୟେଷ୍ଠ ଭ୍ରାତା ଥିଲେ ଶ୍ୟାମସୁନ୍ଦର ଓ କନିଷ୍ଠ ଭ୍ରାତା ଥିଲେ ଲକ୍ଷ୍ମୀକାନ୍ତ । ବଡ଼ବାପା ଶ୍ୟାମସୁନ୍ଦର ବାଲେଶ୍ୱର୍ ଜିଲ୍ଲା ସ୍କୁଲରୁ ପ୍ରଥମ ଶ୍ରେଣୀରେ ମେଟ୍ରିକୁଲେସନ୍ ପାସ୍ କରିଥିଲେ। ପରବର୍ତ୍ତୀ କାଳରେ ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ ପୂର୍ବତନ ଶିକ୍ଷା ନିର୍ଦ୍ଦେଶକ ଶ୍ୟାମାଚରଣ ତ୍ରିପାଠୀ, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଖ୍ୟାତନାମା ଓକିଲ ଚିନ୍ତାମଣି ଆଚାର୍ଯ୍ୟ ପ୍ରମୁଖ ତାଙ୍କର ସହପାଠୀ ଥିଲେ। ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ରାଜ୍ୟପାଳ ବିଶ୍ୱନାଥ ଦାଶ ମଧ୍ୟ ତାଙ୍କର ସହପାଠୀ ଓ ଅନ୍ତରଙ୍ଗ ବନ୍ଧୁ ଥିଲେ। ଜିଲ୍ଲା ସ୍କୁଲରେ ପଢୁଥିବା ବେଳେ ତାଙ୍କର ସହପାଠୀ ଥିଲେ ବାରିପଦା କେ.ସି. ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ଶଚୀନ୍ଦ୍ରନାଥ ଦାସ । ଶ୍ରେଣୀରେ କିଏ ପ୍ରଥମସ୍ଥାନ ଦଖଲ କରିବ ଏଥିପାଇଁ ଉଭୟଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା । କେତେବେଳେ ବଡ଼ବାପା ଶ୍ୟାମସୁନ୍ଦର ତ କେତେବେଳେ ଶଚୀନ୍ଦ୍ରନାଥ ପ୍ରଥମସ୍ଥାନ ଅଧିକାର କରୁଥିଲେ । ଉଭୟ ପ୍ରଥମ ଶ୍ରେଣୀରେ ମେଟ୍ରିକୁଲେସନ୍ ପାସ୍ କରିଥିଲେ ।

ବଡ଼ବାପା ସ୍ନାତକ ଶିକ୍ଷା ଶେଷ କରି କଲିକତାସ୍ଥ (ବର୍ତ୍ତମାନ କୋଲ୍‌କାତା) ପ୍ରେସିଡେନ୍‌ସୀ କଲେଜରେ ସ୍ନାତକୋତ୍ତର ସଂସ୍କୃତ ବିଭାଗରେ ନାମ ଲେଖାଇଲେ ।

କଲେଜର ପ୍ରସିଦ୍ଧ ଛାତ୍ରାବାସ "ହିନ୍ଦୁ ହଷ୍ଟେଲ୍"ରେ ରହିଲେ। ସେତେବେଳେ ଛାତ୍ରାବାସରେ ରହୁଥିବା ବଙ୍ଗାଳୀ ପିଲାମାନେ ଅଣବଙ୍ଗାଳୀ ପିଲାମାନଙ୍କୁ ଏପରିକି ପୂର୍ବବଙ୍ଗର ପିଲାମାନଙ୍କୁ ମଧ୍ୟ ଥଟ୍ଟା-ପରିହାସ କରୁଥିଲେ। ସେହି ଛାତ୍ରାବାସରେ ରହୁଥିବା ପରବର୍ତ୍ତୀ କାଳରେ ରାଷ୍ଟ୍ରପତି ହୋଇଥିବା ରାଜେନ୍ଦ୍ର ପ୍ରସାଦଙ୍କ ଚୁଟିକୁ ବଙ୍ଗାଳି ପିଲାମାନେ କାଟି ଦେଇଥିଲେ । ସେଥିପାଇଁ ରାଜେନ୍ଦ୍ର ପ୍ରସାଦ କୁଆଡ଼େ ଅନେକ କାନ୍ଦିଥିଲେ। ପୂର୍ବବଙ୍ଗ ବାସୀଙ୍କୁ ସେମାନେ ବଙ୍ଗାଳି ନକହି ବାଙ୍ଗାଲ୍ ବୋଲି କହୁଥିଲେ। ସେମାନଙ୍କର ପରିହାସର ଉକ୍ତି ଥିଲା -

"ବାଙ୍ଗାଲ୍ ମାନୁଷ ନଏ, ଉଡ଼େ ଏକ ଜନ୍ତୁ
ଗାଛେ ଗାଛେ ଲାଫ୍ ଦାଏ, ଲେଁଜ ନେଇଁ କିନ୍ତୁ ।"

ଓଡ଼ିଆଙ୍କୁ ସେମାନେ "ଉଡ଼େ" ଓ ଓଡ଼ିଶାକୁ "ଠାକୁର-ଚାକରେର୍ ଦେଶ" ବୋଲି କହୁଥିଲେ। ସେତେବେଳେ ଅନେକ ଓଡ଼ିଆ ଲୋକ କଲିକତା ସହରରେ ପୂଝାରୀ ଓ ଚାକର କାମ କରୁଥିଲେ। ଯା' ହେଉ ଏମିତି ଏକ ପରିବେଶରେ ରହି ସଂସ୍କୃତରେ ଏମ୍.ଏ. ପାସ୍ କରି ତତ୍କାଳୀନ ବିହାର-ଓଡ଼ିଶା ପ୍ରଦେଶର Super-in tendent of Sanskrit Studies ଚାକିରିରେ ନିଯୁକ୍ତି ପାଇଲେ । ଘୋଡ଼ାରେ ଚଢ଼ି ସେ ବିହାର-ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ସଂସ୍କୃତଟୋଲ୍‌ମାନ ପରିଦର୍ଶନ କରୁଥିଲେ। ସେତେବେଳେ ସେ ପୂରାପେଣ୍ଟ୍, ପୂରାକୋଟ ପିନ୍ଧୁଥିଲେ ଓ ମୁଣ୍ଡରେ ପଗଡ଼ି ବାନ୍ଧୁଥିଲେ। ଏହି ଚାକିରିରେ କିଛିବର୍ଷ ରହିବାପରେ ସେ ପୁରୀସ୍ଥିତ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବରେ ଯୋଗଦେଲେ । ବର୍ତ୍ତମାନ ସେ ମହାବିଦ୍ୟାଳୟର ନାମ "ସଦାଶିବ ସଂସ୍କୃତ ମହାବିଦ୍ୟାଳୟ" । ସଦାଶିବଙ୍କ ପରେ ବଡ଼ ବାପା ହୋଇଥିଲେ ସେ ମହାବିଦ୍ୟାଳୟର ଅଧ୍ୟକ୍ଷ ।

ସେତେବେଳେ ଏହି ମହାବିଦ୍ୟାଳୟର ଅନ୍ତେବାସୀମାନଙ୍କର ଖାଦ୍ୟର ବ୍ୟବସ୍ଥା ବଦାନ୍ୟ ବ୍ୟକ୍ତିମାନଙ୍କର ସାହାଯ୍ୟରେ କରାଯାଉଥିଲା । ଏପରିକି ବେଳେବେଳେ ଲୋକଙ୍କ ଘରକୁ ଯାଇ ଚାଉଳ ମଧ୍ୟ ମଗା ଯାଉଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ଅନେକ ସମୟରେ ଏହି ମହାବିଦ୍ୟାଳୟକୁ ଆସି ପିଲାମାନଙ୍କର ଭଲମନ୍ଦ କଥା ବୁଝୁଥିଲେ । ବେଳେବେଳେ ସାହାଯ୍ୟର ବ୍ୟବସ୍ଥା ମଧ୍ୟ କରୁଥିଲେ। ସେ ବଡ଼ବାପାଙ୍କୁ କହୁଥିଲେ - "ତୁମେ ଜଣେ ଧନୀ ଜମିଦାର ପରିବାରରୁ ଆସିଛ । ବିଦେଶୀ ଶାସକ ଅଧୀନରେ ଗୋଲାମି କରୁଛ କାହିଁକି ? ଚାକରିଛାଡ଼ି ଦେଶ ପାଇଁ କାମ କର ।"

ବଡ଼ବାପା ଚାକିରିର ମୋହ ଛାଡ଼ି ପାରୁନଥିଲେ। ଗୋପବନ୍ଧୁଙ୍କ ମହାପ୍ରୟାଣ ୧୯୨୮ ମସିହାରେ ଘଟିଥିଲା । ତାଙ୍କର ମହାପ୍ରୟାଣପରେ ତତ୍କାଳୀନ ଶିକ୍ଷା ନିର୍ଦ୍ଦେଶକ ଗୋରାସାହେବ ମହାବିଦ୍ୟାଳୟକୁ ଆସିଥିଲେ। ଶ୍ରେଣୀ ଗୃହମାନଙ୍କରେ ଅଧ୍ୟାପନା କରୁଥିବା ସଂସ୍କୃତ ପଣ୍ଡିତମାନେ ତଳେ ବିଛା ହୋଇଥିବା ଗଦି ଉପରେ ବସି ଶିକ୍ଷାଦାନ କରୁଥିଲେ। ସେମାନେ ଧୋତି ପିନ୍ଧୁଥିଲେ ଓ କାନ୍ଧରେ ଚାଦର ପକାଉଥିଲେ । ଗୋରା ପରିଦର୍ଶକ ଅଧ୍ୟକ୍ଷଙ୍କ ସହିତ ଗୋଟାଏ ଶ୍ରେଣୀ ଗୃହକୁ ପରିଦର୍ଶନ ପାଇଁ ପଶିଗଲେ । ଗୋରା ସାହେବଙ୍କୁ ଦେଖି ପଢ଼ାଉଥିବା ପଣ୍ଡିତ ମହାଶୟ ଧଡ଼ପଡ଼ କିନି ଉଠିପଡ଼ିବା ବେଳକୁ ତାଙ୍କ ଗୋଡ଼ର ଚାପରେ ଧୋତିଟା ଅଣ୍ଟାରୁ ଖସିଯାଇ ତାଙ୍କୁ ସମ୍ପୂର୍ଣ୍ଣ ଉଲଗ୍ନ କରିଦେଲା । ଏଥିରେ ଗୋରାସାହେବ ଅପମାନିତ ବୋଧ କଲେ ଓ ସଙ୍ଗେ ସଙ୍ଗେ ଶ୍ରେଣୀ ଗୃହ ଛାଡ଼ି ଅଧ୍ୟକ୍ଷଙ୍କ ଅଫିସ୍‌କୁ ଆସିଲେ । ଅଧ୍ୟକ୍ଷଙ୍କୁ କହିଲେ- ପଣ୍ଡିତଙ୍କ ଏ ଭଳି ଆଚରଣ ପାଇଁ ତାଙ୍କୁ କୈଫିୟତ ମାଗିବାକୁ, ତାଙ୍କୁ ନିଲମ୍ବନ କରିବାକୁ । ମାତ୍ର ବଡ଼ବାପା ପଣ୍ଡିତଙ୍କର ଏଥିରେ ଦୋଷ ନାହିଁ, ଇଚ୍ଛାକୃତ ଭାବରେ ସେ ଏହା କରିନାହାନ୍ତି ଇତ୍ୟାଦି କହିବାରୁ ସାହେବ ରାଗିଗଲେ ଓ ତତ୍କ୍ଷଣାତ୍ କଲେଜ ଛାଡ଼ି ଚାଲିଗଲେ । ସାହେବ ପାଟନା ଫେରିଯାଇ ପଣ୍ଡିତ ମହାଶୟଙ୍କୁ ତୁରନ୍ତ ନିଲମ୍ବନ ଆଦେଶ ଦେବାକୁ ଓ ଯଦି ତାହା କରାନଯାଏ ଅଧ୍ୟକ୍ଷଙ୍କୁ ସେ ନିଲମ୍ବନ କରିବେ ବୋଲି ଆଦେଶନାମା ପଠାଇ ଦେଲେ । ପତ୍ର ପାଇବାପରେ ବଡ଼ବାପା କାଳବିଳମ୍ବ ନକରି ଚାକିରିରୁ ଇସ୍ତଫା ଦେଇ ଗାଆଁକୁ ଚାଲି ଆସିଲେ ।

ମୋର ଦେଢ଼ବର୍ଷ ସମୟରେ ମାତୃବିୟୋଗ ଘଟିଲା । ଯଦିଓ ପିତା ରାଜନାରାୟଣ ଦ୍ୱିତୀୟଦାର ପରିଗ୍ରହ କରିଥିଲେ, କିନ୍ତୁ ମୋ ବଡ଼ବାପା, ବଡ଼ ମା ହିଁ ମୋତେ ଲାଳନପାଳନ କଲେ । ବଡ଼ବାପାଙ୍କର ମଧ୍ୟ ସ୍ତ୍ରୀ ବିୟୋଗ ଘଟିଲା । ବଡ଼ ମା ନୀଳମଣି ନିସନ୍ତାନ ଅବସ୍ଥାରେ ମୃତ୍ୟୁବରଣ କରିଥିଲେ । ବଡ଼ବାପା ବାଲିଖଣ୍ଡ ଜମିଦାର ରଘୁନାଥ ମିଶ୍ରଙ୍କ କନ୍ୟା ସାବିତ୍ରୀଙ୍କୁ ପୁନର୍ବାର ବିବାହ କଲେ । ପିତାଙ୍କର ମଧ୍ୟ ସନ୍ତାନ ସନ୍ତତି ନଥିଲେ । ମୋ ବଡଭାଇ ବିମାତା ସତ୍ୟଭାମାଙ୍କୁ "ମା" ଓ ବଡ଼ମାଙ୍କୁ "ମା" ବୋଲି ଡାକୁଥିଲେ । ବାଲେଶ୍ୱର ଜିଲ୍ଲାରେ ବ୍ରାହ୍ମଣ ପରିବାରରେ ବଡ଼ଭାଇଙ୍କୁ "ନନା" ବୋଲି ଡକାଯାଏ । ନନା ସୀତାନାଥଙ୍କ ନାମ ଯେତେବେଳେ ସ୍କୁଲ୍‌ରେ ଲେଖାଗଲା, ସେତେବେଳେ ତାଙ୍କ ନାମ "ସୀତାନାଥ" ପରିବର୍ତ୍ତେ "ଶ୍ରୀନାଥ" ବୋଲି ଲେଖାଗଲା ।

ବିମାତାଙ୍କର ଏକମାତ୍ର କନ୍ୟା, ନାମ "ସ୍ନେହଲତା" । ମୋର ଦୁଇଜଣ ପିଉସୀ ଥିଲେ : ବିଷ୍ଣୁପ୍ରିୟା ଓ ବିନୋଦିନୀ । ବିଷ୍ଣୁପ୍ରିୟାଙ୍କର ବିବାହ ହୋଇଥିଲା ବାଲେଶ୍ୱର ସହରର ଶୋଭାରାମପୁର ଗ୍ରାମରେ ଓ ବିନୋଦିନୀଙ୍କର ସିମୁଳିଆ ଥାନାର ମଇତାପୁର ଶାସନରେ । କକା ଲକ୍ଷ୍ମୀକାନ୍ତଙ୍କର ଅପସ୍ମାର ରୋଗ ଥିଲା । ଏହିରୋଗ ଯୋଗୁଁ ଅନେକ ସମୟରେ ସେ ମୂର୍ଚ୍ଛା ହୋଇ ଯାଉଥିଲେ। ଥରେ ହରିସାଗରରେ ଗାଧୋଉଥିବାବେଳେ ଏହି ରୋଗରେ ମୂର୍ଚ୍ଛାହୋଇ ପାଣିରେ ବୁଡ଼ିଯାଇ ମୃତ୍ୟୁବରଣ କରିଥିଲେ । ତାଙ୍କର ଅନ୍ୟପୁଅ ଗୋଲକନାଥ ତାଙ୍କ ପିଲାପିଲିଙ୍କ ସହିତ କୁଡ଼ାଇରେ ବସବାସ କରୁଛନ୍ତି । କକାଙ୍କର ତିନିଝିଅ ସ୍ୱର୍ଣ୍ଣମଣି, ରତ୍ନମଣି, ସରୋଜିନୀ । ଖୁଡ଼ୀ ତିଳୋତ୍ତମା ଥିଲେ ଇରମ ଜମିଦାରଙ୍କ କନ୍ୟା । କନିଷ୍ଠା କନ୍ୟା ସରୋଜିନୀର ଜନ୍ମ ପରେ ସେ ଇହଲୀଳା ସାଙ୍ଗ କରିଥିଲେ। ତାଙ୍କ ମୃତ୍ୟୁପରେ କକା ଆଉ ଦ୍ୱିତୀୟବାର ବିବାହ କରି ନଥିଲେ ।

ପିତା ରାଜନାରାୟଣ ଆମ ଜମିଦାରର ସମସ୍ତ କଥା ବୁଝୁଥିଲେ। ଯଦିଓ ବଡ଼ବାପା ବଂଶର ବଡ଼ପୁଅ କିନ୍ତୁ ଯେହେତୁ ସେ ଚାକିରି କରୁଥିଲେ ଜମିଦାରି କଥା ବୁଝିବା ତାଙ୍କ ପକ୍ଷେ ସମ୍ଭବ ନଥିଲା । କକା ବୁଝୁଥିଲେ ଜମିଚାଷ କଥା । ତିନିଭାଇଙ୍କ ମଧ୍ୟରେ ମତାନ୍ତର କେବେ ହେଉନଥିଲା । ୧୯୩୯ ମସିହାରେ ପିତା ରାଜନାରାୟଣଙ୍କର ଦେହାନ୍ତ ହେଲା । ଏହାପରେ ମୁଁ ବଡ଼ବାପା ଓ ବଡ଼ମାଙ୍କର ପୁଅ ପାଲଟିଗଲି ।





କଲିକତା ବିଶ୍ୱବିଦ୍ୟାଳୟରେ
ଆଇନ ପଢୁଥିବା ସମୟରେ ଯୁବକ ଯଦୁନାଥ



ବାଲେଶ୍ୱରରେ ଓକିଲାତି ଆରମ୍ଭ କରୁଥିବା ସମୟରେ



ଅତୀତ୍ର ଦର୍ପଣରେ : ପତ୍ନୀଙ୍କ ସହିତ



ଚାରି ପୁତ୍ର, ତିନି କନ୍ୟା ଓ ପତ୍ନୀଙ୍କ ସହିତ



କନିଷ୍ଠ ଭ୍ରାତା ଗୋଲକନାଥଙ୍କ ସହିତ



ନାତି ନାତୁଣୀଙ୍କ ସହିତ ଏକ ଅବସର ମୁହୂର୍ତ୍ତରେ



କନ୍ୟା ସୁଚିତ୍ରାର ବିବାହ ଉତ୍ସବରେ
ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଶ୍ରୀଯୁକ୍ତ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ସହିତ



୨୮.୦୫.୧୯୮୯ : ଉଦୟପୁର (ରାଜସ୍ଥାନ)ର
ରାଣା ପ୍ରତାପଙ୍କ ପ୍ରତିମୂର୍ତ୍ତି ନିକଟରେ



୭.୦୭.୧୯୮୫ : ପୁତ୍ର ଅଜିତର ବିବାହ ଭୋଜିରେ ଅତିଥିମାନଙ୍କ ଗହଣରେ



ଲକ୍ଷ୍ମଣ ଝୁଲା, ଋଷିକେଶରେ ପୁତ୍ର ଅଜିତ,
ପୁତ୍ରବଧୂ ସୁଶ୍ରୀ, କନ୍ୟା ପୁଷ୍ପମିତ୍ରା ଏବଂ ନାତିମାନଙ୍କ ସହିତ



ଉଦୟପୁରର ରାଣୀ ମନ୍ଦିରରେ ପତ୍ନୀ ଲକ୍ଷ୍ମୀପ୍ରିୟାଙ୍କ ସହିତ



ଲକ୍ଷ୍ମଣ ଝୁଲା, ଋଷିକେଶରେ ପୁଅ, ଝିଅ, ଜ୍ୱାଇଁ ଓ ନାତିମାନଙ୍କ ସହିତ



ଲକ୍ଷ୍ମଣ ଝୁଲା, ଋଷିକେଶରେ ଝିଅ ସୁଚିତ୍ରା, ଜ୍ୱାଇଁ ଅଶୋକ ଓ ପତ୍ନୀଙ୍କ ସହିତ



ନାତି 'ସନ୍ତକ'ର ଜନ୍ମଦିନ ଅବସରରେ, ଏକ ଖୁସିର ମୁହୂର୍ତ୍ତରେ




୧୯୮୯: ମାଉଣ୍ଟଆବୁସ୍ଥିତ ପ୍ରଜାପିତା ବ୍ରହ୍ମକୁମାରୀ ମୁଖ୍ୟ କାର୍ଯ୍ୟାଳୟଠାରେ



ନାତି 'ସାର୍ଥକ'ର ବ୍ରତୋପନୟନ ଉତ୍ସବରେ



ହସଖୁସିର ମୁହୂର୍ତ୍ତ



ଚାରି ପୁତ୍ର-ବଧୁ, ତିନି କନ୍ୟା ଓ ପତ୍ନୀଙ୍କ ସହିତ



ସମ୍ପର୍କର ବନ୍ଧନୀ ଭିତରେ ଯଦୁନାଥ



ଜୀବନ-ସାଥୀ ଲକ୍ଷ୍ମୀପ୍ରିୟାଙ୍କ ସହିତ



ସ୍ନେହ-ପ୍ରବଣ ଯଦୁନାଥ : ନାତିମାନଙ୍କ ସହ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ



ନିର୍ବାଚନରେ **ବିପୁଳ** ଭୋଟରେ **ଜିତିବାପରେ ଶୋଭାଯାତ୍ରାରେ**



ସଚିବାଳୟର ପ୍ରକୋଷ୍ଠରେ ଶିକ୍ଷା ମନ୍ତ୍ରୀ ଭାବେ କାର୍ଯ୍ୟରତ



ତତ୍କାଳୀନ ମୁଖ୍ୟମନ୍ତ୍ରୀ ୰ ନନ୍ଦିନୀ ଶତପଥୀଙ୍କ ସହିତ



ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଓ
ତାଙ୍କ ସହଧର୍ମିଣୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ସହିତ



୧୬.୦୯.୧୯୮୮ : ମସୌରୀ ଠାରେ ଅଭିବାଦନ ଗ୍ରହଣ



୨୬.୦୧.୧୯୮୯ : କଟକର ବାରବାଟୀ ଷ୍ଟାଡ଼ିୟମ ଠାରେ
ଗଣରାଜ୍ୟ ଦିବସ ଅବସରରେ ଅଭିବାଦନ ଗ୍ରହଣ



ଏକ ଅବସର ମୁହୂର୍ତ୍ତରେ



ପୂର୍ବତନ କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରୀ ୰ ପି.ଭି. ନରସିଂହ ରାଓଙ୍କ ସହିତ





ପୁତ୍ର ଅଜିତ ଦ୍ୱାରା ପ୍ରଯୋଜିତ
ଓଡ଼ିଆ ଚଳଚ୍ଚିତ୍ର "ଭୁଲି ହୁଏନା"ର ଶୁଭ ମହୁରତ ଉତ୍ସବରେ




୨୦୦୮ : "ମାଣିକ-ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସ" ର
୧୩ଶ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଉଦ୍‌ବୋଧନ



"ସାରଳା ସମ୍ମାନ-୨୦୦୮" ଗ୍ରହଣ ଅବସରରେ
ରାଜ୍ୟପାଳ ଶ୍ରୀଯୁକ୍ତ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ସହିତ



ମହାଦ୍ରୁମର ଶାଖା-ପ୍ରଶାଖା

# ଶିକ୍ଷାରମ୍ଭ

ଆମ ଘର ସାମନାରେ ଏକ ନିମ୍ନ ପ୍ରାଥମିକ ସ୍କୁଲ୍ ଥିଲା । ଏବେ ତାହା ଉଚ୍ଚ ପ୍ରାଥମିକ ସ୍କୁଲରେ ପରିଣତ ହୋଇଛି । ନନା ସେଇ ସ୍କୁଲରେ ପଢୁଥିଲେ। ମୁଁ ମଧ୍ୟ ସେଇ ସ୍କୁଲରେ ପଢ଼ିଲି । ନନା ମୋ'ଠୁ ଦୁଇ ଶ୍ରେଣୀ ଉପରେ ପଢୁଥିଲେ। ସେ ନିମ୍ନ ପ୍ରାଥମିକ ପାସ୍‌କରି ଆମ ଘରଠୁ ୫ କିଲୋମିଟର ଦୂରରେ ଥିବା ସୋର ମଧ୍ୟ ଇଂରାଜୀ ବିଦ୍ୟାଳୟ ଯାହା କବିବର ରାଧାନାଥଙ୍କ ନାମରେ ନାମିତ ହୋଇଛି, ସେହି ସ୍କୁଲ୍‌ରେ ନାମ ଲେଖାଇଲେ ଓ ସ୍କୁଲ୍‌ର ଛାତ୍ରାବାସରେ ରହିଲେ। ମୁଁ ମଧ୍ୟ ନିମ୍ନ ପ୍ରାଥମିକ ପାସ୍ କରି ସେହି ରାଧାନାଥ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇ ସେହି ଛାତ୍ରାବାସରେ ରହିଲି । ସୋର ଡାକ୍ତରଖାନାକୁ ଲାଗି ଏହି ଛାତ୍ରାବାସଟି ଥିଲା । ସ୍କୁଲର ହେଡ୍‌ମାଷ୍ଟର ଥିଲେ ସୋର ବଜାର ସଂଲଗ୍ନ ରାଉତରାୟପୁର ଗ୍ରାମ ନିବାସୀ । ଭାରି କୋପୀ ମଣିଷଟିଏ । ତାଙ୍କୁ ଆମେ ଭାରି ଡରୁଥିଲୁ । ଛାତ୍ରାବାସର ତତ୍ତ୍ୱାବଧାୟକ ଥିଲେ ବିଂଝ ପ୍ରସାଦ ଷେଣ୍ଢ । ସେ ବି ଟିକିଏ ରାଗୀ । ରାତି ନ'ଟା ପରେ ଯେତେବେଳେ ଖାଇବାବେଳ, ଅନେକ ସମୟରେ ମୁଁ ସେତେବେଳକୁ ଶୋଇ ପଡ଼ିଥାଏ । ବିଂଝସାର୍ ଆସି ମୋତେ ନିଦରୁ ଉଠାଇ ଦିଅନ୍ତି ଓ ଖାଇବା ପାଖରେ ନେଇ ବସାଇ ଦିଅନ୍ତି । ଖାଇବା ଖର୍ଚ୍ଚ ବାବଦକୁ ଆମକୁ ସେତେବେଳେ କିଛି ଚାଉଳ ଓ କିଛି ଟଙ୍କା ଦେବାକୁ ପଡୁଥିଲା । ଆମ ଗାଆଁର ସୋର କୁପାରୀ ସଡ଼କଦେଇ ସୋରକୁ ଯଦିଓ ପାଞ୍ଚ କିଲୋମିଟର୍, କିନ୍ତୁ ସିଧା ଆମ ଗାଆଁରୁ ବିଲବାଟ ଦେଇ ଗଲେ ଚାରିକିଲୋମିଟରେ ବାଟପଡ଼େ । ସେତେବେଳେ ସୋର-କୁପାରୀ ସଡ଼କ କଚ୍ଚା ରାସ୍ତା ଥିଲା । ମାସରେ ପ୍ରାୟ ଥରେ ନନା ଓ ମୁଁ ଗାଆଁକୁ ଯାଉଥିଲୁ । ନନା ମାଇନର ପାସ୍ କରି ସୋରରେ ନୂଆ ଆରମ୍ଭ ହୋଇଥିବା ସତ୍ୟାନନ୍ଦ ହାଇସ୍କୁଲରେ ନାମ ଲେଖାଇ ସେହି ସ୍କୁଲ୍‌ର ଛାତ୍ରାବାସରେ ରହିଲେ । ସେ ହାଇସ୍କୁଲ୍‌କୁ ଚାଲିଯିବାପରେ ବେଳେବେଳେ ମୁଁ

ଗାଆଁକୁ ଏକାଯାଏ । ଫେରିବାବେଳେ ଚାଉଳ ଓ ଟଙ୍କା ନେଇ ଫେରେ । ଆମ ଘରର ବିଶ୍ୱସ୍ତ ମୂଲିଆ ଶିବ ବେହେରା ମୋତେ ଛାଡ଼ିବା ପାଇଁ ଆସେ । ମୁଁ ଥକି ପଡ଼ିଲେ ସେ ଗୋଟେ କାନ୍ଧରେ ମୋତେ ଓ ଆଉ ଗୋଟେ କାନ୍ଧରେ ଚାଉଳ ବୋରା ରଖି ଚାଲେ। ଶିବ ବେହେରା ଥିଲା ଭାରି ହୃଷ୍ଟପୁଷ୍ଟ ମଣିଷଟିଏ । ବିଲବାଟେ ଆସିଲେ ଆମ ଗାଆଁ ବାହାରେ ଗୋଟେ ବଡ଼ ପୋଖରି ଓ ହୁଡ଼ା ଉପରେ ଗୋଟେ ବଡ଼ ବରଗଛ ଥାଏ। କୁହାଯାଏ ସେଇ ବରଗଛରେ କୁଆଡ଼େ ଗୋଟେ ଭୂତ ଥାଏ । ଲୋକମାନେ ସୋର ବଜାରପାଖର ହାଟରୁ ମାଛ କିଣି ସେଇବାଟରେ ଫେରିବାବେଳେ ସେ ଭୂତ କୁଆଡ଼େ ହାତରୁ ମାଛ ଛଡ଼େଇ ନେଇ ଅଦୃଶ୍ୟ ହୋଇଯାଏ । ଏଇ ଭୂତ ଭୟରେ ମୁଁ ସେ ବାଟଦେଇ ଯାଆସ କରୁନଥିଲି । ଆସୁଥିଲି ଯାଉଥିଲି ସଡ଼କବାଟ ଦେଇ ।

ଦିନକର ଘଟଣା । ମନେ ପଡ଼ିଲେ ଆଜି ବି ମୋ ଲୋମ ଟାଙ୍କୁରି ଉଠେ । ଶିବ ବେହେରା ଓ ମୁଁ ଘରୁ ଚାଉଳ ନେଇ ସୋର ଆସୁଥିଲୁ । ବାଟ ଟିକିଏ କମିଯିବ ବୋଲି କିଛି ବାଟ ବିଲରେ ଆସି ମୁହେଁଇଲୁ ସରଶଂଖ ଗାଆଁ ଆଡ଼କୁ । ସରଶଂଖଠୁ ସଡ଼କ ଧରି ସୋର ଯିବୁ । ସରଶଂଖ ପହଞ୍ଚିବାକୁ ଆଉ ଅଳ୍ପବାଟ ଥାଏ ପ୍ରବଳ ବର୍ଷା ଝଡ଼ତୋଫାନ ଆରମ୍ଭ ହୋଇଗଲା । ଗୋଟାପଣେ ଭିଜିଲୁ । ଶିବ ବେହେରା ଚାଉଳକୁ ଓ ମୋତେ କାନ୍ଧ ଉପରେ ରଖି ଦଉଡ଼ିଲା । ମୁଁ ତା' ମୁଣ୍ଡକୁ ଜାବୋଡ଼ି ଧରିଥାଏ । ଦଉଡ଼ି ଦଉଡ଼ି ଆସି ସେ ସରଶଂଖ ପାଖ ସଡକରେ ଥିବା ପୋଲତଳେ ଠିଆ ହୋଇଗଲା । ଫଁ ଫଁ ନିଃଶ୍ୱାସ ନେଉଥାଏ । ମୁଁ ଭୟରେ ଗୋଟାପଣେ ଥରୁଥାଏ । ପିନ୍ଧିଥିବା ହାଫ୍ ପେଣ୍ଟ ଓ ହାଫ୍ ସାର୍ଟ ପୂରା ଭିଜି ଯାଇଥାଏ । ସେଇ ପୋଲତଳେ ଦି'ଟା ଛେଳି ବି ଆସି ଆଶ୍ରୟ ନେଇଥିଲେ। ଛେଳିଙ୍କ ସହିତ ପ୍ରାୟ ଦୁଇଘଣ୍ଟା ଆମେ ରହିଲୁ । ଆଉ ସୋର ନଯାଇ ପୁଣି ଗାଆଁକୁ ଫେରି ଆସିଲୁ । ସନ୍ଧ୍ୟା ହୋଇଯାଇଥାଏ । ଘରେ ଆମକୁ ଦେଖି ସମସ୍ତେ ତଟସ୍ଥ । ସଙ୍ଗେ ସଙ୍ଗେ ମା (ବଡ଼ମା) କାଠଜାକି ନିଆଁ କଲେ, ମୋ ଦେହରେ ସୋରିଷତେଲ ଘସି ସେକିଲେ । ପରଦିନ ସକାଳୁ ଶିବବେହେରା ସହିତ ସୋର ଯାଇ ଦିନ ନ'ଟାରେ ପହଞ୍ଚିଲି ଓ ଗାଧୋଇ ଖାଇ ସ୍କୁଲ ଗଲି ।

ପ୍ରାୟ ଆଠ ନ' ବର୍ଷ ବୟସରୁ ଅର୍ଥାତ୍ ୪ର୍ଥ ଶ୍ରେଣୀରେ ପଢ଼ିବାଠାରୁ କଲିକତା ବିଶ୍ୱବିଦ୍ୟାଳୟରୁ ପାସ୍ କରିବା ପର୍ଯ୍ୟନ୍ତ ୨୨ ବର୍ଷକାଳ ମୁଁ ବିଭିନ୍ନ ଛାତ୍ରାବାସରେ ରହିଥିଲି ।



# ଓଡ଼ିଶାର ପ୍ରଥମ ନିର୍ବାଚନ

୧୯୩୬ ମସିହା ଏପ୍ରିଲ୍ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହା ରାଜ୍ୟପାଳଙ୍କ ଦ୍ୱାରା ଶାସିତ ହେଲା । ତାଙ୍କୁ ପରାମର୍ଶ ଦେବାପାଇଁ ଏକ ପରାମର୍ଶଦାତା ପରିଷଦ ରହିଲା । ଓଡ଼ିଶା ବିଧାନ ସଭାପାଇଁ ପ୍ରଥମ ନିର୍ବାଚନ ହେଲା ୧୯୩୭ ମସିହା ଜାନୁୟାରୀ ମାସରେ । ଏହି ନିର୍ବାଚନବେଳେ ଓଡ଼ିଶା ବିଧାନ ସଭାର ସ୍ଥାନ ଥିଲା ୬୦ । ସେ ନିର୍ବାଚନରେ କେବଳ ମେଟ୍ରିକ୍ ପାସ୍ କରିଥିବା ଲୋକଙ୍କୁ ଭୋଟ ଦେବାର ଅଧିକାର ଦିଆଯାଇଥିଲା । ଭୌଗୋଳିକ ନିର୍ବାଚନ ମଣ୍ଡଳୀ ସହିତ ଜମିଦାର ମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ମଧ ଥିଲା । ଏହି ନିର୍ବାଚନମଣ୍ଡଳୀରୁ କେବଳ ଜମିଦାରମାନେ ପ୍ରତିଦ୍ୱନ୍ଦିତା କରିପାରିବେ । ଏହି ନିର୍ବାଚନ ମଣ୍ଡଳୀରୁ ବଡ଼ବାପା ଶ୍ୟାମସୁନ୍ଦର କଂଗ୍ରେସ ପ୍ରାର୍ଥୀଭାବେ ନିର୍ବାଚନ ଲଢ଼ିଥିଲେ। ସେତେବେଳେ କନିକା ଟିକାୟତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଇଂରେଜମାନଙ୍କ ସପକ୍ଷବାଦୀ ଓ କଂଗ୍ରେସ ବିରୋଧୀ ଥିଲେ । ବଡ଼ବାପାଙ୍କ ବିରୁଦ୍ଧରେ ସେ ପ୍ରାର୍ଥୀ ହୋଇଥିଲେ । ସେତେବେଳେ ଦଳ ଓ ପ୍ରାର୍ଥୀମାନଙ୍କପାଇଁ ନିର୍ବାଚନ ସଂକେତ ନଥିଲା । ବିଭିନ୍ନ ରଙ୍ଗର ଭୋଟବାକ୍ସ ବିଭିନ୍ନ ପ୍ରାର୍ଥୀମାନଙ୍କପାଇଁ ରଖାଯାଉଥିଲା । ଯେଉଁ ପ୍ରାର୍ଥୀଙ୍କୁ ଯେଉଁ ରଙ୍ଗର ବାକ୍ସ ମିଳିଥିବ, ଭୋଟରମାନେ ତାଙ୍କୁ ସେହି ରଙ୍ଗର ବାକ୍ସରେ ଭୋଟ କାଗଜ ପକାଇ ଭୋଟ୍ ଦେବେ । ବଡ଼ବାପାଙ୍କ ଭୋଟ ବାକ୍ସର ରଙ୍ଗଥିଲା କଳା । ମୋ ବଡ଼ଭାଇଙ୍କ ନେତୃତ୍ୱରେ ଆମେ ସବୁ କାଗଜପଟାରେ ହାତଲେଖା ପ୍ରଚାରପତ୍ର ମାରି ଶୋଭାଯାତ୍ରାରେ ଯାଉଥିଲୁ । ପ୍ରଚାର ପତ୍ରରେ ଲେଖାଥିଲା-

କଳା କାଳି କଳାକୃଷ୍ଣ କଳା ଜଗନ୍ନାଥ
କଳା ବାକ୍ସରେ ଭୋଟଦେଇ ରଖ ଧର୍ମପଥ ।

ଏହି ନିର୍ବାଚନରେ ବଡ଼ବାପା ହାରିଗଲେ । କନିକା ଟୀକାୟତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଜିତିଗଲେ । କଂଗ୍ରେସ୍ ୬୦ ଆସନ ମଧ୍ୟରୁ ୪୦ଟିରେ ପ୍ରାର୍ଥୀ ଦେଇଥିଲା । ୩୬ଟି ଆସନରେ ଜିତି ସଂଖ୍ୟା ଗରିଷ୍ଠତା ହାସଲ କରିଥିଲେ ମଧ୍ୟ ସରକାର ଗଠନ କଲା ନାହିଁ । ପାରଳାଖେମୁଣ୍ଡି ମହାରାଜ କୃଷ୍ଣଚନ୍ଦ୍ର ଗଜପତି ପ୍ରଧାନମନ୍ତ୍ରୀ ହେଲେ । ସେତେବେଳେ ମୁଖ୍ୟମନ୍ତ୍ରୀ କୁହାନଯାଇ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ତାଙ୍କ ମନ୍ତ୍ରିମଣ୍ଡଳରେ ଆଉ ଦୁଇଜଣ ମନ୍ତ୍ରୀ ରହିଲେ। ସେମାନେ ହେଲେ - ମାନ୍‌ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବି ଲତିଫୁର ରହମାନ । ସେତେବେଳେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ହୋଇନଥିଲା । ଥିଲା କଟକ । ରାଜ୍ୟର ସବୁ ମୁଖ୍ୟଦପ୍ତର ଥିଲା କଟକରେ । ବିଧାନସଭା ଅଧିବେଶନ ହେଉଥିଲା ରେଭେନ୍‌ସା କଲେଜ ହଲ୍‌ରେ । ପାରଳା ମହାରାଜାଙ୍କର ବିଧାନସଭାରେ ସଂଖ୍ୟା ଗରିଷ୍ଠତା ନଥିବାରୁ ସେ ବିଧାନସଭା ଡାକି ପାରିନଥିଲେ ଏବଂ ତା ୧୯-୭-୧୯୩୭ ରିଖରେ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ। ପ୍ରଧାମନ୍ତ୍ରୀ ହେଲେ ବିଶ୍ୱନାଥ ଦାଶ । ତାଙ୍କ ମନ୍ତ୍ରିମଣ୍ଡଳରେ ରହିଲେ ନିତ୍ୟାନନ୍ଦ କାନୁନ୍‌ଗୋ ଓ ବୋଧରାମ ଦୁବେ ।

ଓଡ଼ିଶା ବିଧାନସଭାର ପ୍ରଥମ ବାଚସ୍ପତି ହେଲେ ମୁକୁନ୍ଦ ପ୍ରସାଦ ଦାସ । ସେ ବାଲେଶ୍ୱର କଚେରିରେ ମୋକ୍ତାର ଥିଲେ । ତାଙ୍କ ଘର ବାଲେଶ୍ୱର ଜିଲ୍ଲାର ଶ୍ୟାମସୁନ୍ଦରପୁର ଗ୍ରାମରେ । ଏହି ଗ୍ରାମଟି ସୋର-କୁପାରୀ ରାସ୍ତା ପାଖରେ, ସୋରଠାରୁ ପ୍ରାୟ ବାରକିଲୋମିଟର ଦୂରରେ । ଉପବାଚସ୍ପତି ହେଲେ ନନ୍ଦକିଶୋର ଦାସ । ତାଙ୍କ ଘର ହେଲା ସୋର ବଜାର ନିକଟସ୍ଥ ମୋବାରକପୁର ଗାଆଁରେ ।

ଏହାପରେ ବଡ଼ବାପା ଆଉ ରାଜନୀତିରେ ମନଦେଇ ନାହାନ୍ତି । ୧୯୩୯ ମସିହାରେ ମୋ ବାପାଙ୍କର ମୃତ୍ୟୁ ହୋଇଯିବାପରେ ସେ ପୂରାପୂରି ଜମିଦାରୀ କାମରେ ନିଜକୁ ନିୟୋଜିତ କଲେ । ନିଜ ଗାଆଁରେ ଓ ଜମିଦାରୀର ଅନ୍ୟ ଗାଆଁମାନଙ୍କରେ ଆମର ଅନେକ ଚାଷଜମି ଥିଲା । କକା ଲକ୍ଷ୍ମୀକାନ୍ତ ଜମିବାଡ଼ି କଥା ବୁଝୁଥିଲେ ।

ଆମ ଜମିଦାରୀ ଖବର ବୁଝିବାପାଇଁ ଜଣେ ନାଏବ ଥିଲେ। ତାଙ୍କ ନାଆଁ ଶିବ ପ୍ରସାଦ ଦାଶ । ସେ ଆମରି ଗାଆଁ ପାଖ ଲୋକ । ପ୍ରତ୍ୟହ ଆମ ଘରକୁ ଆସନ୍ତି । ପିଣ୍ଡାରେ ମସିଣା ପକାଇ ବସନ୍ତି । କାଠବାକ୍ସଟିଏ ପାଖରେ ଥାଏ ।

ତାଙ୍କ ପାଖରେ ବସନ୍ତି ଗୁମାସ୍ତା ପ୍ରାଣକୃଷ୍ଣ ମହାନ୍ତି । ତାଙ୍କ ଘର ଜଗତସିଂହପୁର । ପ୍ରଜାମାନେ ଖଜଣା ଦେବାକୁ ଆସିଲେ ସେମାନେ ତାଙ୍କଠୁ ଖଜଣା ରଖି ପାଉତି ଦିଅନ୍ତି । ପ୍ରାଣକୃଷ୍ଣ ମହାନ୍ତି ଆମ ଘରେ ରହନ୍ତି । ଜମିଦାରୀ ଉଚ୍ଛେଦପରେ ସେ ବାବାଜୀ ହୋଇ ଯାଇଥିଲେ । ହାଟସାହି ଗାଆଁରେ ତାଙ୍କୁ ଆମେ ଘରବାଡ଼ି ଖଣ୍ଡେ ଦେଇଥିଲୁ । ସେଇଠି ଛୋଟିଆ ମାଟିଘର କରି ରହୁଥିଲେ । ହରିସାଗରରେ ଆମ ମନ୍ଦିର ଠାକୁର ଠାକୁରାଣୀଙ୍କର ଚନ୍ଦନ ଯାତ୍ରା ହୁଏ । ଠାକୁର ଠାକୁରାଣୀ ଡଙ୍ଗାରେ ବସି ପୋଖରି ଜଳରେ ବୁଲିବାବେଳେ ପ୍ରାଣକୃଷ୍ଣ ବାବାଜୀ ସେଇ ଡଙ୍ଗାରେ ବସି କୀର୍ତ୍ତନିଆଙ୍କ ସହିତ କୀର୍ତ୍ତନ କରୁଥିଲେ । ଥରେ ସେ ଡଙ୍ଗା ବୁଲୁଥିବାବେଳେ ପୋଖରି ମଝିରେ ବୁଡ଼ି ଗଲା । ଆଶ୍ଚର୍ଯ୍ୟର କଥା ସବୁଲୋକ ରକ୍ଷା ପାଇଗଲେ କିନ୍ତୁ ପ୍ରାଣକୃଷ୍ଣ ବାବାଜୀ ମୃତ୍ୟୁ ବରଣ କଲେ । ଗାଆଁର ନିପୁଣ ପହଁରାଳିମାନେ ପାଣିରେ ବୁଡ଼ିଯାଇଥିବା ପ୍ରାଣକୃଷ୍ଣ ବାବାଜୀଙ୍କ ଶବକୁ ପାଣି ଭିତରୁ ବାହାର କରିଥିଲେ । ତାଙ୍କ ମୃତ୍ୟୁର ଖବର ତାଙ୍କ ସ୍ତ୍ରୀଙ୍କ ପାଖକୁ ପଠାଯାଇଥିଲା । ସେ ଜଗତସିଂହପୁରରୁ ଆସିଲେ ଓ କିଛିଦିନ ରହିଲେ ଓ ଆମ ପରିବାର ବାବାଜୀଙ୍କ ନାମରେ ଦେଇଥିବା ସବୁ ଜମିବାଡ଼ିକୁ ବିକ୍ରି କରି ଚାଲିଯାଇଥିଲେ ।



# ସତ୍ୟାନନ୍ଦ ହାଇସ୍କୁଲ

ରାଧାନାଥ ମଧ୍ୟ ଇଂରାଜୀ ବିଦ୍ୟାଳୟରୁ ମାଇନର ପାସ୍ କରି ନନା ପଢୁଥିବା ସତ୍ୟାନନ୍ଦ ହାଇସ୍କୁଲ୍‌ରେ ନାମ ଲେଖାଇଲି ଓ ଛାତ୍ରାବାସରେ ରହିଲି । ଛାତ୍ରାବାସଟି ଥିଲା ଏକ ଚାଳଘର । ସେଇଠି ଶପ, ସତରଞ୍ଜି, ଚାଦର ପ୍ରଭୃତି ପକେଇ ଆମେ ଶୋଉଥିଲୁ । ସେତେବେଳେ ସ୍କୁଲ୍‌ର ଅବସ୍ଥା ମଧ୍ୟ ଥିଲା ତଦ୍ରୂପ । ନନ୍ଦକିଶୋର ଦାସଙ୍କ ପ୍ରଚେଷ୍ଟାରେ ଆରମ୍ଭ ହୋଇଥିବା ସ୍କୁଲ୍‌କୁ କିଛି ସାହାଯ୍ୟ ପ୍ରଦାନ କରି ସ୍କୁଲ୍ ସବ୍‌ଇନ୍ସପେକ୍ଟର୍ ଥିବା କେଦାରପୁର ଗାଆଁଠୁ ସାମାନ୍ୟ ଦୂରରେ ଥିବା ଘାସୁଆ ଗାଆଁର ଉପେନ୍ଦ୍ରନାଥ ପ୍ରଧାନ ତାଙ୍କ ପୁତ୍ର ସତ୍ୟାନନ୍ଦ ଅକାଳରେ ମୃତ୍ୟୁବରଣ କରିଥିବାରୁ ସେହି ପୁତ୍ରର ସ୍ମୃତିରକ୍ଷା ପାଇଁ ଏହି ସ୍କୁଲ୍‌କୁ ସତ୍ୟାନନ୍ଦ ନାମରେ ନାମିତ କରିଥିଲେ।

ସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ଭଦ୍ରକ ନିକଟସ୍ଥ ବାଉଦପୁର ଗ୍ରାମର ସୁଶୀଲ୍ କୁମାର ବେନାର୍ଜୀ । ସେ କିଛିଦିନ ଚାକିରି କରିବାପରେ ଚାକିରି ଛାଡ଼ି ଚାଲିଗଲେ ଓ ଭଦ୍ରକରେ ଆଇନ୍ ବ୍ୟବସାୟ କଲେ । ତାଙ୍କ ପରେ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ହୋଇ ଆସିଲେ ହୀରାଲାଲ୍ ବର୍ଦ୍ଧନ । ଅନ୍ୟତ୍ର ବହୁଦିନ ଶିକ୍ଷକତା କରିବାପରେ ସେ ଏଠାକୁ ଆସିଥିଲେ। ସେ ଥିଲେ ବାଲେଶ୍ୱର ସହରର ବାସିନ୍ଦା । ମୁଁ ପଢୁଥିବା ସମୟରେ ସେଠାରେ ଶିକ୍ଷକତା କରୁଥିଲେ ଯେଉଁମାନେ, ସେମାନେ ହେଲେ ଗୌରୀଶ୍ୟାମ ମହାନ୍ତି, ମଧୁସୂଦନ ଶତପଥୀ, ଚନ୍ଦ୍ରଶେଖର ପଣ୍ଡା, ବିଶ୍ୱରଂଜନ ମହାପାତ୍ର, ପଣ୍ଡିତ ଭୋଳାନାଥ ଶତପଥୀ ପ୍ରମୁଖ । ମଧୁସୂଦନ ଶତପଥୀଙ୍କ ବାପା ଆମ ଘରର ପୁରୋହିତ ଥିଲେ। ସେ ସମୟରେ ସ୍କୁଲ୍‌ର କିରାଣି ଥିଲେ ଜଗବନ୍ଧୁ ଦାସ ଓ ପିଅନ୍ ଥିଲେ ଯୁଧିଷ୍ଠିର ପ୍ରଧାନ । କେତେକ ସହପାଠୀଙ୍କ ସହିତ ମୋର ଘନିଷ୍ଠତା ଥିଲା । ସେମାନେ ହେଲେ ମାଖନପୁରର ନନ୍ଦକିଶୋର ଦାସ, ଜମିଦାର ନିରଞ୍ଜନ ପାଢ଼ୀ, ମହୁମୁହାଣର ଜନାର୍ଦ୍ଦନ ପଣ୍ଡା, ଭଦ୍ରକର ଲୋକନାଥ ଦାସ, ବାଲିକ ତିରଣର ନୀଳମଣି ପୁହାଣ, ନୀଳଗିରି ଅଞ୍ଚଳର ଚକ୍ରଧର ଚୌଧୁରୀ ଓ ଗୋଲକ ମହାନ୍ତି ପ୍ରମୁଖ । ପ୍ରଧାନ ଶିକ୍ଷକଙ୍କ କନିଷ୍ଠପୁତ୍ର ବ୍ରଜଦୁଲାଲ ବର୍ଦ୍ଧନ ମଧ୍ୟ ମୋର ସହପାଠୀ ଥିଲେ ।

ହୀରାଲାଲ ବର୍ଦ୍ଧନ ଥିଲେ ଖୁବ୍ କଡ଼ା ମିଜାଜର ଲୋକ । ତାଙ୍କୁ ଦେଖିଲେ ଆମେ ଡରି ଯାଉଥିଲୁ । ମାଇନର୍ ସ୍କୁଲ୍‌ପରି ଏଠାରେ ଛାତ୍ରାବାସରେ ଆମେ ଖାଇବା ବାବଦକୁ ଚାଉଳ ଓ ଟଙ୍କା ଦେଉଥିଲୁ । ସ୍କୁଲ୍‌ର ପଶ୍ଚିମ ଦିଗରେ ରେଳଲାଇନ୍ । ସେଠାରେ ଯାଉଥିବା ଟ୍ରେନ୍‌ର ଶବ୍ଦ ଆମେ ଶୁଣୁଥିଲୁ । ସ୍କୁଲ୍‌ର ଚତୁଃପାର୍ଶ୍ୱରେ ଜନବସତି ନଥାଇ ଅନେକ ଫାଙ୍କା ଜାଗାଥିଲା । ଛାତ୍ରାବାସରେ ପାଣିପାଇଁ ଗୋଟିଏ କୂଅ ଥିଲା । ସ୍କୁଲ୍ ପାଖରେ ଥିବା ସାଉଁଳି ପୋଖରିରେ ଆମେ ଗାଧୋଉଥିଲୁ । ବେଳେବେଳେ ରବିବାର ଦିନ ଯାଉଥିଲୁ ସ୍କୁଲ ଆଗଦେଇ ଶିରାପୁର ଆଡ଼କୁ ଯାଇଥିବା ସଡ଼କ ପାଖରେ ଥିବା ଗୁହାରିଆସାହି ଗାଆଁର ଦୁର୍ଗାଚରଣ ପୋଖରିକୁ । ଏହି ପୋଖରିରେ ମୁଁ ପହଁରିବା ଶିଖିଥିଲି ।

ଏହି ସମୟରେ ନନାଙ୍କ ଦେଖାଦେଖି ମୁଁ ବି ପାନଖିଆ ଆରମ୍ଭ କରିଦେଲି । ସ୍କୁଲ୍ ସାମ୍ନାରେ ଏକ ଛୋଟିଆ ଚାଳଘରେ ରଘୁପାନ ଦୋକାନଥିଲା । ସେଇଠୁ ନିତି ପାନ କିଣି ଖାଉଥିଲି ।

ଛୁଟି ହେଲେ ମୁଁ ଓ ବଡ଼ ଭାଇ ଚାଲି ଚାଲି ଗାଆଁକୁ ଯାଉ ଓ ସ୍କୁଲ୍ ଖୋଲିବା ଦିନ ପୁଣି ଚାଲି ଚାଲି ସ୍କୁଲ୍‌କୁ ଆସୁ । ଆମ ଘରର ସେଇ ମୂଲିଆ ଶିବ ବେହେରା ଆମ ସାଙ୍ଗରେ ଆସେ । ଛାତ୍ରାବାସକୁ ଦେୟ ଚାଉଳ ସେ ନେଇଆସେ ।

ମୁଁ ଅଙ୍କରେ ଭାରି ଦୁର୍ବଳ ଥିଲି । ଶିକ୍ଷକ ମଧୁସୂଦନ ଶତପଥୀ ମୋତେ ଅଙ୍କ ଟିଉସନ୍ କରୁଥିଲେ। ବଡ଼ବାପାଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ଇଚ୍ଛାଧୀନ ବିଷୟ ଭାବେ ସଂସ୍କୃତ ନେଇଥିଲି ।

ସେତେବେଳେ ମେଟ୍ରିକୁଲେସନ୍ ଚାରିବର୍ଷଥିଲା ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ । ମୋ ନନା ୧୯୪୩ ମସିହାରେ ମେଟ୍ରିକ୍ ପାସ୍ କଲେ। ତା'ପରେ ବଡ଼ବାପା ତାଙ୍କ ବିବାହର ବ୍ୟବସ୍ଥା କରି ନିର୍ବନ୍ଧ କାମ ସାରିଦେଲେ । ମାତ୍ର ନିର୍ଦ୍ଧାରିତ ବିବାହ ଦିନ ପୂର୍ବରୁ ନନାଙ୍କର ଦେହାନ୍ତ ହୋଇଗଲା । ଏ ଦୁଃଖର ଆଘାତ ଆଜି ବି ମୋ ମନରେ ଅଛି ।

ସେତେବେଳେ ଶିକ୍ଷା ବର୍ଷ ଜାନୁଆରୀ ପହିଲାରୁ ଆରମ୍ଭ ହେଉଥିଲା । ମେଟ୍ରିକୁଲେସନ୍ ପରୀକ୍ଷା ବିଶ୍ୱବିଦ୍ୟାଳୟ ଅଧୀନରେ ହେଉଥିଲା । ନନା ପାଟନା ବିଶ୍ୱବିଦ୍ୟାଳୟରୁ ମେଟ୍ରିକ୍ ପାସ୍ କରିଥିଲେ। ୧୯୪୩ ମସିହାରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଶିକ୍ଷାମନ୍ତ୍ରିତ୍ୱ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ହାଇସ୍କୁଲ୍‌ମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନକୁ ଆସିଲା । ଶିକ୍ଷାବର୍ଷ ଜାନୁଆରୀ ପହିଲାରୁ ଆରମ୍ଭ ନ ହୋଇ ଜୁଲାଇ ପହିଲାରୁ ଆରମ୍ଭ ହେଲା । ଆମେ ୧୯୪୫ ମସିହାରେ ମେଟ୍ରିକୁଲେସନ

ପାସ୍ କରିବା କଥା, ବିଶ୍ୱବିଦ୍ୟାଳୟର ନିଷ୍ପତ୍ତି ଅନୁଯାୟୀ ୧୯୪୪ ମସିହା ଜୁନ୍‌ମାସ ପୂର୍ବରୁ ପରୀକ୍ଷା ଦେଲୁ । ଏହାକୁ Short Session କୁହାଗଲା । ଆମ ଉପର ଶ୍ରେଣୀର ପିଲାମାନେ ମଧ୍ୟ ଆମ ସହିତ ପରୀକ୍ଷା ଦେଲେ । ସେମାନଙ୍କର ଗୋଟିଏ ବର୍ଷ କ୍ଷତି ହେଲା ଓ ଆମର ଗୋଟିଏ ବର୍ଷ ଲାଭ ହେଲା ।

ଆମେ ପରୀକ୍ଷା ଦେବାବେଳେ ଆମ ସ୍କୁଲର ପରୀକ୍ଷା କେନ୍ଦ୍ର ଥିଲା ବାଲେଶ୍ୱର ଜିଲ୍ଲାସ୍କୁଲ । ପରୀକ୍ଷା କେଇଦିନ ବାଲେଶ୍ୱର ସହରର ମୋତିଗଞ୍ଜ ବଜାର ସଂଲଗ୍ନ ବଟେଶ୍ୱରଠାରେ ଗୋଟିଏ ଘର ଭଡ଼ା ନିଆଯାଇଥିଲା । ଆମେ ପରୀକ୍ଷାର୍ଥୀମାନେ ସେଇଠି ରହି ପରୀକ୍ଷାଦେଲୁ । ମୁଁ ୨ୟ ଶ୍ରେଣୀରେ ମେଟ୍ରିକ୍ ପାସ୍ କଲି ।

ଏହି ସତ୍ୟାନନ୍ଦ ହାଇସ୍କୁଲ୍ ଥିଲା ମୋ ଜୀବନର ପଥପ୍ରଦର୍ଶକ । ଶିକ୍ଷାନୁଷ୍ଠାନକୁ "ମଣିଷ ତିଆରି କାରଖାନା" ବୋଲି କୁହାଯାଏ । ସେ ସମୟରେ ଭବିଷ୍ୟତର ମଣିଷମାନଙ୍କୁ ତିଆରି କରିବା ପାଇଁ ଶିକ୍ଷକ-ଶିକ୍ଷିକାମାନଙ୍କର ନିଷ୍ଠା ଆଜି ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ ।

ପରବର୍ତ୍ତୀ କାଳରେ ମୁଁ ଶିକ୍ଷା ମନ୍ତ୍ରୀଥିବାବେଳେ ସତ୍ୟାନନ୍ଦ ହାଇସ୍କୁଲ୍‌ର ଏକ ଉତ୍ସବରେ ଯୋଗଦେବାକୁ ଯାଇଥିଲି । ସେଠାରୁ ଫେରି ଛାତ୍ରାବାସର ପକ୍କାଗୃହ ନିର୍ମାଣ ପାଇଁ ଟଙ୍କା ମଞ୍ଜୁର କରିଥିଲି । ଛାତ୍ରାବାସ ନିର୍ମାଣ ପରେ ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ଦ୍ୱାରା ଏହାକୁ ଉଦ୍‌ଘାଟନ କରାଇଥିଲି । ଏହାର ନାମ ରଖିଥିଲି "ନନ୍ଦ କିଶୋର ଛାତ୍ରାବାସ ।" ମାତ୍ର ପରବର୍ତ୍ତୀ କାଳରେ ବିଭିନ୍ନ ସ୍ଥାନରେ ହାଇସ୍କୁଲମାନ ପ୍ରତିଷ୍ଠା ହୋଇଥିବାରୁ ଛାତ୍ରାବାସରେ ଆଉ ପିଲା ରହିବାର ଆବଶ୍ୟକତା ପଡ଼ୁନାହିଁ । ତେଣୁ ଏ ଗୃହ ଆଉ ଛାତ୍ରାବାସ ହୋଇନାହିଁ ।

ଏହି ସମୟରେ ତୁଡ଼ିଗଡ଼ିଆଠାରେ ଏକ ହାଇସ୍କୁଲ ପ୍ରତିଷ୍ଠା କରି ନୀଳାମ୍ବର ଦାସଙ୍କ ନାମରେ ସେ ସ୍କୁଲ୍‌କୁ ନାମିତ କରାଯାଇଥିଲା । ୧୯୪୦ ରୁ ୧୯୪୪ ମସିହା ମଧ୍ୟରେ ମୁଁ ଅଧ୍ୟୟନ କରିଥିବା ଏହି ସ୍କୁଲ ଆଜି ବି ତାର ସ୍ଥିତିକ ସୁଦୃଢ଼ ରଖିଛି ।

ମନ୍ତ୍ରୀ ନ ଥାଇ ମଧ୍ୟ ଅନୁଷ୍ଠାନର ହୀରକ ଜୟନ୍ତୀ ଉତ୍ସବକୁ ମୁଁ ମୁଖ୍ୟ ଅତିଥି ଭାବରେ ଯାଇଥିଲି । ସେଇଠି କିଛି ପୁରାତନ ଛାତ୍ରଛାତ୍ରୀଙ୍କୁ ଦେଖିବାର ସୁଯୋଗ ପାଇଥିଲି ।

ସତ୍ୟାନନ୍ଦ ହାଇସ୍କୁଲ ମୋ ପାଇଁ ଏକ ଅଭୁଲା ଅନୁଷ୍ଠାନ ।



# ବାଲେଶ୍ୱର କଲେଜରେ ଆଇ.ଏ. ପଢ଼ା

ମେଟ୍ରିକୁଲେସନ୍ ପାସ୍ କରି ନୂଆ ଆରମ୍ଭ ହୋଇଥିବା ବାଲେଶ୍ୱର କଲେଜରେ ନାମ ଲେଖାଇଲି ଆଇ.ଏ. ଶ୍ରେଣୀରେ ୧୯୪୪ ମସିହାରେ । ପରେ ଏହି କଲେଜର ନାମ ଫକୀର ମୋହନଙ୍କ ନାମରେ ନାମିତ ହେଲା । ଏହା ବାଲେଶ୍ୱର ଜିଲ୍ଲାସ୍କୁଲ କୋଠାରେ ଆରମ୍ଭ ହେଲା । ବାଲେଶ୍ୱର ଜିଲ୍ଲାସ୍କୁଲ୍ ଛାତ୍ରାବାସ ହେଲା କଲେଜ ଛାତ୍ରାବାସ । ମୁଁ ସେହି ଛାତ୍ରାବାସର ଅନ୍ତେବାସୀ ହେଲି । ତତ୍ତ୍ୱାବଧାୟକ (superintendent) ଥିଲେ ଅଧ୍ୟାପକ ଶିବକୁମାର ପଣ୍ଡା ।

ବଡ଼ବାପା ଚାହୁଁଥିଲେ ମୁଁ ତାଙ୍କରି ପରି ସଂସ୍କୃତଜ୍ଞ ହୁଏ । ତେଣୁ ଆଇ.ଏ. ରେ ତର୍କଶାସ୍ତ୍ର, ଅର୍ଥନୀତି ଓ ସଂସ୍କୃତ ନେଲି । ଛାତ୍ରାବାସରେ ଚିନ୍ତାମଣି ବେହେରା, ଚିନ୍ତାମଣି ବାରିକ, ଆନନ୍ଦଚନ୍ଦ୍ର ମହାନ୍ତି, ବୈରାଗୀ ଚରଣ ମହାପାତ୍ର (ଏମାନେ ସମସ୍ତେ ମୟୁରଭଞ୍ଜର) ରହୁଥିଲେ । ଓଉପଦା ଅଞ୍ଚଳର ହରେକୃଷ୍ଣ ମହାପାତ୍ର ଯେ କି ବୟସରେ ମୋଠୁଁ ୪/୫ ବର୍ଷ ବଡ଼ ହେବେ ସେ ବି ରହୁଥିଲେ । ବଡ଼ ଭାଇ ଭଳି ସେ ମୋର ବହୁତ ଯତ୍ନ ନେଉଥିଲେ । ମୁଁ ଶୋଇପଡ଼ିଥିଲେ ସେ ମୋତେ ଉଠେଇ ସାଙ୍ଗରେ ନେଇ ଯାଉଥିଲେ ଖାଇବାପାଇଁ ! ସେ ମଝିରେ ମଝିରେ ଗୀତ ଗାଇ ଆମକୁ ଶୁଣାଉଥିଲେ। ପୁରାତନ ଗୀତ ଓ ଭଜନ ପ୍ରଭୃତି ତାଙ୍କର ପ୍ରିୟ ସଙ୍ଗୀତ ଥିଲା । ପରବର୍ତ୍ତୀ କାଳରେ ସେ ଓଉପଦା ପଞ୍ଚାୟତ ସମିତିର ଅଧ୍ୟକ୍ଷ ହୋଇଥିଲେ । ତା'ପରେ ସଂସାର ବିରାଗୀ ହୋଇ ପଡ଼ିଲେ । ଶ୍ୟାମସୁନ୍ଦର ମହାପାତ୍ର ଯେ' କି ମୋର ସଂପର୍କୀୟ ହେଲେ, ସେ' ବି ମୋର ସହପାଠୀ ଥିଲେ । ଗୋବିନ୍ଦ୍ର ଚନ୍ଦ୍ର ସେନାପତି (ପରେ ଆଇ.ପି.ଏସ୍), ଅବନ୍ତୀକାନ୍ତ ରାୟ (ପରେ ଆଇ.ଏ.ଏସ୍.), ଶୋଭେଶଚନ୍ଦ୍ର ରାୟ (ପରେ ଏଡ଼ଭୋକେଟ ଜେନେରାଲ୍) ମଧ୍ୟ ସେ ସମୟରେ ମୋର ସହପାଠୀ ଥିଲେ ।

କଲେଜର ପ୍ରଥମ ଅଧ୍ୟକ୍ଷ ଥିଲେ ବି.ଏନ୍.ରୋହାତ୍‌ଗୀ । ତାଙ୍କ ପରେ ଆସିଲେ କିଶୋରୀ ମୋହନ ଦ୍ୱିବେଦୀ । ସେ ସୋରର କେଦାରପୁର ଗ୍ରାମର ଲୋକ । ସେ

ପୁରୀ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ମଧ୍ୟ ଥିଲେ । ବଡ଼ ବାପାଙ୍କ ସହିତ ତାଙ୍କର ଥିଲା ଭାରି ଭଲ ସଂପର୍କ ।

ସେତେବେଳେ ଇଂରାଜୀ ଅଧ୍ୟାପକ ଚାକିରି ପାଇଁ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିବା ବ୍ୟକ୍ତିଙ୍କର ଘୋର ଅଭାବ ଥିଲା । ତେଣୁ ତୃତୀୟ ଶ୍ରେଣୀରେ ଇଂରାଜୀ ଏମ୍.ଏ. ପାସ୍ କରିଥିବା ରାଜକିଶୋର ରାୟ ଇଂରାଜୀ ଅଧ୍ୟାପକ ହୋଇଥିଲେ । ଶ୍ରୀ ରାୟ ଓଡ଼ିଆ ଭାଷାରେ ଜଣେ ଉଚ୍ଚକୋଟୀର ଗାଳ୍ପିକ । ପରବର୍ତ୍ତୀ କାଳରେ ସେ ଓଡ଼ିଆ ଏମ୍.ଏ. ପାସ୍ କରି ଓଡ଼ିଆ ଅଧ୍ୟାପକ ହୋଇଥିଲେ ।

ତାଙ୍କରି ନିର୍ଦ୍ଦେଶନାରେ କଲେଜରେ ଛାତ୍ରମାନଙ୍କ ଦ୍ୱାରା "ରଘୁ ଅରକ୍ଷିତ" ନାଟକ ମଞ୍ଚସ୍ଥ ହୋଇଥିଲା । ସେଥିରେ ରଘୁ ଅରକ୍ଷିତ ଭୂମିକାରେ ଅଭିନୟ କରିଥିଲେ ପୂର୍ଣ୍ଣଚନ୍ଦ୍ର ଶତପଥୀ । ଶ୍ୟାମସୁନ୍ଦର ମହାପାତ୍ର ଭାଉଜ ଭୂମିକାରେ ଓ ମୁଁ ଦିଅର ଭୂମିକାରେ ଅଭିନୟ କରୁଥିଲୁ । ଆମ ଅଭିନୟରେ ମୁଗ୍ଧହୋଇ ଦେଖଣାହାରିଙ୍କ ମଧ୍ୟରୁ କେତେଜଣ ଆମକୁ ରୌପ୍ୟ ପଦକମାନ ପ୍ରଦାନ କରିଥିଲେ ।

ଏଇ ଆଇ.ଏ. ପଢୁଥିବା ସମୟରେ ମୋ କକାଙ୍କ ବଡ଼ଝିଅ ସ୍ୱର୍ଣ୍ଣମଣିଙ୍କର ବିବାହ ଖନ୍ତାପଡ଼ା ନିକଟସ୍ଥ ନାଚିନା ଗ୍ରାମର ଫଣୀନ୍ଦ୍ରନାଥ ମହାପାତ୍ରଙ୍କ ସହିତ ଅନୁଷ୍ଠିତ ହୋଇଥିଲା । ଫଣୀବାବୁ ସେତେବେଳେ ରୁପ୍ସା ବାରିପଦା ରେଳପଥର କୃଷ୍ଣଚନ୍ଦ୍ରପୁର ଷ୍ଟେସନର ଷ୍ଟେସନ ମାଷ୍ଟର ଥିଲେ । ତାଙ୍କ ବାପା ବିଷ୍ଣୁ ମୋହନ ମହାପାତ୍ର କୋଲୋଘାଟ ଷ୍ଟେସନ୍ ମାଷ୍ଟର ଥିଲେ । ବିବାହପରେ ନାଚିନ୍ତା ଗାଆଁରେ ସାତଦିନ କଟେଇ ଅଷ୍ଟମଙ୍ଗଳାଦିନ ସୁନୀନାନୀ ଆମ ଘରକୁ ଫେରି ଆସିଥିଲେ । ଇତି ମଧ୍ୟରେ ମୋର ଆଇ.ଏ. ପରୀକ୍ଷା ସରିଗଲା । ନାନୀଙ୍କୁ ନେଇ ପୁରୀ-କଲିକତା ପେସେଞ୍ଜର ଟ୍ରେନ୍‌ରେ ରୂପ୍ସାଗଲି । ସକାଳେ ରୂପ୍ସାରୁ ପାତିଟ୍ରେନ୍ ବାରିପଦା ଯିବ । ଆମେ ସାରାରାତି ପ୍ଲାଟ୍‌ଫର୍ମରେ କଟେଇ ସକାଳ ଟ୍ରେନ୍‌ରେ କୃଷ୍ଣଚନ୍ଦ୍ରପୁର ଗଲୁ । ଫଣୀବାବୁ ଭାରି ରାଗୀ । ନାନୀଙ୍କର ଯିବାରେ ବିଳମ୍ବ ହେବାରୁ ସେ ସେଦିନ ଭାରି ରାଗିଥିଲେ । ପରେ ଅବଶ୍ୟ ତାଙ୍କ ରାଗ ଶାନ୍ତ ହୋଇଗଲା ।

କୃଷ୍ଣଚନ୍ଦ୍ରପୁର ଷ୍ଟେସନ୍ ପାଖଦେଇ ବାଲେଶ୍ୱର-ବାରିପଦା ସଡ଼କ ଯାହା ଏବେ ୫ ନମ୍ବର ଜାତୀୟ ରାଜପଥରେ ସାମିଲ୍ ହୋଇଛି, ଯାଇଛି । ଏହି ସଡ଼କରେ କୃଷ୍ଣଚନ୍ଦ୍ରପୁର ପାଖରେ ଏକ ରେଳ ଫାଟକ ଅଛି । ଫାଟକ ପାଖରେ ଜଙ୍ଗଲ ବିଭାଗର ରେଞ୍ଜ ଅଫିସ୍ । ରେଞ୍ଜର ଥାଆନ୍ତି ଦୁର୍ଗାଚରଣ ପଣ୍ଡା । ସେ ଭାରି ସ୍ନେହୀ ଓ ମେଳାପୀ ଲୋକ । ଫାଟକ ଡେଇଁବା ପରେ ପରେ ଜଙ୍ଗଲ କଣ୍ଟ୍ରାକ୍ଟର ବଲାଇ ବେନାର୍ଜୀଙ୍କ

ବାସଗୃହ । ପାଖ ଆଖରେ ଆଉ କାହାରି ଘର ନଥିଲା । ମୁଁ ପହଞ୍ଚିବା ଦିନ ଭିଣୋଇବାବୁ ମୋତେ ସାଙ୍ଗରେ ନେଇ ବଲାଇବାବୁଙ୍କ ଘରକୁ ଗଲେ । ତା'ପରେ ସେଠି ଆସି ପହଞ୍ଚିଲେ ରେଞ୍ଜର ବାବୁ । ଭିଣୋଇ ମୋତେ ଦେଖେଇ ସେମାନଙ୍କୁ କହିଲେ - ଏ ମୋ ଶଳା । ତା'ପରେ ଆରମ୍ଭ ହେଲା ତାସ୍ ଖେଳ । ମୁଁ ବି ଖେଳିଲି । ଷ୍ଟେସନ୍‌ରେ ଭାଗବତ ବୋଲି ଜଣେ ପଏଣ୍ଟସମେନ୍ ଥାଏ । ଗାଆଁରୁ ଆମେ ମିଠେଇ ଫେଣି ଓ ଖଜା କିଛି ଧରି ସେ ପହଞ୍ଚିଲା । ବଲାଇ ବାବୁଙ୍କ ଘରେ ତାକୁ ଦେଲା । ଭିଣୋଇବାବୁ ପଚାରିଲେ - "ମିଠେଇ ଦୁର୍ଗାବାବୁଙ୍କ ଘରେ ଦେଇଛୁ ?

ସେ କହିଲା - "ହଁ" ।

ପରେ ପରେ ବଲାଇ ବାବୁଙ୍କ ସ୍ତ୍ରୀ ଶାଳପତ୍ର ଠୁଙ୍ଗାରେ ଦୁଇ ଦୁଇଟି ମିଠେଇ ଆଣି ଆମକୁ ଦେଲେ । ଆମେ ଖାଇଲୁ ।

ପ୍ରତିଦିନ ସଂଧ୍ୟାରେ ସେଠି ତାସ୍ ଖେଳ ଚାଲେ । ମୁଁ ଓ ଦୁର୍ଗା ବାବୁ ଗୋଟାଏ ପଟରେ । ଭିଣୋଇ ଓ ବଲାଇବାବୁ ଅନ୍ୟ ପଟେ ।

ସେଠାରେ ମୁଁ ରହିବା ଭିତରେ ଭାଗବତ ମୋତେ ସାଇକେଲ୍ ଚଢ଼ା ଶିଖାଇଥିଲା ।

କୃଷ୍ଣଚନ୍ଦ୍ର ପୁରରୁ ବାରିପଦା ଆଡ଼କୁ ଗଲେ ପ୍ରାୟ ଏକ କିଲୋମିଟର୍‌ପରେ ଏକ ଖ୍ରୀଷ୍ଟିୟାନ୍ ବସତି ପଡ଼େ । ନାଆଁ ତାର ଲଙ୍ଗଳକଟା । ସେଠାରେ ଏକ ବଡ଼ ଗୀର୍ଜା ଅଛି । ସେହି ଗୀର୍ଜାକୁ ମୁଁ କେତେଥର ଯାଇଛି ।

ଗୀର୍ଜାର ଫାଦରଙ୍କ ସହିତ ମୋର ଚିହ୍ନା ପରିଚୟ ହୋଇଗଲା । ଥରେ ଦିଥର ରବିବାରର ପ୍ରାର୍ଥନା ସଭାରେ ଯୋଗ ଦେଇଛି । ଗୀର୍ଜା ପରିସରରେ ଥିବା ଆମ୍ବଗଛରୁ ପାଚିଲା ଆମ୍ବ ଆଣି ନାନୀକୁ ଦେଇଛି । ଗାଆଁ ଭିତରକୁ ଯାଇ ଖ୍ରୀଷ୍ଟିୟାନ୍ ପୁଅଝିଅଙ୍କ ସହିତ ମିଶିଛି । ସେମାନଙ୍କ ବାଡ଼ିରୁ ବି ଆମ୍ବ ଆଣିଚି । ସାଇକେଲ୍ ଚଲା ଶିଖିଯାଇଥିଲି ତ । ଦିନ ୩ଟା ବାଜିଲେ ଭିଣୋଇ ବାବୁଙ୍କ ସାଇକେଲ୍ ନେଇ ମୁଁ ପ୍ରତିଦିନ ଯାଉଥିଲି ଲଙ୍ଗଳକଟା । ଗୀର୍ଜା ସହିତ ମୋର ସଂପର୍କ ବଢୁଥିବା ଜାଣି ଭଉଣୀ ଭିଣୋଇ ମୋତେ ଦିନେ କହିଲେ - ଘରୁ ଖବର ଆସିଛି ଶୀଘ୍ର ଗାଆଁକୁ ଯିବାକୁ । ପରଦିନ ସକାଳେ ଭିଣୋଇ ବାବୁ ମୋତେ ସେଇ ପାତିଟ୍ରେନ୍‌ରେ ବସେଇଦେଲେ । ମୁଁ ଗାଆଁକୁ ଚାଲି ଆସିଲି ।

କିଛି ଦିନ ପରେ ଭିଣୋଇ ବାବୁଙ୍କର ବଦଳି ହୋଇଗଲା ରୂପ୍‌ସା ଷ୍ଟେସନକୁ । ତା' କିଛି ବର୍ଷ ପରେ ଖଡ଼୍‌ଗପୁର । ଏହି ଖଡ଼ଗପୁରଠାରେ ହିଁ ସେ ଚାକିରିରୁ ଅବସର ନେଲେ ।



# ଲେଖା ଲେଖି ପ୍ରତି ଆଗ୍ରହ

ବଡ଼ ବାପା ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ମୁଁ ଓ ମୋ ନନା ମାଇନର୍ ପଢୁଥିବା ବେଳେ ଛୁଟିରେ ଘରକୁ ଆସିଲେ ସେ ଆମକୁ ବସାଇ, ଆମ ଆଗରେ ସଂସ୍କୃତ ଶ୍ଳୋକ ଆଉଡ଼ାନ୍ତି ଓ ତା'ର ଅର୍ଥ ପ୍ରାଞ୍ଜଳ ଭାବରେ ଆମକୁ ବୁଝାଇ ଦିଅନ୍ତି ।

ପଢୁଥିବା ରାଧାନାଥ ମଧ୍ୟ ଇଂରାଜୀ ବିଦ୍ୟାଳୟର ନାମ ଦର୍ଶନରୁ ରାଧାନାଥଙ୍କ ବିଷୟରେ କିଛି କିଛି ଜାଣିବାକୁ ପାଇଥିଲି । ଅନେକ ସମୟରେ ମୋ ମନ ମୋତେ ତାଙ୍କରି ଆଡ଼କୁ ଟାଣି ନେଉଥିଲା । ମୋ ନନାଙ୍କର ସାହିତ୍ୟ ପ୍ରତି ଆଗ୍ରହ ଥିଲା । ହାଇସ୍କୁଲ୍‌ରେ ପଢ଼ିବା ବେଳେ ସେ କବିତା ଲେଖା ଆରମ୍ଭ କଲେ । ରାଧାନାଥ ଗ୍ରନ୍ଥାବଳୀ ଖଣ୍ଡିଏ କିଣି ସେ ପାଖରେ ରଖିଥିଲେ ଓ ମଝିରେ ମଝିରେ ମୋତେ ବି ପଢ଼ିବାକୁ ଦେଉଥିଲେ । ସେ ଗ୍ରନ୍ଥାବଳୀଟି ଏବେ ବି ମୋ ପାଖରେ ଅଛି ।

ଆମେ ପଢୁଥିବା ସତ୍ୟାନନ୍ଦ ହାଇସ୍କୁଲଠୁ ପାଖରେ ଥିବା କେଦାରପୁର ଗାଆଁରେ କବିବର ରାଧାନାଥ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସୁନ୍ଦର ନାରାୟଣ ରାୟ ଓ ମାତାଙ୍କ ନାମ ତାରିଣୀ ଦାସୀ । ତାଙ୍କର ୬ ବର୍ଷ ସମୟରେ ମାଆଙ୍କର ମୃତ୍ୟୁ ହେଲା । ଆମରି ବଂଶ ଭଳି ତାଙ୍କ ପୂର୍ବପୁରୁଷ ତାଙ୍କ ଜନ୍ମହେବାର ପ୍ରାୟ ୩୦୦ ବର୍ଷ ପୂର୍ବରୁ ବଙ୍ଗ ଦେଶରୁ ଆସି ଓଡ଼ିଶାରେ ବସତି ସ୍ଥାପନ କରିଥିଲେ । ତାଙ୍କ ବଂଶର ମୂଳପଦବୀ ଥିଲା 'ଦେ' । 'ରାୟ' ହେଲା ପରବର୍ତ୍ତୀ ସମୟରେ । ତାଙ୍କ ବାପା ବାଲେଶ୍ୱରରେ ସରକାରୀ ଚାକିରି କରୁଥିଲେ । ସେ ପାରଶୀ ଭାଷାରେ ସୁପଣ୍ଡିତ ଥିଲେ । ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ସଂସ୍କୃତ ଭାଷାରେ ମଧ୍ୟ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା । ରାଧାନାଥ ପ୍ରଥମେ ବଙ୍ଗଳା ଭାଷାରେ କବିତା ଲେଖିବା ଆରମ୍ଭ କରିଥିଲେ । କିନ୍ତୁ ପରେ ପରେ ଆଧୁନିକ

ଓଡ଼ିଆ କାବ୍ୟ କବିତା ଲେଖି ଓଡ଼ିଆ ଭାଷାକୁ ସମୃଦ୍ଧ କଲେ । ଗ୍ରନ୍ଥାବଳୀରେ ଥିବା ତାଙ୍କ ଜୀବନୀ ପଢ଼ି ସବୁବେଳେ ମୁଁ ତାଙ୍କ ବିଷୟରେ ଅନେକ କଥା ଜାଣିପାରୁଥିଲି ।

ଏହି ସମୟରେ ମୋ ନନା ଆମ ଘରେ ଏକ ପାଠାଗାର କଲେ । ତାର ନାମ ରଖିଲେ ପ୍ରହରାଜ ଲାଇବ୍ରେରି ।" ମୋ ପାଖରେ ଥିବା ରାଧାନାଥ ଗ୍ରନ୍ଥାବଳୀ ସେହି ପାଠାଗାରରେ ନନା ରଖିଥିଲେ ।

ଆମେ ପଢୁଥିବା ସତ୍ୟାନନ୍ଦ ହାଇସ୍କୁଲର ସନ୍ନିକଟରେ ଅବସ୍ଥିତ କେଦାରପୁର ଗାଆଁକୁ ମୁଁ ଓ ନନା ଚାଲିଚାଲି ଯାଇ ରାଧାନାଥ ଜନ୍ମ ହୋଇଥିବା ମାଟିଘରକୁ ଆମେ ଦେଖିଛୁ । ନନା ଯେଉଁ କବିତା ଲେଖୁଥିଲେ, ଲେଖିସାରି ମୋତେ ପଢ଼ିବାକୁ ଦେଉଥିଲେ । ୧୯୪୩ ମସିହାରେ ତାଙ୍କର ମୃତ୍ୟୁ ହୋଇ ଯିବାପରେ ତାଙ୍କର କବିତା ଖାତାକୁ ହାତରେ ଧରି ମୁଁ ମୁଣ୍ଡରେ ମାରୁଥିଲି । ଦିନେ ମୁଁ ବି ଖାତା କଲମ ଧରି କବିତା ଲେଖିବାକୁ ବସିଗଲି । ମୋ ଲେଖା ପ୍ରଥମ କବିତାର ଆରମ୍ଭ ଦୁଇଧାଡ଼ି ହେଲା –

"ଶୁଣ ସାଧୁଜନ ମାନେ ଦେଇ ମନ କର୍ଣ୍ଣ
ଆଖି ବୁଜି ରାମାୟଣ କରିବି ଗାୟନ ।"

ବାଲେଶ୍ୱର କଲେଜ୍‌ରେ ପଢୁଥିବା ବେଳେ ଫକୀରମୋହନଙ୍କ ବିଷୟରେ ଜାଣିବାର ସୁଯୋଗ ପାଇଲି । ଫକୀରମୋହନ ଜନ୍ମ ହୋଇଥିଲେ କଲେଜ ସାମ୍ନାରେ ଥିବା ଗାଆଁ ମଲ୍ଲିକାଶ ପୁରରେ । ତାଙ୍କ ଘର ଓ ତାଙ୍କ ପ୍ରତିଷ୍ଠିତ ଶାନ୍ତିକାନନ୍ କଲେଜଠୁ ପଦବ୍ରଜରେ ଗଲେ ପ୍ରାୟ ୫ ମିନିଟ୍‌ର ରାସ୍ତା । ମୁଁ ପ୍ରାୟ ଶାନ୍ତି କାନନକୁ ଯାଉଥିଲି । ଫକୀର ମୋହନ ନିଜେ ନିର୍ମାଣ କରାଇଥିବା ତାଙ୍କ ପ୍ରତିମୂର୍ତ୍ତି ପାଖରେ ମୁଣ୍ଡ ଲଗାଇ ଜୁହାର ହୋଇ, ସେହି ପାଖରେ ଥିବା ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ପାଖରେ ବସୁଥିଲି ।

ଫକୀରମୋହନ ଥିଲେ ଆଧୁନିକ ଓଡ଼ିଆ ଗଳ୍ପ ଉପନ୍ୟାସର ଜନକ । ଓଡ଼ିଆ ଭାଷାର ଚରମ ଦୁର୍ଗତିବେଳେ, ଯେତେବେଳେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ, ଏହା ବଙ୍ଗଳା ଭାଷାର ଅପଭ୍ରଂଶ ବୋଲି ବାଲେଶ୍ୱର ଜିଲ୍ଲାସ୍କୁଲର ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ତତ୍କାଳୀନ ସରକାରଙ୍କୁ ସ୍କୁଲ ମାନଙ୍କରୁ ଓଡ଼ିଆ ବହି ଉଠାଇ ଦେଇ ବଙ୍ଗଳାବହି ପ୍ରଚଳନର ଆଦେଶ କରାଇ ଦେଇଥିଲେ ।

ସେତିକିବେଳେ ବାଲେଶ୍ୱର ମାଟିରେ ଓଡ଼ିଆ ସାହିତ୍ୟର ତିନି ବରପୁତ୍ର ବ୍ୟାସକବି ଫକୀର ମୋହନ, କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କର ଉଦ୍ୟମ, ତତ୍କାଳୀନ ବାଲେଶ୍ୱରର ଜିଲ୍ଲାପାଳ ଜନ୍‌ବୀସର ଓ କମିସନର ରେଭେନ୍ସା ସାହେବ ପ୍ରମୁଖଙ୍କ ଅକୁଣ୍ଠ ସାହାଯ୍ୟ ଓଡ଼ିଆ ଭାଷାକୁ ପଣ୍ଡ କରିବାର ଉଦ୍ୟମକୁ ପଣ୍ଡ କରିଥିଲା ।

ବାଲେଶ୍ୱର କଲେଜରେ ଅଧ୍ୟୟନ ବେଳେ, ରୀତିମତ କବିତା ଲେଖାରେ ମନୋନିବେଶ କଲି । ସେ ସମୟରେ ମୋର ପ୍ରଥମ କବିତା 'ଅହିଂସା ପଥେ ଗାନ୍ଧିଜୀ' 'ଡଗର' ପତ୍ରିକାର ନାଗବଚା ବିଭାଗରେ ପ୍ରକାଶ ପାଇଥିଲା । ପୁଣି ଅଳ୍ପ ଦିନ ପରେ ଆଉ ଏକ କବିତା 'ନୀରବ ସୈନିକ' ମଧ୍ୟ ଡଗର ନାଗବଚା ବିଭାଗରେ ପ୍ରକାଶ ପାଇଥିଲା । ଏଇ ଯେ କବିତା ମୁଁ ଲେଖିଲି ଓ ତାହା ଏକ ପ୍ରତିଷ୍ଠିତ ପତ୍ରିକାରେ ପ୍ରକାଶ ପାଇବାର ଯେଉଁ ପୁଲକ, ତାହା ଆଜି ବି ମୋ ପାଖରେ ଅଭୁଲା ।



# କଟକ ରେଭେନ୍ସା କଲେଜ

୧୯୪୬ ମସିହାରେ ବାଲେଶ୍ୱର କଲେଜରୁ ଆଇ.ଏ.ପାସ୍ କରି ବଡ଼ବାପାଙ୍କ ଇଚ୍ଛାନୁଯାୟୀ ବି.ଏ.ରେ ସଂସ୍କୃତ ସମ୍ମାନ ନେବାପାଇଁ କଟକ ରେଭେନସା କଲେଜରେ ନାମ ଲେଖାଇବା ପାଇଁ ମୁଁ ଓ ବଡ଼ ବାପା ଗଲୁ । ପୂର୍ବରୁ କଟକ ଦେଖି ନଥିଲି । ସୋରରୁ କଟକ ଟ୍ରେନ୍‌ରେ ଗଲୁ । ସକାଳେ କଟକ ଷ୍ଟେସନ୍‌ରେ ଓହ୍ଲାଇ ପଦବ୍ରଜରେ ଯୋବ୍ରା ଗଲୁ ଓ ମହାନଦୀରେ ଗାଧୋଇଲୁ । ବଡ଼ବାପା ଯୁଆଡ଼େ ଯାଆନ୍ତି ତାଙ୍କ କୋଥଳି ଓ ଖଣ୍ଡେ ଆସନ ସାଙ୍ଗରେ ନେଇ ଯାଆନ୍ତି । ଗାଧୋଇ ସାରି ସେ ପୂଜାରେ ବସିଲେ ଆଉ ମୁଁ... ମହାନଦୀର ପ୍ରଶସ୍ତ ବକ୍ଷକୁ ଚାହିଁ କେତେ କଣ ଭାବି ଯାଉଥିଲି । ସେ ପ୍ରାୟ ଘଣ୍ଟାଏ ସମୟ ପୂଜାରେ ବସିଲେ । ତା'ପରେ ଥଳିରୁ ବାହାର କଲେ ଚୂଡ଼ା, ଚିନି ଓ ଟାଟିଆ । ଦୁଇଟି ଟାଟିଆରେ ଚୁଡ଼ା ରଖି ମହାନଦୀ ପାଣିରେ ଧୋଇ ଆଣିଲେ । ଚିନି ପକାଇ ଗୋଟେ ଟାଟିଆ ମୋ ହାତକୁ ବଢ଼ାଇ ଦେଲେ । ତୃପ୍ତିର ସହିତ ଖାଇ ଭୋକିଲା ପେଟକୁ [illegible] ଓ ମହାନଦୀ ପାଣି ପିଇଲୁ । ତା'ପରେ ସେ ତାଙ୍କ ବଟୁଆ ଖୋଲି ୫/୬ ଖଣ୍ଡ ପାନ ଭାଙ୍ଗିଲେ । ତା'ପରେ ଆମେ ଚାଲିଲୁ ରେଭେନ୍ସା କଲେଜ । ସେତେବେଳେ କଲେଜର ଅଧ୍ୟକ୍ଷ ଥାନ୍ତି ଏସ୍.ରାୟ । ବଡ଼ବାପା ତାଙ୍କ ସହିତ କଥାବାର୍ତ୍ତା କଲେ । କିରାଣିଥିବା ଚନ୍ଦ୍ରଶେଖର ମିଶ୍ରଙ୍କୁ ଅଧ୍ୟକ୍ଷ ଡକାଇ ବଡ଼ ବାପାଙ୍କୁ ଓ ମୋତେ ତାଙ୍କ ସହିତ ପଠାଇଲେ । କଲେଜରେ ମୋ' ନାମ ଲେଖା ହୋଇଗଲା । ତା'ପରେ ଛାତ୍ରାବସ୍ଥାରେ ରହିବା ବ୍ୟବସ୍ଥା । ସେତେବେଳେ କଲେଜ ପରିସରରେ ଦୁଇଟି ଛାତ୍ରାବାସ ଥିଲା, ଯାହା ଆଜି ବି ରହିଅଛି । ତାହା ପୂର୍ବ ଛାତ୍ରାବାସ ଓ ପଶ୍ଚିମ ଛାତ୍ରାବାସ । କଲେଜ ପାଖରେ ଥିବା ତାଳଦଣ୍ଡା କେନାଲର ଅପରପଟେ ଏକ ଭଡ଼ାଘରେ ଛାତ୍ରୀମାନେ ରହୁଥିଲେ । ମୁଁ ରହିଲି ପଶ୍ଚିମ

ଛାତ୍ରାବାସରେ ସେତେବେଳେ ଓଡ଼ିଶାର ପଶ୍ଚିମାଞ୍ଚଳର ବହୁଛାତ୍ର ପୂର୍ବଛାତ୍ରବାସରେ ରହୁଥିଲେ । ମୋ ସମୟର କଲେଜପାଠୀ ଥିବା ଓ ପରେ ଓଡ଼ିଶାର ମୁଖ୍ୟମ ହୋଇଥିବା ଜାନକୀ ବଲ୍ଲଭ ପଟ୍ଟନାୟକ ପଶ୍ଚିମ ଛାତ୍ରାବାସରେ ରହୁଥିଲେ । ସେ ମୋ ଉପର କ୍ଲାସ୍‌ରେ ପଢୁଥିଲେ ଓ ତାଙ୍କର ସଂସ୍କୃତ ସମ୍ମାନ ଥିଲା । ନନ୍ଦିନୀ ଶତପଥୀ ପରବର୍ତ୍ତୀ କାଳରେ ଯେ' ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ, ସେ' ବି ସେ ସମୟରେ ରେଭେନ୍‌ସା କଲେଜର ଛାତ୍ରୀ ଥିଲେ । ସେ ତାଙ୍କର ପିତା ଓଡ଼ିଶାର ବରେଣ୍ୟ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ପିଠାପୁର ଘରେ ରହୁଥିଲେ । ସେ' ମୋ ତଳକ୍ଲାସରେ ପଢୁଥିଲେ। ଅନ୍ୟ ଯେଉଁମାନେ ମୋର ସହପାଠୀ ଓ କଲେଜପାଠୀ ଥିଲେ ଏବଂ ପରବର୍ତ୍ତୀ କାଳରେ, ଜୀବନରେ ପ୍ରତିଷ୍ଠା ଅର୍ଜନ କରିଥିଲେ ସେମାନଙ୍କ ମଧ୍ୟରୁ କେତେଜଣଙ୍କ ନାମ ମୁଁ ଏଠାରେ ଉଲ୍ଲେଖ କରୁଛି । ସେମାନେ ହେଲେ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଗୋପାଳଚନ୍ଦ୍ର ମିଶ୍ର, ଦୁର୍ଗାଚରଣ କୁଅଁର, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ବେଣୁଧର ରାଉତ, ଚତୁର୍ଭୁଜ କର ପ୍ରମୁଖ । ଏମାନେ ସମସ୍ତେ ମୋ ଉପର ଶ୍ରେଣୀରେ ପଢୁଥିଲେ ।

ସହପାଠୀ ଥିଲେ ଦୁର୍ଗାମାଧବ ମିଶ୍ର, ସତୀଶ ଚନ୍ଦ୍ର ମହାନ୍ତି, ଜଗନ୍ନାଥ ପଣ୍ଡା, ହୃଦାନନ୍ଦ ମହାପାତ୍ର, ସୁବ୍ରତ ଯୋଶୀ, ନବକିଶୋର ମହାପାତ୍ର, ଚିନ୍ତାମଣି ବେହେରା, ଦୀପ୍ତି ମହାନ୍ତି, ପ୍ରଭାତ ନଳିନୀ ଦାସ, ତ୍ରିବିକ୍ରମ ପତି, ବିଘ୍ନରାଜ ପଟେଲ୍, ବିଭୁ ପ୍ରସାଦ ଦାସ, କୈଳାସ ନାରାୟଣ ତିଓ୍ୱାରି । ମୋ ତଳଶ୍ରେଣୀରେ ଯେଉଁମାନେ ପଢୁଥିଲେ ସେମାନେ ହେଲେ ନଳିନୀ କାନ୍ତ ପଣ୍ଡା, ସତ୍ୟାନନ୍ଦ ଚମ୍ପତିରାୟ, ଦୁର୍ଗାଚରଣ ପରିଡ଼ା, ମହାପାତ୍ର ନୀଳମଣି ସାହୁ ପ୍ରମୁଖ । ସଂସ୍କୃତ ସମ୍ମାନନେଇ ଯେଉଁମାନେ ମୋ ସହିତ ପଢୁଥିଲେ ସେମାନେ ହେଲେ ତ୍ରିବିକ୍ରମ ପତି, ସୁବ୍ରତ ଯୋଶୀ, ରାଧାମୋହନ ମହାପାତ୍ର ଓ ଦୁର୍ଗାମାଧବ ମିଶ୍ର ।

ରେଭେନ୍‌ସା କଲେଜରୁ ଯୋବ୍ରା ଯିବା ରାସ୍ତାରେ ଭୀମାବରଫ କଳ ପଡ଼େ । ଠିକ୍ ତାହାରି ପରେ ପରେ ଗୋଟାଏ ଏକତାଲା କୋଠା ଘରେ ମୟୁରଭଞ୍ଜ ମେସ୍ ଥିଲା । ସେ ମେସ୍‌ରେ ଚତୁର୍ଭୁଜ କର ପ୍ରମୁଖ ମୟୁରଭଞ୍ଜର ପିଲାମାନେ ରହୁଥିଲେ । ପରେ ଏହି ଚତୁର୍ଭୁଜ କରଙ୍କ ସହିତ ମୋ କକାଙ୍କ ଦ୍ୱିତୀୟ ଝିଅ ରତ୍ନମଣିର ବିବାହ ହୋଇଥିଲା ।

ରେଭେନ୍‌ସା କଲେଜ ସାମନାରେ ଥିଲା ମଦନ ଜଳଖିଆ ଦୋକାନ ଓ ମୂଷା ପାନ ଦୋକାନ । ସେଇ ଦୁଇଟି ଦୋକାନ ଥିଲା ମୋର ଅତି ପ୍ରିୟ । ମୂଷା ପାନଦୋକାନରୁ ମୁଁ ପ୍ରତିଦିନ ପାନ କିଣେ । ପ୍ରତିଦିନ ଯେତେ ପଇସାର ପାନ ନିଏ ସେ ତାକୁ ଗୋଟେ ଖାତାରେ ଲେଖି ରଖେ । ମାସ ଶେଷରେ ମୋ'ଠୁ ପଇସା ନିଏ ।

କଲେଜକୁ ମଝିରେ ମଝିରେ ବୀରେନ୍ ମିତ୍ର, ମନମୋହନ ମିଶ୍ର ପ୍ରଭୃତି ତତ୍‌କାଳୀନ ଯୁବନେତାମାନେ ଆସି ଇଂରେଜ ସରକାର ବିରୁଦ୍ଧରେ ଓଜସ୍ୱିନୀ ଭାଷଣ ଦିଅନ୍ତି । ମନମୋହନ ବାବୁଙ୍କ ଭାଷଣରୁ ଅଗ୍ନିବର୍ଷା ହେଉଥିବା ଭଳି ମନେ ହୁଏ ।

୧୯୪୬ ମସିହାରେ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ରେଭେନ୍‌ସା ମହାବିଦ୍ୟାଳୟକୁ ସ୍ୱାଧୀନ ଘୋଷଣା କରାଯାଇ କଲେଜ ଉପରେ ଉଡୁଥିବା ବ୍ରିଟିଶ୍ ସାମ୍ରାଜ୍ୟର ପତାକା ଇଉନିୟନ୍ ଜେକ୍‌କୁ ତଳକୁ ଖସାଇ ଦିଆଗଲା ଏବଂ ତା' ସ୍ଥାନରେ କଂଗ୍ରେସର ତ୍ରିରଙ୍ଗା ପତାକାକୁ ଉଡ଼ାଇ ଦିଆଗଲା ।

ରେଭେନ୍‌ସା ମହାବିଦ୍ୟାଳୟ ଅନେକ ଛାତ୍ରଛାତ୍ରୀଙ୍କୁ ଭବିଷ୍ୟତର ଦିଗ୍‌ଦର୍ଶନ ଅତୀତରେ ଦେଇଛି, ଆମ ସମୟରେ ଦେଇଛି ଏବଂ ଭବିଷ୍ୟତରେ ମଧ ଦେଉଥିବ । ମୋର ଯେଉଁମାନଙ୍କ କଥା ସ୍ମରଣରେ ଅଛି ଓ ମୁଁ ପୂର୍ବରୁ ଉଲ୍ଲେଖ କରିଛି ସେମାନଙ୍କ ମଧ୍ୟରୁ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ନନ୍ଦିନୀ ଶତପଥୀ କେନ୍ଦ୍ରମନ୍ତ୍ରୀ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ପାରିଥିଲେ । ତ୍ରିବିକ୍ରମ ପତି ଭାରତବର୍ଷରେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ପୁରୀ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ ଏହଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ଆସନ ଅଳଂକୃତ କରିଥିଲେ । ଦୁର୍ଗାମାଧବ ମିଶ୍ର ଆଇ.ପି.ଏସ୍ ହୋଇ ପୋଲିସ୍ ବିଭାଗର ସର୍ବୋଚ୍ଚ ସ୍ଥାନରେ ଅଧିଷ୍ଠିତ ହୋଇଥିଲେ । ବିଭୁ ପ୍ରସାଦ ଦାସ ଲଣ୍ଡନରେ ଅଧ୍ୟାପକ ଥିଲେ ଓ ସେଠାରୁ ଫେରି ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ବିଘ୍ନରାଜ ପଟେଲ୍ ଓ ନଳିନୀ କାନ୍ତ ପଣ୍ଡା ଆଇ.ଏ.ଏସ୍ ହୋଇ ଓଡ଼ିଶାର ମୁଖ୍ୟ ଶାସନ ସଚିବ ହୋଇ ପାରିଥିଲେ । କୈଳାସ ନାରାୟଣ ତିୱାରି, ଗୋପାଳଚନ୍ଦ୍ର ମିଶ୍ର, ବେଣୁଧର ରାଉତ, ଦୁର୍ଗାଚରଣ କୁଅଁର, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଚିନ୍ତାମଣି ବେହେରା, ମହାପାତ୍ର ନୀଳମଣି ସାହୁ ପ୍ରମୁଖ ଅଧ୍ୟାପନା

ସହିତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସତୀଶ ଚନ୍ଦ୍ର ମହାନ୍ତି, ଜଗନ୍ନାଥ ପଣ୍ଡା, ହୃଦାନନ୍ଦ ମହାପାତ୍ର, ସୁବ୍ରତ ଯୋଷୀ, ଦୁର୍ଗାଚରଣ ପରିଡ଼ା ପ୍ରମୁଖ ସରକାରୀ ଚାକିରି କରି ସୁନାମ ଅର୍ଜନ କରିଥିଲେ । ସହପାଠିନୀ ପ୍ରଭାତ ନଳିନୀ ଉତ୍କଳ ବିଶ୍ୱବିଦ୍ୟାଳୟରେ ଇଂରାଜୀ ଅଧ୍ୟାପିକା ଥିଲେ ଓ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ବିଧୁଭୂଷଣ ଦାସଙ୍କୁ ବିବାହ କରିଥିଲେ ।

ସେ ସମୟରେ ରେଭେନ୍ସା କଲେଜରେ ବିଧୁଭୂଷଣ ଦାସ, ରାଧାନାଥ ରଥ, ପ୍ରଫୁଲ୍ଲଚନ୍ଦ୍ର ପତି, କରୁଣାକର କର, ଏସ୍. ସୁନ୍ଦରମ୍, ଭି.ଭି.ଜନ, ରତ୍ନାକର ପତି, ଶ୍ରୀନିବାସ ସାହୁ ପ୍ରମୁଖ ଅଧ୍ୟାପକ ଥିଲେ । ଶ୍ରୀନିବାସ ବାବୁ ଥିଲେ ଆମ ପଶ୍ଚିମ ଛାତ୍ରାବାସର ତତ୍ତ୍ୱାବଧାୟକ । ଛାତ୍ରାବାସର ଅନ୍ତେବାସୀଙ୍କୁ ସେ ଭଲ ଆଖିରେ ଦେଖୁଥିଲେ। ଛାତ୍ରାବାସରେ ଅନେକ ଚାରିଜଣ ପିଲା ରହିବା କୋଠରି ଓ କିଛି ଜଣକିଆ କୋଠରି ଥିଲା । ପ୍ରଥମ ବର୍ଷ ଗୋଟିଏ କୋଠରିରେ ଆମେ ଚାରିଜଣ ମୁଁ, ସତୀଶଚନ୍ଦ୍ର ମହାନ୍ତି, ଜଗନ୍ନାଥ ପଣ୍ଡା, ହୃଦାନନ୍ଦ ମହାପାତ୍ର ରହୁଥିଲୁ । ଦ୍ୱିତୀୟ ବର୍ଷ ଅର୍ଥାତ୍ ୪ର୍ଥ ବାର୍ଷିକ ଶ୍ରେଣୀ ବେଳକୁ ଗୋଟିକିଆ କୋଠରିରେ ରହିଲି । ସେତେବେଳେ ମୋ ବକାଙ୍କ ସାନ ଶାଳକ ଇରମ ଜମିଦାର ରାଧାକାନ୍ତ ପାଢ଼ୀଙ୍କ ସାନଭାଇ ମୁକ୍ତିକାନ୍ତ ପାଢ଼ୀଙ୍କ ଜ୍ୟେଷ୍ଠ ପୁତ୍ର ଅମଳାକାନ୍ତ ପାଢ଼ୀ ଡାକ ନାମ ଟୁଆଁ ଏହି ଛାତ୍ରବାସରେ ରହୁଥିଲେ। ମୋ'ଠୁ ସେ ବୟସରେ ବଡ଼ । ତେଣୁ ମୁଁ ତାଙ୍କୁ ଟୁଆଁ ନନା ବୋଲି ଡାକୁଥିଲି । ଛାତ୍ରାବାସ ବାହାରକୁ ଯେତେବେଳେ ଯାଉ, ଆମେ ଦି'ଜଣ ସାଙ୍ଗ ହୋଇ ଯାଉଥିଲୁ । ସେତେବେଳେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ନାଟକ ଦେଖିବାକୁ ଆମେ ଚାଲି ଚାଲି ଯାଉଥିଲୁ । ନାଟକ ସରିବା ପରେ ପୁଣି ଚାଲି ଚାଲି ଫେରୁଥିଲୁ ।

ଏହି ରେଭେନ୍ସା ମହାବିଦ୍ୟାଳୟ ହିଁ ମୋ ଲେଖାଲେଖି କରିବାର ପ୍ରବୃତ୍ତିକୁ ବହୁଭାବରେ ଉତ୍ସାହ ପ୍ରଦାନ କରିଥିଲା । ସହପାଠୀ ଦୁର୍ଗାମାଧବ ମିଶ୍ର ଓ ମୁଁ ପ୍ରାୟ ପ୍ରତିଯୋଗିତା କରି କବିତା ଲେଖୁଥିଲୁ । ମୁଖ୍ୟତଃ ସେ ସମୟରେ ଆମ ଦୁହିଁଙ୍କ କବିତା ଶଙ୍ଖ ଏବଂ ଚତୁରଙ୍ଗରେ ପ୍ରକାଶ ପାଉଥିଲା । ଏହି ସମୟରେ ନବଭାରତ, ଡଗର, ନବୀନ, ସହକାର ପ୍ରଭୃତି ପତ୍ରିକାରେ ମଧ୍ୟ ମୋ କବିତା ପ୍ରକାଶ ପାଉଥିଲା । ମୋର ପ୍ରଥମ୍ ଗଳ୍ପ "ପାଷାଣୀ" "ଶଙ୍ଖ" ପତ୍ରିକାରେ ପ୍ରକାଶ ପାଇଥିଲା । ମୋ କବିତା ଓ ଦୁର୍ଗାମାଧବଙ୍କ କବିତା ମୁଖ୍ୟତଃ ଥିଲା ରୋମାଣ୍ଟିକ ଧର୍ମୀ ।

ସପ୍ତାହରେ ଥରେ ଦି' ଥର ମୁଁ "କନିକା ପାଠାଗାରକୁ" ନିଶ୍ଚୟ ଯାଉଥିଲି । ପାଠାଗାରରୁ ବହି ଆଣି ସେଇଠି ନିରୋଳାରେ ବସି ପଢ଼େ । ତା'ର ଭିତରେ ବେଳେବେଳେ କବିତା ବି ଲେଖେ । ଏହି ପାଠାଗାର ସାମ୍ନାରେ ଥିବା ଘାସ ପଡ଼ିଆରେ ଯାଇ ବସିବା ଥିଲା ମୋର ଆଉ ଏକ ଅଭ୍ୟାସ ।

କବି ରାଧାମୋହନ ଗଡ଼ନାୟକ ବୟସରେ ଆମଠୁ ଅନେକ ବଡ଼ ହେଲେ ବି, ସେ ସମୟରେ କ୍ରାଏଷ୍ଟ କଲେଜରେ ନାମ ଲେଖାଇ ପଢୁଥିଲେ ଓ ପ୍ରାୟ ପଶ୍ଚିମ ଛାତ୍ରାବାସକୁ ଆସୁଥିଲେ । ସେ ଛନ୍ଦବନ୍ଧ କବିତା ଲେଖୁଥିଲେ । ତାଙ୍କ ସହ ପରିଚୟ ହେବା ପରେ ମୋର କବିତା ଲେଖାର ନିଶାଟା ଆହୁରି ବଢ଼ିଗଲା । ସେତେବେଳେ ମୁଁ ତ ତାଙ୍କରି ପରି ଛନ୍ଦବନ୍ଧ କବିତା ଲେଖୁଥିଲି । ଦୁର୍ଗାମାଧବଙ୍କ କବିତା ବି ଥିଲା ତଦନୁରୂପ ।

ଛାତ୍ରାବାସ ସାମନା ରାସ୍ତାର ଆରପଟେ ରୋଷେଇ ଘର ଓ ତା' ପିଣ୍ଡାରେ ଆସନରେ ବସି ଖାଉଥିଲୁ ଆମେ । ଖାଇବା ପାଇଁ ଥାଳି ତାଟିଆ ନେଇ ଆମେ ଯାଉଥିଲୁ ।

୧୯୪୮ ମସିହାରେ ସଂସ୍କୃତରେ ସମ୍ମାନସହ ବି.ଏ. ପାସ୍ କଲି । ତା'ପରଠୁ ରେଭେନ୍ସା ମହାବିଦ୍ୟାଳୟ ଓ ପଶ୍ଚିମ ଛାତ୍ରାବାସ ଏବଂ ତତ୍ ସହିତ ମଦନ ଜଳଖିଆ ଦୋକାନ ଓ ମୂଷା ପାନ ଦୋକାନ ରହିଗଲା ମୋ ସ୍ମୃତିର ଅନ୍ତରାଳରେ ।



# ରାଧାନାଥ ପାଠାଗାର

ରେଭେନସା କଲେଜରେ ପଢୁଥିବା ବେଳେ ଛୁଟିରେ ମୁଁ ଗାଆଁକୁ ଆସିଲେ ପ୍ରତିଦିନ ସାଇକେଲ୍‌ରେ ସୋର ଯିବା ଥିଲା ମୋର ଦୈନନ୍ଦିନ କାମ । ସୋର ରାଇପୁର ଗାଆଁର ଶ୍ରୀପତି ମହାନ୍ତି ମୋ ନନାଙ୍କର ସହପାଠୀ ଥିଲେ । ରାଉତୁରା ପୁରର ଶରତଚନ୍ଦ୍ର ମହାନ୍ତିଙ୍କ ଘରେ ରହି ସୋରରେ ଅଧ୍ୟୟନ କରିଥିବା ଦୁର୍ଗାଚରଣ ମହାନ୍ତିଙ୍କ ସହିତ ମୋର ଘନିଷ୍ଠତା ଥାଏ । ଆମେ ଅନେକ ସମୟରେ ଆସି ମୋର ସବ୍‌ରେଜିଷ୍ଟ୍ରାର୍ ଅଫିସ୍ ସାମନାରେ ଥିବା ଲମ୍ବା ଚାଳଘରେ ନିରାକାର ପଣ୍ଡାଙ୍କ କବିରାଜ ଔଷଧ ଦୋକାନରେ ବସି ଗପ କରୁ । ସେହି ଚାଳଘର ପିଣ୍ଡାରେ ସବରେଜିଷ୍ଟ୍ରାର ଅଫିସ୍‌ରେ ମୋହରିର କାମ କରୁଥିବା ମୋହରିର ମାନେ ବସି କାମ କରୁଥିଲେ । ଶରତଚନ୍ଦ୍ର ମହାନ୍ତି ସେଇଠି ବସି କାମ କରୁଥିଲେ । ଆମେ ତିନି ବନ୍ଧୁ ଶ୍ରୀପତି, ଦୁର୍ଗାଚରଣ ଓ ମୁଁ କବିବର ରାଧାନାଥଙ୍କ ନାମରେ ପାଠାଗାରଟିଏ ପ୍ରତିଷ୍ଠା କଲେ କେମିତି ହୁଅନ୍ତା, ଏହା ଆଲୋଚନା କରି ନିରାକାର ବାବୁ ଓ ଶରତ ବାବୁଙ୍କ ସହିତ ଆଲୋଚନା କଲୁ । ସେମାନେ ଏ ପ୍ରସ୍ତାବକୁ ଖୁବ୍ ଆଗ୍ରହର ସହିତ ଗ୍ରହଣ କଲେ । ୧୯୪୬ ମସିହା ଅକ୍ଟୋବର ୫ ତାରିଖ ବିଜୟା ଦଶମୀ ସଂଧ୍ୟାରେ ଏକ ସାଧାରଣ ସଭା ଜନାର୍ଦ୍ଦନ କରଙ୍କ ଅଡ଼ଙ୍ଗ ବଜାରସ୍ଥିତ ଗୃହରେ ଅନୁଷ୍ଠିତ ହେଲା । ଉକ୍ତ ସଭାରେ ୩୦ ଜଣ ଉପସ୍ଥିତ ଥିଲେ । ତତ୍କାଳୀନ ବାଲେଶ୍ୱର ଲୋକାଲ୍ ବୋର୍ଡ଼ର ଚେୟାରମେନ୍ କେଦାରପୁର ଗ୍ରାମ ନିବାସୀ ଆଶୁତୋଷ ରାୟ ଏହି ସଭାରେ ଅଧ୍ୟକ୍ଷତା କଲେ । ସେ' ଦିନ ସେହି ସଭାର ସର୍ବସମ୍ମତ ପ୍ରସ୍ତାବ ଅନୁଯାୟୀ "ରାଧାନାଥ ପାଠାଗାର" ପ୍ରତିଷ୍ଠିତ ହେଲା । ମୋର ମନେ ଅଛି ସୋର ବଜାରର ତତ୍କାଳୀନ ଲୁଗା ବ୍ୟବସାୟୀ କେଶବଲାଲ୍ ଟି. ଭୋରା ପାଠାଗାର ପାଇଁ ଦାନ କରିଥିବା ଏକ ପୁରୁଣା କାଠ ଆଲମାରିକୁ ମୁଁ ଓ

ଦୁର୍ଗା ଚରଣ ନିଜ ହାତରେ ବୋହିଆଣି ଏହି ଡାକଘରେ ରଖିଥିଲୁ । ମୋ ନନାଙ୍କ ସ୍ଥାପିତ ପ୍ରହରାଜ ଲାଇବ୍ରେରିରେ ଥିବା ଆନନ୍ଦ ଲହରି ଉପନ୍ୟାସ ମାଳାର ପ୍ରତ୍ୟେକଟି ଖଣ୍ଡ ଓ ବଡ଼ ବାପା ରଖିଥିବା ବହିରୁ କିଛି ଏମିତି ୩୦ ଖଣ୍ଡ ବହି ମୁଁ ପ୍ରଥମେ ଏହି ପାଠାଗାରକୁ ଦାନ କରିଥିଲି ।

ଏହି ପାଠାଗାରର ସୁପରିଚାଳନା ପାଇଁ ନିୟମାବଳୀ ପ୍ରସ୍ତୁତ କରାଯାଇ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ପ୍ରଥମ ପରିଚାଳନା କମିଟୀ ଗଠନ କରାଗଲା ।

ମାଧବାନନ୍ଦ ପାତ୍ର - ସଭାପତି

ଶରତ ଚନ୍ଦ୍ର ମହାନ୍ତି - ସଂପାଦକ

ନିରାକର ପଣ୍ଡା - ଯୁଗ୍ମ ସଂପାଦକ

କେଶବଲାଲ ଟି.ଭୋରା - କୋଷାଧ୍ୟକ୍ଷ

ଯଦୁନାଥ ଦାଶ ମହାପାତ୍ର - ସଭ୍ୟ

ଦୁର୍ଗାଚରଣ ମହାନ୍ତି - ସଭ୍ୟ

ହୀରାଲାଲ୍ ବର୍ଦ୍ଧନ - ସଭ୍ୟ

ସେଖ ଆବାଜ ଅଲୀ - ସଭ୍ୟ

ବ୍ରଜେନ୍ଦ୍ରନାଥ ଦାସ - ସଭ୍ୟ

ଜଗନ୍ନାଥ ମହାପାତ୍ର - ସଭ୍ୟ

ସନ୍ତୋଷ କୁମାର ପରିମାଣିକ - ସଭ୍ୟ

ସେହି ବୈଠକରେ ଉପସ୍ଥିତ ଥିବା ୩୦ ଜଣଙ୍କୁ ସାଧାରଣ ସଭ୍ୟ ଭାବେ ଗ୍ରହଣ କରାଗଲା । ସେ ଦିନ ସଭାରେ ଟ.୭୮ଙ୍କା ସଭ୍ୟଚାନ୍ଦା ଆଦାୟ କରାଯାଇଥିଲା । ଏହି ପରିଚାଳନା କମିଟୀର ପ୍ରଥମ ବୈଠକ ତା ୧.୧୧.୧୯୪୬ ରିଖ ଦିନ ବସିଥିଲା ଓ ଏଥିରେ ପୁସ୍ତକ ସଂଗ୍ରହ ଓ ଆୟବ୍ୟୟ ସଂକ୍ରାନ୍ତୀୟ ବିଷୟମାନ ଆଲୋଚିତ ହୋଇଥିଲା । କମିଟୀର ଦ୍ୱିତୀୟ ବୈଠକ ତା ୧୧.୧୨.୧୯୪୬ ରିଖରେ ବସି କବିବରଙ୍କ ଶ୍ରାଦ୍ଧ ବାର୍ଷିକୀ ପାଳନ କରିବାର ନିଷ୍ପତ୍ତି ନିଆଯାଇଥିଲା । ତା ୫.୪.୧୯୪୭ ରିଖ ଦିନ ପ୍ରଥମଥର ପାଇଁ ପାଠାଗାର ତରଫରୁ କବିବରଙ୍କ ଶ୍ରାଦ୍ଧୋତ୍ସବ ଚୈତ୍ରପୂର୍ଣ୍ଣିମା ଦିନ ପାଳନ କରାଯାଇଥିଲା । ନନ୍ଦ କିଶୋର ଦାସ ଏହି ସ୍ମୃତି ସଭାରେ ପୌରୋହିତ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସୋରରେ ଥିବା ଅନ୍ୟ ଏକ ଅନୁଷ୍ଠାନ ଜଗନ୍ନାଥ କ୍ଲବ୍ ଭାରତବର୍ଷର

ପ୍ରଥମ ସ୍ୱାଧୀନତା ଦିବସ ତା ୧.୮.୧୯୪୭ ରିଖ ଦିନ ରାଧାନାଥ ପାଠାଗାର ସହିତ ସାମିଲ୍ ହୋଇଥିଲା ।

୧୯୪୮ ମସିହାରେ ପାଠାଗାର ପରିଚାଳନା କମିଟୀର ପୁନର୍ଗଠନ କରାଯାଇ ନନ୍ଦକିଶୋର ଦାସଙ୍କୁ ସଭାପତି, ହୀରାଲାଲ୍ ବର୍ଦ୍ଧନଙ୍କୁ ସଂପାଦକ ଶରତଚନ୍ଦ୍ର ମହାନ୍ତିଙ୍କୁ ତତ୍ତ୍ୱାବଧାରକ ଓ କେଶବଲାଲ୍ ଟି. ଭୋରାଙ୍କୁ କୋଷାଧ୍ୟକ୍ଷଭାବେ ନିର୍ବାଚିତ କରାଯାଇଥିଲା । ଏମାନଙ୍କ ବ୍ୟତୀତ ଆହୁରି ୧୬ ଜଣଙ୍କୁ ସଭ୍ୟଭାବେ ନିଆଯାଇଥିଲା । ୧୯୪୯ ମସିହାରେ ଏହି ପାଠାଗାରକୁ Registration of Societies Act ଅନୁଯାୟୀ ରେଜିଷ୍ଟ୍ରିଭୁକ୍ତ କରାଯାଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହା ପୂର୍ବରୁ ଓଡ଼ିଶାରେ ମାତ୍ର ୧୧ଟି ପାଠାଗାର ପଞ୍ଜିକୃତ ହୋଇଥିଲା । ନନ୍ଦକିଶୋର ଦାସ ୧୯୮୬ ମସିହାରେ ମୃତ୍ୟୁବରଣ କଲେ । ତା'ପରଠାରୁ ମୁଁ ଏହାର ସଭାପତି ଦାୟିତ୍ୱ ତୁଲାଉଅଛି । ପର୍ଯ୍ୟାୟକ୍ରମେ ପାଠାଗାରର ସଂପାଦକ ରୂପେ ହୀରାଲାଲ୍ ବର୍ଦ୍ଧନ, ବିଷ୍ଣୁ ପ୍ରସାଦ ମହାପାତ୍ର, ନିରାକାର ପଣ୍ଡା ୧୯୭୬ ମସିହା ପର୍ଯ୍ୟନ୍ତ ଅନୁଷ୍ଠାନର ସଂପାଦକ ଥିଲେ । ୧୯୭୬ ମସିହା ପରଠାରୁ ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ବିଧାୟକ ନୀଳାମ୍ବର ଦାସଙ୍କ ସୁପୁତ୍ର ସୁନ୍ଦର ମୋହନ ଦାସ ଏ ଦାୟିତ୍ୱ ତୁଲାଇ ଆସୁଛନ୍ତି ।

୧୯୫୯ ମସିହା ଚୈତ୍ର ପୂର୍ଣ୍ଣିମାଠାରୁ ରାଧାନାଥଙ୍କ ଶ୍ରାଦ୍ଧବାର୍ଷିକୀ ଅବସରରେ ଚାରିଦନ ବ୍ୟାପୀ ସାଂସ୍କୃତିକ ସମାରୋହ ଅନୁଷ୍ଠିତ ହୋଇ ଆସୁଥିଲା । କିଛିବର୍ଷ ହେଲା ଏହା ତିନିଦିନ ପାଇଁ ହେଉଅଛି । ଏହି ସମାରୋହରେ ଓଡ଼ିଶାର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ବହୁମନ୍ତ୍ରୀ, ହାଇକୋର୍ଟର ପ୍ରଧାନ ବିଚାରପତି, ବହୁ ଜନନାୟକ, ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ, ବାଗ୍ମୀମାନେ ଯୋଗଦେଇ କବିବର ତଥା ଅନ୍ୟାନ୍ୟ ପ୍ରଖ୍ୟାତ କବିଙ୍କର ସ୍ମୃତି ଚାରଣ କରି ଶ୍ରୋତା ଶ୍ରୋତ୍ରୀମାନଙ୍କୁ ମୁଗ୍ଧ କରି ଆସୁଛନ୍ତି । ୧୯୮୪ ମସିହାରେ ଅନୁଷ୍ଠାନର ରଜତ ଜୟନ୍ତୀ ଉତ୍ସବଠାରୁ ଲବ୍ଧପ୍ରତିଷ୍ଠ ସାହିତ୍ୟକଙ୍କୁ ତାଙ୍କର ସାହିତ୍ୟ ସାଧନା ପାଇଁ "କବିବର ରାଧାନାଥ ସମ୍ମାନ ପ୍ରଦାନ କରାଯାଉଛି । ୧୯୮୫ ମସିହାରେ ମୋତେ ଏହି ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ରାଧାନାଥ ପାଠଗାର ଆରମ୍ଭ ହେବାବେଳେ ଏବଂ ପରେ ପରେ ଅନ୍ୟ ଯେଉଁମାନେ ପାଠାଗାର ସହିତ ନିଜକୁ ଜଡ଼ିତ କରିଥିଲେ ସେମାନେ ହେଲେ ହଜାରିଲାଲ୍ ଖଣ୍ଡେଲୱାଲ୍, ଶିଶିରକୁମାର ବେନାର୍ଜୀ, ଜଗନ୍ନାଥ ଦାସ, ନୀଳାମ୍ବର

ଦାସ, ମଧୁସୂଦନ ଦାସ, ଘନଶ୍ୟାମ ଲେଙ୍କା, ଲକ୍ଷ୍ମଣ ଚରଣ ନାଏକ, ବିଷ୍ଣୁ ମୋହନ ପଣ୍ଡା, ନିର୍ମଳ ପ୍ରଭା ମହାପାତ୍ର ପ୍ରମୁଖ । ଶେଷ ତିନିଜଣଙ୍କୁ ଛାଡ଼ି ଅନ୍ୟମାନେ ଆଜି ସଂସାରରେ ନାହାନ୍ତି । ରାଧାନାଥ ପାଠାଗାରର ଇତିହାସରେ ସେମାନେ ଅମ୍ଲାନ ହୋଇ ରହିବେ ।

୧୯୮୪ ମସିହାରେ ରାଧାନାଥ ମେମୋରିଏଲ୍ ଟ୍ରଷ୍ଟ ଗଠନ କରାଯାଇଥିଲା । ତତ୍କାଳୀନ ସମାଜ ସଂପାଦକ, ପୂର୍ବତନ ମନ୍ତ୍ରୀ ଡ. ରାଧାନାଥ ରଥଙ୍କ ପ୍ରଦତ୍ତ ଦଶହଜାର ଟଙ୍କା Fixed Deposite ରେ ରଖାଯାଇଥିଲା । ଏହି ଟ୍ରଷ୍ଟର ସଭାପତି ଥିଲେ ନନ୍ଦ କିଶୋର ଦାସ, କୋଷାଧ୍ୟକ୍ଷ ଡ. ରାଧାନାଥ ରଥ, ବିନୋଦ କାନୁନ୍‌ଗୋ, ଶୋଭା ରାୟ, ବସନ୍ତ ମହାନ୍ତି ଓ ମୁଁ ସଭ୍ୟ ଥିଲୁ । ବସନ୍ତ ମହାନ୍ତି ଟ୍ରଷ୍ଟର ସଂପାଦକ ମଧ୍ୟ ଥିଲେ ।

ଓଡ଼ିଶାର ପାଠାଗାର ଇତିହାସରେ "ରାଧାନାଥ ପାଠାଗାର ଏକ ଆଲୋକ ବର୍ତ୍ତିକା ।



# ଯଥା ରାବଣସ୍ୟ ମନ୍ଦୋଦରୀ

୧୯୪୮ ମସିହାରେ ସଂସ୍କୃତ ସମ୍ମାନ ସହ ବି.ଏ. ପାସ୍ କରିବା ପରେ ଘର ଲୋକେ ଘରକୁ ବୋହୂଟିଏ ଆଣିବା ପାଇଁ ତତ୍ପର ହୋଇ ଉଠିଲେ। ବଡ଼ ବାପାଙ୍କର ଇଚ୍ଛା ବାହାଘରଟା ଶୀଘ୍ର କରେଇ ଦବାକୁ । ପ୍ରଥମେ ଗୋଟିଏ ପ୍ରସ୍ତାବ ଆସିଲା ଖନ୍ତାପଡ଼ା ରେଲ୍‌ଓ୍ୱେ ଷ୍ଟେସନ୍ ପାଖର ଗାଆଁ ନଇଛଣପୁରରୁ । ସେ ଗାଆଁର ଜଣେ ଧନାଢ଼୍ୟବ୍ୟକ୍ତି ବିମଳା ପ୍ରସାଦ ପଣ୍ଡା । ଅନେକ ଜମିବାଡ଼ି ବାଲେଶ୍ୱର ସହର ମୋତିଗଞ୍ଜ ବଜାର ଆର୍ତ୍ତକବିରାଜ ରୋଡ଼ରେ ଏକ କୋଠାଘର । ସେ ବିବାହ କରିଥିଲେ ତାଙ୍କ ଗାଆଁ ନିକଟସ୍ଥ ନହଙ୍ଗାରା ଗାଆଁର ସୁମିତ୍ରା ପଣ୍ଡାଙ୍କୁ । ସୁମିତ୍ରାଙ୍କର ପ୍ରଥମ କିଛି ଗର୍ଭରୁ ପୁତ୍ର ସନ୍ତାନ ଜନ୍ମ ନେଇ ମରି ଯାଉଥିଲେ। ଶେଷ ଦୁଇଟି ସନ୍ତାନ କନ୍ୟା : ଲକ୍ଷ୍ମୀପ୍ରିୟା ଓ ସରସ୍ୱତୀ । ବିମଳା ପ୍ରସାଦ ପୁତ୍ର ସନ୍ତାନ ଆଶାରେ ପ୍ରଥମ ସ୍ତ୍ରୀ ସୁମିତ୍ରାଙ୍କର ଜୀବିତାବସ୍ଥାରେ ମେଦିନୀପୁର ଅଞ୍ଚଳର ଦୀଘା ପାଖ ବାଲିସାହି ଗାଆଁର ଶ୍ରୀ ନିବାସ ପଣ୍ଡାଙ୍କ କନ୍ୟା ଶରତ କୁମାରୀଙ୍କୁ ବିବାହ କରିଥିଲେ।

ଦିନେ ବଡ଼ ମାଆ ମୋତେ କହିଲେ – "ଯଦୁ ! ପଅରଦିନ ଝିଅ ଦେଖିବାକୁ ଖନ୍ତାପଡ଼ା ଯିବୁ । ତୋ ସାଙ୍ଗରେ ଭାସ୍କର ଯିବ ।"

ଭାସ୍କର ଆମ ଭାଇଆରୀ ଘରର ଜଣେ ଯୁବକ । ସେତେବେଳେ ସେ କଲେଜ ଛାତ୍ର ।

ବଡ଼ମାଆଙ୍କର ଏ କଥାରେ ମୁଁ କିଛି ନକହି ଚୁପ୍ ରହିଲି ।

ଭାସ୍କର ମୋଠୁ ବୟସରେ ସାନ ହେଲେ ବି ସଂପର୍କରେ ମୋର ଗୋସେଇଁବାପା ହେବ । ଏ ସଂପର୍କକୁ ଛାଡ଼ି ସେ ସବୁବେଳେ ମୋତେ ତା'ଠୁ ବଡ଼ ବୋଲି ଭାବୁଥିଲା । ଯୋଉଦିନ ବଡ଼ମାଆ ମୋତେ ସେ ମୋ ସାଙ୍ଗରେ

ଯିବ ବୋଲି କହିଥିଲେ, ସେହିଦିନ ସଂଧ୍ୟାବେଳେ ସେ ଆମ ଘରକୁ ଆସି ବଡ଼ମାଆଙ୍କ ସାଙ୍ଗରେ ଫୁସରଫାସର ହୋଇ ମୋତେ ଆସି କହିଲା - "ପଅର ଦିନ ଯିବା । ସୁଯୋଗଟା ଆସୁଚି ଯେତେବେଳେ ତା'କୁ ହାତଛଡ଼ା କରିବା ଠିକ୍ ନୁହେଁ । ମୁଁ ତା' କଥାର କିଛି ଉତ୍ତର ନ ଦେଇ ଚୁପ୍‌ଚାପ୍ ରହିଲି ।

ଯିବା ଦିନ ଆମେ ସାଙ୍ଗରେ ଗଲୁ । କନ୍ୟାପିତାଙ୍କ ଘରେ ପ୍ରାୟ ଦିନ ୧୧ଟା ବେଳେ ପହଞ୍ଚିଲୁ । କନ୍ୟା ଘରେ ଆମ ଗୋଡ଼ ଧୋଇବା ପାଇଁ ବାରିକଟିଏ ବାଲ୍‌ତିରେ ପାଣି, ଲୋଟା ଓ ଗାମୁଛାଟିଏ ଧରି ଜଗି ବସିଥିଲା । ଆମେ ପହଞ୍ଚିବା ମାତ୍ରେ ଆମ ଗୋଡ଼ ଧୋଇ ପୋଛିଦେଲା । ତା'ପରେ ଗୃହକର୍ତ୍ତା ଆମକୁ ଘରର ବଙ୍ଗଳାକୁ ନେଇଗଲେ । ଖଟ ଉପରେ ଆମେ ଯାଇ ବସିଲୁ । ଝିଅକୁ ଦେଖିବା ପାଇଁ ମନ ଛଟପଟ ହେଉଥାଏ । କିନ୍ତୁ ଜୁହାଗଲା ଖାଇ ସାରିବା ପରେ ଝିଅ ଦେଖା । ବଙ୍ଗଳାରେ ମୁଁ ଓ ଭାସ୍କର ବସି ରହିଲୁ । ପାଖରେ ଆଉ କେହି ନଥିଲେ । ଗୋଟାଏ ବେଳକୁ ଖାଇବା ପାଇଁ ଡାକରା । ଆମକୁ ଖୁସି କରିବା ପାଇଁ ବଡ଼ ଚିଙ୍ଗୁଡ଼ି ମାଛର ତରକାରି ହୋଇଥାଏ । ଖାଉଥିବାବେଳେ ତାଙ୍କ ଘରେ ରହୁଥିବା ବିରାଡ଼ିଟେ ଆମ ଖାଇବା ପାଖରେ ଜଗି ବସିଥାଏ । ହଠାତ୍ ବିରାଡ଼ିଟା ମୋ ଥାଳିରୁ ବଡ଼ ଚିଙ୍ଗୁଡ଼ି ମାଛଟାକୁ ତା' ପାଟିରେ କାମୁଡ଼ି ନେଇଗଲା । ପୂଝାରୀ ଟିକିଏ ଦୂରରେ ଠିଆ ହୋଇ ଏହା ଦେଖି ବିରାଡ଼ି ପଛରେ ଗୋଡ଼େଇଲା । ସେମିତି ଗୋଡ଼ାଇବାରେ ଲାଭ କଣ ? ପୂଝାରୀ ଆଉ ଗୋଟେ ଚିଙ୍ଗୁଡ଼ି ମାଛ ଆଣି ମୋତେ ଦେଲା । ଖାଇ ସାରିବା ପରେ ସେଇ ବଙ୍ଗଳା ପାଖ ଗୋଟେ କୋଠରିରେ ଆମ ଶୋଇବା ବ୍ୟବସ୍ଥା ହୋଇଥିଲା । ଶୋଇବାକୁ ଇଚ୍ଛା ନଥିଲେ ବି ଯାଇ ଟିକିଏ ଗଡ଼ପଡ଼ ହେଲୁ । ଘର ଭିତରେ ସମସ୍ତଙ୍କ ଖିଆପିଆ ସରିବାପରେ ଝିଅ ଦେଖା । ବଙ୍ଗଳାରେ ଆମେ ଯାଇ ବସିଲୁ । ଝିଅ ଦି'କପ୍ ଚା ନେଇ ଆସିଲା । ଆମକୁ ଚା ଦେଇ ଜୁହାର ହେଲା ।

ତୁମ ନାଆଁ କଣ, କେତେ ପଢ଼ିଚ, ଏମିତି ଦି ଚାରିଟା ପ୍ରଶ୍ନ ଭାସ୍କର ପଚାରିଲା । ପ୍ରଶ୍ନର ଉତ୍ତର ଦେଇ ଝିଅ ଚାଲିଗଲା । ଆମେ ରାଜି ବୋଲି ଭାସ୍କର ତାଙ୍କୁ କହିଦେଲା । ତା'ପରେ ଆମେ ଗାଆଁକୁ ଫେରିଲୁ ।

୧୯୪୮ ମସିହା ଜୁଲାଇ ମାସ ତା୪ରିଖ ଦିନ ଲକ୍ଷ୍ମୀ ପ୍ରିୟାଙ୍କ ସହିତ ମୋର ବିବାହ ସଂପନ୍ନ ହେଲା । ଖନ୍ତାପଡ଼ାରେ ଥିବା ମାଇନର ସ୍କୁଲରେ ସେ ଦୁଇବର୍ଷ

ତଳେ ମାଇନର୍ ପାସ୍ କରିଥିଲେ । ଖନ୍ତାପଡ଼ା ଓ ତା'ର ଆଖ ପାଖରେ ସେତେବେଳେ ହାଇସ୍କୁଲ୍ ନ ଥିବାରୁ ସେ ଅଧିକ ଶିକ୍ଷା ପାଇବାରୁ ବଂଚିତ ହୋଇଥିଲେ । ବିବାହ ବେଳେ ତାଙ୍କ ବୟସ ଥିଲା ୧୪ ଓ ମୋର ୨୦ ।

ବିବାହ ଖୁବ୍ ଧୁମ୍‌ଧାମ୍‌ରେ ହେଲା । ଢୋଲ ବାଜା ବାଣରୋଷଣିର ଶବ୍ଦରେ ଖନ୍ତାପଡ଼ାର ଆକାଶ ଦୁଲୁକି ଉଠିଥିଲା । ବରଯାତ୍ରୀରେ ୫୦/୬୦ ଲୋକ ଯାଇଥିଲେ। ଖନ୍ତାପଡ଼ା ବଜାରଠାରୁ ସେ ଗାଆଁର ଦୂରତା ସେତେବେଳକାର ପ୍ରାୟ ଏକ ମାଇଲ୍ । ଖନ୍ତାପଡ଼ା ପର୍ଯ୍ୟନ୍ତ ଗାଡ଼ିରେ ଯାଇ ସେଠୁ ଯାଇଥିଲି ପାଲିଙ୍କିରେ ।

ବିବାହ କାର୍ଯ୍ୟ ସରିବାପରେ ଭୋର୍ ବେଳକୁ ଗାଆଁକୁ ଫେରିଲି । ଚତୁର୍ଥୀ ଭୋଜିରେ ଆମ ଘରେ ପ୍ରାୟ ୧୦୦୦ ଲୋକ ଯୋଗ ଦେଇଥିଲେ। ସେମାନଙ୍କ ଭିତରୁ ଅନେକ ଆସିଥିଲେ ଆମ ଜମିଦାରି ଅନ୍ତର୍ଭୁକ୍ତ ଗାଆଁ ମାନଙ୍କରୁ । ପ୍ରତି ଗାଆଁର ମୁଖିଆମାନେ ଅନେକ ପନିପରିବା ଭାର ଆଣିଥିଲେ । ହରିସାଗର ପୋଖରିରୁ ମହଣ ମହଣ ପହଣା ମାଛ ଧରା ହୋଇଥିଲା ।

ବିଭାଘରର ଅଷ୍ଟମ ଦିନ ସ୍ତ୍ରୀ ତାଙ୍କ ବାପ ଘରକୁ ଚାଲି ଯାଇଥିଲେ। ଆଉ ଦି ଦିନପରେ ମୁଁ ବି କଲିକତା ଚାଲି ଯାଇଥିଲି ।

ମୋ ସ୍ତ୍ରୀ ଜଣେ ସୁଗୃହିଣୀ । ଘରର ସବୁକଥା ସେ ବୁଝନ୍ତି । ମୁଁ ରାଜନୀତି, ଲେଖା ଲେଖି କାମରେ ବ୍ୟସ୍ତଥାଇ ଘରକଥା କିଛି ବୁଝେନି । ବର୍ତ୍ତମାନ ବାର୍ଦ୍ଧକ୍ୟରେ ଥାଇ ମଧ ସେ ବଜାର ସଉଦା କରିବାକୁ ଯାଆନ୍ତି । ୪ ପୁଅ ୩ ଝିଅଙ୍କୁ ଶିକ୍ଷିତ କରାଇବାରେ ସେ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ। ଏବେ ସେ ଆମ ଏକାମ୍ରବିହାର ଲେଡ଼ିଜ କ୍ଲବର ସଭାନେତ୍ରୀ ଓ ସମସ୍ତଙ୍କର ନାନୀ ।



# ସେ' ଦିନର କଲିକତା ଆଜିର କୋଲ୍‌କତା

ସଂସ୍କୃତରେ ସମ୍ମାନ ସହ ବି.ଏ. ପାସ୍ କରିଥିଲେ ମଧ୍ୟ ମୁଁ ଚାହିଁଲି· ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପଢ଼ିବି । ବଡ଼ବାପା ଏଥିରେ ରାଜି ହେଲେ । ହେଲେ ଓଡ଼ିଶାରେ ସେତେବେଳେ ସ୍ନାତକୋତ୍ତର ଶିକ୍ଷାରେ ଦର୍ଶନ ନଥିଲା । ତେଣୁ ବଡ଼ ବାପା ମୋତେ ସାଥିରେ ନେଇ କଲିକତା ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ଦେଲେ ମୋ ବିବାହ ପୂର୍ବରୁ । ସ୍ନାତକୋତ୍ତର ପିଲାମାନେ ଅନତିଦୂରରେ କେଶବସେନ୍ ଷ୍ଟ୍ରୀଟ୍‌ରେ ଥିବା ଏକ ମେସ୍‌ରେ ରହୁଥିଲେ। ବିଶ୍ୱବିଦ୍ୟାଳୟ ହତାରେ ଆଇନ୍ ପଢୁଥିବା ଛାତ୍ରମାନଙ୍କ ପାଇଁ ପାଞ୍ଚତାଲା ବିଶିଷ୍ଟ ଏକ ଛାତ୍ରାବାସ ଥିଲା । ନାମ ତା'ର ହାଡ଼ିଞ୍ଜ୍ ହଷ୍ଟେଲ୍ । ଏହିଠାରେ ରହିବାର ସୁଯୋଗ ନେବାପାଇଁ ବହୁଛାତ୍ର ଏମ୍.ଏ. ସହିତ ଆଇନ୍ କଲେଜରେ ମଧ୍ୟ ନାମ ଲେଖାଉଥିଲେ। ମୁଁ ବି ତାହା ହିଁ କଲି ଓ ହାଡ଼ିଞ୍ଜ ହଷ୍ଟେଲ୍‌ରେ ରହିଲି । ଏଠାରେ ପ୍ରାୟ ୫୦୦ ଛାତ୍ର ରହୁଥିଲେ ।

ଏହି ହଷ୍ଟେଲ୍‌କୁ କୁହାଯାଉଥିଲା "ଜାମାଇବାବୁ ହଷ୍ଟେଲ" । କନ୍ୟା ପିତାମାନେ ଏଇ ହଷ୍ଟେଲ୍‌କୁ ଆସୁଥିଲେ ଜାମାତା ସନ୍ଧାନରେ । ଏକ ସଙ୍ଗେ ଆଇନ୍ ଓ ଏମ୍.ଏ. ପଢ଼ିବାରୁ ସୁଯୋଗ ଦେବାପାଇଁ ଆଇନ୍ ପଢ଼ା ସକାଳ ଓଳି ଓ ଉପର ଓଳି ହେଉଥିଲା । ଏଠାରେ ଏମ୍.ଏ. ସହିତ ଯେଉଁମାନେ ଆଇନ୍ ପଢୁଥିଲେ ସେମାନେ ସକାଳେ ୩ ଘଣ୍ଟା ଓ ଉପର ଓଳି ୫ଟାରୁ ୮ଟା ପର୍ଯ୍ୟନ୍ତ ଆଇନ୍ ପଢୁଥିଲେ । ଦିନ ୧୧ଟାରୁ ୪ଟା ପର୍ଯ୍ୟନ୍ତ ଏମ୍.ଏ. କ୍ଲାସ୍ ହେଉଥିଲା । ଏଠାରେ ଆଇନ ପଢ଼ା ଥିଲା ତିନିବର୍ଷ ।

ଭାରତବର୍ଷର ବିଭିନ୍ନ ଅଞ୍ଚଳ ଏବଂ ଭାରତ ବାହାରୁ ମଧ୍ୟ ଛାତ୍ରମାନେ ଆସି ଏଠାରେ ଆଇନ୍ ଅଧ୍ୟୟନ କରୁଥିଲେ ଓ ହାଡ଼ିଞ୍ଜ ହଷ୍ଟେଲ୍‌ରେ ରହୁଥିଲେ । ମୁଁ ପଢୁଥିବାବେଳେ ଶ୍ରୀଲଙ୍କା, ଚୀନ୍, ଜାପାନ, ବ୍ରହ୍ମଦେଶ(ବର୍ତ୍ତମାନ ମିଆଁମାର)

ପ୍ରଭୃତି ଦେଶର କିଛି ଛାତ୍ର ଏହି ଛାତ୍ରାବାସରେ ରହୁଥିଲେ । ପ୍ରଥମ ବର୍ଷର ଛାତ୍ରମାନେ ୫ ଜଣିଆ କୋଠରିରେ ଓ ଦ୍ୱିତୀୟ, ତୃତୀୟ ବର୍ଷର ଛାତ୍ରମାନେ ଜଣକିଆ କୋଠରିରେ ରହୁଥିଲେ। ସେତେବେଳେ ୩ ଜଣ ଓଡ଼ିଆ ଛାତ୍ର ଜୀତେନ୍ଦ୍ରନାଥ ମହାନ୍ତି, ରେବତୀକାନ୍ତ ସାହାଣି ଓ ମୁଁ ଏହି ଛାତ୍ରାବାସରେ ରହୁଥିଲୁ । ପରେ ଅମଳାକାନ୍ତ ପାଢ଼ୀ (ଟୁଆଁନନା) ଆସି ମଧ୍ୟ ଏଠାରେ ରହିଲେ। ମୋର ପ୍ରଥମ ବର୍ଷରେ ଆମେ ୫ ଜଣ ଗୋଟିଏ କୋଠରିରେ ରହୁଥିଲୁ । ଏ କୋଠରିରେ ମୋ ବ୍ୟତୀତ ଅନ୍ୟ ଯେଉଁ ଚାରିଜଣ ରହୁଥିଲେ ସେମାନେ ହେଲେ - ଅସ୍ମଜ ବସୁ (ପୂର୍ବବଙ୍ଗ), ହରିନାରାୟଣ ସିହ୍ନା (ବିହାର), ସତ୍ୟେନ୍ ମୈତ୍ର (ଆସାମ) ଓ ରେବତୀକାନ୍ତ ସାହାଣି (ଓଡ଼ିଶା) । ପାଖ କୋଠରିରେ ଆମେ ରହୁଥିବା ୫ ଜଣଙ୍କ ଭିତରେ ଅସ୍ମଜବସୁ ଥିଲେ ଆମଠାରୁ ବୟସ୍କ ଓ ଆମର ଅଭିଭାବକ ଭଳି । ସେ ଦୁଇଟି ବିଷୟରେ ଏମ୍.ଏ. ପାସ୍ କରିସାରି ଆଇନ୍ ଅଧ୍ୟୟନ କରୁଥିଲେ ଓ କୌଣସି ଏକ ସଂସ୍ଥାରେ ଚାକିରି ମଧ୍ୟ କରୁଥିଲେ। ଦିନସାରା ସେ ବାହାରକୁ ଯାଆନ୍ତି ଓ ଉପରଓଳି ଆଇନ୍ କ୍ଲାସରେ ଯୋଗ ଦିଅନ୍ତି ।

ରେବତୀ ଆଉ ମୁଁ ଏକା ସାଙ୍ଗରେ ଖାଇବାକୁ ଯାଉ । ଛାତ୍ରାବାସର ସବୁ ଚାକର ପୂଝାରୀ ଓଡ଼ିଆ ଥିଲେ । ଦିନେ ନଟବର ବୋଲି ଜଣେ ପୂଝାରୀ ଆମକୁ ଭାତ ଡାଲି ତରକାରି ପରଷି ଦେଇଗଲାପରେ ମୁଁ ପୁଣି ତାକୁ ବଡ଼ ପାଟିରେ ଡାକି କହିଲି – "ଏ ନଟବର; ଆଉ ଟିକିଏ ତରକାରି ଆଣ ।" ସେ ଚଟ୍ଟରେ ଚଟ୍ଟିଏ ତରକାରି ଆଣି ଦେଲା ଓ କହିଲା - "ବାବୁ; ଏ ଖାନେ ଓଡ଼ିଆ ତେ କଥା ବଲ୍‌ବେନ୍ ନା । ଯା' ବଲ୍ ବେନ୍ ବାଂଲାଏ ବଲ୍‌ବେନ୍ ।"

ତା' କଥା ଶୁଣି ମୁଁ ଆଉ ରେବତୀ ଆଶ୍ଚର୍ଯ୍ୟ ହେଲୁ । ସେହିଦିନ ରାତିରେ କୋଠରିରେ ବସି ଆମେ ନିଷ୍ପତ୍ତି କଲୁ କଲିକତାରେ ପଢୁଥିବାଯାକେ ଆମେ ଆଉ ବଙ୍ଗଳା କହିବୁ ନାହିଁ ଓ ହିନ୍ଦୀରେ କଥାବାର୍ତ୍ତା କରିବୁ । ଅସ୍ମଜ ବସୁ ଓ ଆମ କୋଠରିର ଅନ୍ୟମାନେ ବି ଏଇ ନିଷ୍ପତ୍ତିରେ ସମ୍ମତ ହେଲେ । ଯା' ପରଠୁ କଲଇକତାରେ ହିନ୍ଦୀ ଥିଲା ଆମର କଥିତ ଭାଷା । ଆମେ ରହୁଥିବା ତାଲାରେ ଶ୍ରୀଲଙ୍କାର ଜଣେ ବୌଦ୍ଧସନ୍ନ୍ୟାସୀ ରହୁଥିଲେ । ତାଙ୍କ ନାମ ଥିଲା ପାନ୍ନା ତିସା ଥେରା । ସେ ଆଇନ୍ ମହାବିଦ୍ୟାଳୟର ଦ୍ୱିତୀୟ ବର୍ଷର ଛାତ୍ର ଥିଲେ। ତାଙ୍କୁ ଆମେ ଗୁରୁଭଳି ଭକ୍ତି କରୁଥିଲୁ ।

ବିଶ୍ୱବିଦ୍ୟାଳୟ ସାମ୍ନାରାସ୍ତାର ନାମ କଲେଜଷ୍ଟ୍ରୀଟ୍ ଓ ତା'ର ଅପର ପାର୍ଶ୍ୱରେ ଗୋଲ୍‌ଦୀଘି ପାର୍କ । ହାଡ଼ିଞ୍ଜ ହଷ୍ଟେଲ୍ ସାମ୍ନା ରାସ୍ତାର ନାମ କୋଲୁଟୋଲା ଷ୍ଟ୍ରୀଟ୍ । ଏହି ଷ୍ଟ୍ରୀଟ୍‌ର ପରପାଖରେ କଲିକତା ମେଡ଼ିକାଲ୍ କଲେଜ । ଆମେ କେତେବେଳେ ସଂଧ୍ୟା ସମୟରେ ଗୋଲ୍‌ଦୀଘି ପାର୍କରେ ବା ଆଉ କେତେବେଳେ ମେଡ଼ିକାଲ କଲେଜର ବିସ୍ତୃତ ହତାର ଘାସ ଉପରେ ଯାଇ ବସୁ । ବିଶ୍ୱବିଦ୍ୟାଳୟ ଉତ୍ତର ପାଖ ପାଚେରିକୁ ଲାଗି ପ୍ରେସିଡେନ୍‌ସୀ କଲେଜ ଓ କଲେଜର ଛାତ୍ରାବାସ ହିନ୍ଦୁ ହଷ୍ଟେଲ୍ ।

କଲେଜ୍‌ଷ୍ଟ୍ରୀଟ୍‌ରେ ମେଡ଼ିକାଲ କଲେଜର ମୁଖ୍ୟ ଫାଟକ ସାମନାରେ ଭଦ୍ରକ ଅଞ୍ଚଳର ଜଣେ ଲୋକଙ୍କର ଖିଲପାନ ଦୋକାନଟିଏ ଥିଲା । ଦୋକାନ ମାଲିକଙ୍କର ବୟସ ୫୦ରୁ ଉର୍ଦ୍ଧ୍ୱ ହେବ । ସେ ଥିଲେ ସବୁ ଗରାଖଙ୍କର ଶ୍ୟାମନନା । ମୁଁ ସେ ଦୋକାନକୁ ଯାଇ ପାନ କିଣି ଖାଉଥିଲି । ବେଳେବେଳେ କୌଣସି ବଂଧୁ ବି ମୋ ସହିତ ଯାଆନ୍ତି । ଏହିଭଳି କିଛି ବଂଧୁ ଯେଉଁମାନଙ୍କର ପାନଖିଆ ଅଭ୍ୟାସ ନଥିଲା, ସେମାନେ ମୋ' ସହିତ ଯାଇ ପାନଖାଇବା ଅଭ୍ୟାସ କରିନେଇଥିଲେ ।

ହଷ୍ଟେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ ସାଧନ ଚନ୍ଦ୍ର ରାୟ ଚୌଧୁରୀ । ସେ ହଷ୍ଟେଲ୍ କୋଠାର ଗୋଟିଏ ପାର୍ଶ୍ୱରେ ପରିବାର ସହ ରହୁଥିଲେ ; ସେ ଥିଲେ ଭାରି ଅମାୟିକ । ତାଙ୍କର ପରିଧାନ ଥିଲା ଧୋତି ପଞ୍ଜାବି । ଏହି ପୋଷାକରେ ଆସି ସେ ଆଇନ୍ ଶ୍ରେଣୀରେ ଆମକୁ ପାଠ ପଢ଼ାନ୍ତି ।

ସେତେବେଳେ କଲିକତାର ବିଭିନ୍ନ ଶିକ୍ଷାନୁଷ୍ଠାନରେ ଆହୁରି କିଛି ଓଡ଼ିଆ ଛାତ୍ର ଅଧ୍ୟୟନ କରୁଥିଲେ । ଓଡ଼ିଆ ଛାତ୍ରମାନଙ୍କୁ ଏକାଠି କରି "କଲିକତା ଉତ୍କଳ ଛାତ୍ର ସଂଘ" ଗଠନ କରିଥିଲୁ । ଏହାର ପ୍ରଥମ ସଭାପତି ଥିଲି ମୁଁ । ସେତେବେଳେ ଡାକ୍ତରୀ ପଢୁଥିବା କ୍ଷେତ୍ରବାସୀ ତ୍ରିପାଠୀ ଥିଲେ ଏହାର ଉପସଭାପତି ଓ ସଂପାଦକ ଥିଲେ ବିଶ୍ୱକେଶ ତ୍ରିପାଠୀ ଯେ' ପରେ ଆଇ.ପି.ଏସ୍ ହୋଇଥିଲେ ଓ ଜ୍ୟେଷ୍ଠ ଭ୍ରାତା ପ୍ରତିମ ଗଙ୍ଗାଧର ମହାପାତ୍ରଙ୍କର ଜାମାତା ହୋଇଥିଲେ । ବିଶ୍ୱକେଶଙ୍କର ଜ୍ୟେଷ୍ଠ ଭ୍ରାତା ବ୍ୟୋମକେଶ ତ୍ରିପାଠୀ ଓଡ଼ିଶା ନାଟ୍ୟ ଜଗତରେ ଏକ ଅବିସ୍ମରଣୀୟ ପ୍ରତିଭା । ପରବର୍ତ୍ତୀ କାଳରେ ତାଙ୍କ ସହିତ ହୋଇଥିଲା ମୋର ନିବିଡ଼ ବଂଧୁତ୍ୱ ।

ହଷ୍ଟେଲ୍‌ରେ ରହୁନଥିବା ଅନ୍ୟ ଜଣେ ଛାତ୍ର ବିଶ୍ୱନାଥ ସରକାରଙ୍କ ସହିତ ମଧ୍ୟ ମୋର ବଂଧୁତ୍ୱ ବଢ଼ି ଉଠୁଥିଲା । ତାଙ୍କ ଘର ଉଲ୍‌ବେଡ଼ିଆ । ହାଓଡ଼ା

ପହଞ୍ଚିବାର କିଛି ବାଟ ପୂର୍ବରୁ ଉଲ୍‌ବେଡ଼ିଆ ରେଳଷ୍ଟେସନ ପଡ଼େ । ବିଶ୍ୱନାଥ ପ୍ରତିଦିନ ଲୋକାଲ ଟ୍ରେନ୍‌ରେ ଆସନ୍ତି ଓ ଯାଆନ୍ତି । ମୁଁ ବି କେତେଥର ତାଙ୍କ ଘରକୁ ଯାଇଛି ଓ ମଧ୍ୟାହ୍ନ ଭୋଜନ କରିଛି । ବିଶ୍ୱନାଥଙ୍କ ମାଆ ଭାରି ସ୍ନେହୀ ଓ ମେଳାପୀ । ତାଙ୍କ ଘରକୁ ଗଲେ ହାଡ଼ିଞ୍ଜ ହଷ୍ଟେଲ୍‌ରେ ହୋଇଥିବା ନିଷ୍ପତ୍ତିର ବିରୁଦ୍ଧାଚରଣ କରି ବଙ୍ଗଳା ଭାଷାରେ ହିଁ କଥାବାର୍ତ୍ତା କରେ ।

ସେ ସମୟରେ ଆଉ ଜଣେ ଓଡ଼ିଆ ଛାତ୍ର ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ନାଆଁ ତାଙ୍କର ଯତୀନ୍ଦ୍ରନାଥ ସାମଲ୍ । ବିଶ୍ୱବିଦ୍ୟାଳୟରେ ପଢୁଥିବା ଜଣେ ମୁସଲମାନ ଛାତ୍ରୀଙ୍କୁ ପ୍ରେମ ବିବାହ କରିଥିଲେ । ଯତୀନ୍ଦ୍ରବାବୁ ଆଇ.ପି. ଏସ୍ ହୋଇ ଓଡ଼ିଶାରେ ଚାକିରିରେ ଥିଲେ । ନନ୍ଦିନୀ ଶତପଥୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଚାକିରି ହରାଇଥିଲେ । ପରେ ଏକ କାର୍ ଦୁର୍ଘଟଣାରେ ସେ ମୃତ୍ୟୁ ବରଣ କରିଥିଲେ ।



# ଅକାଳ ଚଡ଼କ

କଲିକତାରେ ପଢୁଥିବାର ପ୍ରଥମ ବର୍ଷରେ ହଠାତ୍ ଦିନେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିନ୍ତାମଣି ଆଚାର୍ଯ୍ୟଙ୍କଠାରୁ ଏକ ପତ୍ର ପାଇଲି । ସେତେବେଳେ ବ୍ରହ୍ମପୁରର ମହୁରି ରାଜା କୃପାସିନ୍ଧୁ ନରେନ୍ଦ୍ର ଦେବଙ୍କ ସଂପାଦିତ ସାପ୍ତାହିକ "ନବୀନ" ପତ୍ରିକାରେ ପ୍ରକାଶିତ ମୋର ଏକ କବିତା ଅଶ୍ଳୀଳ ଏବଂ ସେଥିପାଇଁ ମୋର ବି.ଏ. (ଅନର୍ସ) ଡିଗ୍ରୀ କାହିଁକି ପ୍ରତ୍ୟାହାର କରାନଯିବ, ସେଥିପାଇଁ କୁଳପତି ମୋତେ କାରଣ ଦର୍ଶାଅ ନୋଟିସ୍ ପଠାଇଥିଲେ ।

ଚିଠିଟି ପାଇ ମୋ ଅକଲ ଗୁଡ଼ୁମ । ଡିଗ୍ରୀଟା ଯଦି ପ୍ରତ୍ୟାହୃତ ହୋଇଯାଏ ମୋ ଅବସ୍ଥା କଣ ହେବ ? ବଡ଼ବାପା ଓ ଶ୍ୱଶୁରଙ୍କର ମୋ ବିଷୟରେ କି ଧାରଣା ହେବ ? କଣ କରିବି ଏଇ ଚିନ୍ତା ମୋ ମୁଣ୍ଡକୁ ଘାରୁଥାଏ । ମୋ ସହପାଠୀ ଓ ସେତେବେଳେ ଏଇ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. ପଢୁଥିବା ବଂଧୁ ଚିନ୍ତାମଣି ବେହେରା ରହୁଥିବା ମେସ୍‌ରେ ଯାଇ ପହଞ୍ଚିଲି । ତାଙ୍କୁ ସବୁକଥା କହି କୁଳପତିଙ୍କ ଚିଠି ଓ ପ୍ରକାଶିତ କବିତାଟା ଦେଖାଇଲି । ସେ ସାଙ୍ଗେ ସାଙ୍ଗେ ମୋତେ ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ମୋ ବଡ଼ବାପାଙ୍କର ଜଣାଶୁଣା ପଣ୍ଡିତ ବିନାୟକ ମିଶ୍ରଙ୍କ ପାଖକୁ ନେଇଗଲେ । ମୁଁ ପଣ୍ଡିତ ମହାଶୟଙ୍କୁ ମୋ' ପରିଚୟ ଦେଇ କୁଳପତିଙ୍କ ଚିଠି ଓ "ନବୀନ" ରେ ପ୍ରକାଶ ପାଇଥିବା କବିତାଟି ଦେଲି । ସେ ଦୁଇଟିକୁ ପଢ଼ି କହିଲେ - "ମୁଁ ଉତ୍ତର ଲେଖିଦେଇଥିବି । କାଲି ଆସି ନେଇଯିବ ।" ଆମେ ଚାଲି ଆସିଲୁ ।

ପରଦିନ ଗଲୁ । ସେ ଉତ୍ତରଟି ଲେଖି ଦେଇଥିଲେ । ଦେଖିଲୁ ସେ ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ କବିତାରୁ ଅନେକ ଉଦ୍ଧୃତ ଦେଇ ଲେଖି ଦେଇଥିଲେ ଯେ', ଯଦି ଉଦ୍ଧୃତ ପଂକ୍ତିଗୁଡ଼ିକ ଅଶ୍ଳୀଳ ହୋଇ ନଥାଏ, ମୋର ଏ କବିତାର ପଂକ୍ତି ମଧ୍ୟ

ଅଶ୍ଳୀଳ ନୁହେଁ । ପୁନଶ୍ଚ ଏହା ଅଶ୍ଳୀଳ କି ନୁହେ ତାହାର ବିଚାର କରିବା ପାଇଁ ତିନି ଜଣ ସାହିତ୍ୟ ସମାଲୋଚକ (ତିନିଜଣଙ୍କର ନାମ ମଧ୍ୟ ଦିଆଗଲା, ଯେଉଁଥିରେ ପଣ୍ଡିତ ବିନାୟକ ମିଶ୍ରଙ୍କର ନାମ ମଧ୍ୟ ରଖାଯାଇଥିଲା) ଙ୍କୁ ନେଇ ଏକ ବିଚାରକ ମଣ୍ଡଳୀ ଗଠନ କରିଦିଅନ୍ତୁ । ସେମାନେ ଯଦି ଏହା ଅଶ୍ଳୀଳ ବୋଲି କହିବେ ମୁଁ ମାନିନେବି ଓ ଆପଣ ସେଥିପାଇଁ ଯେଉଁ ଦଣ୍ଡ ଦେବେ ତାହା ମୁଁ ମୁଣ୍ଡ ପାତି ଗ୍ରହଣ କରିନେବି ।

ଏ ଚିଠିଟି ରେଜିଷ୍ଟ୍ରି ଡାକଯୋଗେ କୁଳପତିଙ୍କ ପାଖକୁ ପଠାଇ ଦିଆଗଲା । ବାସ୍, ସେ ଚିଠିର ଉତ୍ତର ଆଉ କିଛି ଫେରିଲା ନାହିଁ କି କୁଳପତିଙ୍କଠାରୁ ଆଉ କିଛି ନିର୍ଦ୍ଦେଶ ଆସିଲା ନାହିଁ ।

ଏହାର କିଛି ଦିନ ପରେ ମୁଁ ଗାଆଁକୁ ଗଲି । ବଡ଼ ବାପା କହିଲେ- "କିଛି ଦିନ ଆଗରୁ ବିଶ୍ୱବିଦ୍ୟାଳୟରୁ ତୋ ନାଆଁରେ ଗୋଟେ ଚିଠି ଆସିଥିଲା । ମୁଁ ତାକୁ ତୋ' ଠିକଣାରେ ପଠେଇ ଦେଇଥିଲି । ପାଇଥିଲୁ ତ ?"

କହିଲି - "ହଁ" ।

ତା'ପରେ ତାଙ୍କର ପ୍ରଶ୍ନ - "ସେ'ଟା କି ଚିଠି ଥିଲା କିରେ ?"

ତାଙ୍କର ଏ ପ୍ରଶ୍ନରେ ମୁଁ ଥମକି ଗଲି । ସେ ମୋ ମୁହଁକୁ ଚାହିଁ ରହିଲେ । ମୁଁ ବାଧ୍ୟ ହୋଇ ତାଙ୍କୁ ସବୁକଥା କହିଲି ଓ କୁଳପତିଙ୍କ ଚିଠିର ଉତ୍ତରଟା ତାଙ୍କୁ ଦେଖାଇଲି । ସେ ପଢ଼ିଲେ ଓ ତୁରନ୍ତ ଯାଇ କୁଳପତିଙ୍କୁ ଦେଖା କରିବା ପାଇଁ ପରାମର୍ଶ ଦେଲେ ।

ମୁଁ ପରଦିନ ଗଲି ଓ ତାଙ୍କୁ ସାକ୍ଷାତ କରିବା ପାଇଁ ମୋ ନାଆଁ ଲେଖି ତାଙ୍କ ପାଖକୁ ପଠାଇଲି । ଦଶ ମିନିଟ୍ ଅପେକ୍ଷା କରିବା ପରେ ସେ ମୋତେ ଡାକିଲେ । ମୁଁ ଯାଇ ତାଙ୍କୁ ନମସ୍କାର କରି ଠିଆ ହେଲି । ସେ ମୋତେ ଚାହିଁ ପଚାରିଲେ - ତୁମ ବାପାଙ୍କ ନାଆଁ କଣ ?"

ମୁଁ ଭୟାର୍ତ୍ତକଂଠରେ କହିଲି - ମୋ' ବଡ଼ବାପା ଶ୍ୟାମସୁନ୍ଦରଙ୍କ ନାଆଁ ।

ବଡ଼ବାପାଙ୍କ ନାଆଁ ଶୁଣି ସେ କହିଲେ- "ଶ୍ୟାମସୁନ୍ଦର ଜଣେ ପଣ୍ଡିତ ଲୋକ । ତାଙ୍କର ପୁଅ ହୋଇ ତୁମେ ଏମିତି ଅଶ୍ଳୀଳ କବିତା ଲେଖୁଛ ? ଆଉ ଏମିତି କବିତା ଲେଖିବନି । ଯାଅ ।"

ପୁନର୍ବାର ନମସ୍କାର କରି ଚାଲି ଆସିଲି ।

ମନରେ ଦ୍ୱନ୍ଦ୍ୱ । ଲେଖିବାଟା ମୋର ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ସେତେବେଳେ ଲେଖାରେ ଯୁବସୁଲଭ ଚପଳତା ହିଁ ଆତ୍ମ ପ୍ରକାଶ କରୁଥିଲା ।

କଲିକତା ଫେରିଲି । ଚିନ୍ତାଗ୍ରସ୍ତ ମନ । ୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ଆମ ଗାଆଁ ପାଖ ତୁଡ଼ିଗଡ଼ିଆ ଅଞ୍ଚଳରେ ପୋଲିସ୍‌ର ଗୁଳିମାଡ଼ରେ ରଘୁବେହେରା ଓ ଅନ୍ୟ ଦୁଇଜଣ ସହିଦ ହୋଇଥିଲେ। ସେ ଆନ୍ଦୋଳନର ମୁଖ୍ୟ ପୁରୋଧା ଥିଲେ ବୈଦ୍ୟନାଥ ରାଉତ । ସେ ପରବର୍ତ୍ତୀ କାଳରେ ବାଲେଶ୍ୱର ଲୋକାଲ୍ ବୋର୍ଡ଼ର ଭାଇସ୍ ଚେୟାରମ୍ୟାନ ହୋଇଥିଲେ। ସେହି ତୁଡ଼ଗଡ଼ିଆ ଗୁଳିକାଣ୍ଡ ଉପରେ "ରକ୍ତମୁଖୀ" ନାମକ ଛୋଟ କବିତା ବହିଟିଏ ଲେଖିଲି । ୧୯୫୦ ମସିହାରେ ସେହି ବହିଟି କଲିକତାରୁ ପ୍ରକାଶ ପାଇଲା । ଏହାର ପ୍ରକାଶକ ଥିଲେ - ମାଧବାନନ୍ଦ ଧଳ, ଶ୍ରୀ ମହାଲକ୍ଷ୍ମୀ ଭଣ୍ଡାର, ୩, ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍, କଲିକତା । ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟର ଦୂରତା ଆମ ଛାତ୍ରାବାସଠାରୁ ୧ କିଲୋମିଟର୍ ହେବ । ଏ ବହିଟି ଛପା ହୋଇଥିଲା ଆଉ ଟିକିଏ ଦୂରରେ ଥିବା ଶ୍ରୀ ଗୋପାଲ ମଲ୍ଲିକ ଲେନ୍‌ରେ ଥିବା ତାରକେଶ୍ୱର ପ୍ରେସ୍‌ରୁ । ଏହି ବହିଟିର ମୂଲ୍ୟ ରଖାଯାଇଥିଲା ସେତେବେଳକାର ପାଞ୍ଚ ଅଣା ବା କୋଡ଼ିଏ ପଇସା । ସେତେବେଳେ ଗୋଟିଏ ଟଙ୍କାର ମୂଲ୍ୟ ଥିଲା ୬୪ ପଇସା । ଏହି ବହିର ପୃଷ୍ଠା ଥିଲା ୨୮ । ସେହି ସମୟରେ କିଛି ଗପ ମଧ୍ୟ ଲେଖିଥିଲି । ତା' ମଧ୍ୟରୁ ୪ଟି ଗପ ଯଥା - ରେଷ୍ଟୋରାଁରେ ଭିକାରି, ନୀଳ ରାତ୍ରିର ଝଡ଼, ଆଲୋକ ଜଳି ଉଠେ, ଜୀବନର ଧୂପଛାୟା ଓ କଲିକତାରେ ଏକ ଜୀବନ ବୀମା କମ୍ପାନିରେ ଚାକିରି କରୁଥିବା ବଂଧୁ କସ୍ତୁରି ଚରଣ ଦାସଙ୍କର ୪ଟି ଗପ ଯଥା - ଇସ୍‌ପାତି ମୁସାଫିର, ଜୀବନର ଚନ୍ଦ୍ର, ସ୍ୱପ୍ନ ମୁଁ ଦେଖୁଛି କି, ସ୍ୱାଧୀନ ରାଷ୍ଟ୍ର ଜିନ୍ଦାବାଦକୁ ନେଇ ଏକ ଗଳ୍ପ ପୁସ୍ତକ "ଦୁଇଟି ବୃନ୍ତରେ ଆଠଟି ଫୁଲ" ପ୍ରକାଶ ପାଇଥିଲା । ୧୯୫୦ ମସିହାରେ । କସ୍ତୁରିବାବୁ ସେ ସମୟରେ ଏକ ପୁସ୍ତକ ପ୍ରକାଶନ ସଂସ୍ଥା ଆରମ୍ଭ କରିଥିଲେ। ନାମ ଦେଇଥିଲେ- "ରାଜଶ୍ରୀ ପ୍ରକାଶନୀ ।" ସେହି ସଂସ୍ଥା ଏହି ଗଳ୍ପବହିଟିକୁ ପ୍ରକାଶ କରିଥିଲା ।

ପରବର୍ତ୍ତୀ ସମୟରେ ଜୟନ୍ତ ମହାପାତ୍ର ମୋର କିଛି କବିତା ଇଂରାଜୀରେ ଅନୁବାଦ କରିଥିଲେ ଓ ସେ ସବୁ କବିତା wings of the post ନାମକ ବହିରେ ସ୍ଥାନିତ ହୋଇଥିଲା । ଏ ବହିକୁ ୧୯୭୬ ମସିହାରେ କସ୍ତୁରି ବାବୁଙ୍କ ରାଜଶ୍ରୀ ପ୍ରକାଶନୀ ପ୍ରକାଶ କରିଥିଲା । ■■■

# ଆଉ କିଛି କଥା

କଲିକତା ଭାରତବର୍ଷର ଅନ୍ୟତମ ବୃହତ୍ତମ ମହାନଗରୀ । ଇଂରେଜମାନେ ଜଳପଥରେ ଭାରତବର୍ଷକୁ ଆସି ପ୍ରଥମ ବସତି ସ୍ଥାପନ କରିଥିଲେ କଲିକତାରେ । ଇଷ୍ଟଇଣ୍ଡିୟା କମ୍ପାନି ନାମରେ ସେମାନେ ବ୍ୟବସାୟ ଆରମ୍ଭ କରିଥିଲେ। ପରେ ଭାରତ ବର୍ଷରେ ନିଜର ଅଧିକାର ସାବ୍ୟସ୍ତ କରି କଲିକତାକୁ ରାଜଧାନୀ କରିଥିଲେ। ପରେ ଅବଶ୍ୟ ଭାରତବର୍ଷର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହେଲା ଶାସକ ଇଂରେଜମାନଙ୍କ ସମୟରେ ।

ମୋର କଲିକତା ଅବସ୍ଥାନ ସମୟରେ କଲିକତା ଓ ତା'ର ଆଖପାଖ ଅଞ୍ଚଳରେ ପ୍ରାୟ ୪ ଲକ୍ଷ ଓଡ଼ିଆ ରହୁଥିଲେ । ହାଓଡ଼ା, ବହୁବଜାର, ଶ୍ୟାମାଚରଣ ଦେ' ଷ୍ଟ୍ରୀଟ୍, ଶ୍ୟାମବଜାର, ଶିଆଳୀ ହାତୀବାଗାନ୍, ଖିଦିରପୁର ପ୍ରଭୃତି ଅଞ୍ଚଳରେ ବହୁ ଓଡ଼ିଆ ଶ୍ରମଜୀବୀ ବାସ କରୁଥିଲେ ।

ମୋ ପୂର୍ବରୁ ନୀଳମଣି ରାଉତରାୟ, ଚିନ୍ତାମଣି ପାଣିଗ୍ରାହୀ ମଧ କଲିକତାରେ ଛାତ୍ର ଥିଲେ । ସେତେବେଳେ ପ୍ରବାସୀ ଓଡ଼ିଆମାନଙ୍କର ନେତା ଥିଲେ ପଣ୍ଡିତ ଆକୁଳି ମିଶ୍ର, ରାମଚନ୍ଦ୍ର ପଟ୍ଟନାୟକ, ଅଭୟ ମହାନ୍ତି, ଦାମୋଦର ମହାନ୍ତି, ଦୟାନିଧି ଆରଣ, ଚିତ୍ତରଂଜନ ନାୟକ, ଶ୍ରୀ ଚରଣ ବରାଳ ପ୍ରମୁଖ । ସେମାନଙ୍କ ମଧ୍ୟରୁ ରାମଚନ୍ଦ୍ର ପଟ୍ଟନାୟକ ପରେ ବିଧାୟକ ହୋଇଥିଲେ ଓ ଚିତ୍ତରଂଜନ ନାୟକ ବିଧାୟକ ହୋଇ ଉପମନ୍ତ୍ରୀ ହୋଇଥିଲେ ।

ସାହିତ୍ୟର ପୃଷ୍ଠଭୂମିରେ ମୋର ଯେଉଁମାନଙ୍କ ସହ ସଂପର୍କ ବଢ଼ି ଉଠିଥିଲା, ସେମାନେ ହେଲେ ଦିଗମ୍ବର ଦାସ, କଣ୍ଢୁରି ଚରଣ ଦାସ, ହୃଦାନନ୍ଦ ମଲ୍ଲିକ, ଶୁକଦେବ ସାହୁ, ଜଗଦୀଶ ପାଣି, ରାମଚନ୍ଦ୍ର ହରିଚନ୍ଦନ, ଲକ୍ଷ୍ମୀଧର ଦଳାଇ ପ୍ରମୁଖ । ସେତେବେଳେ ଓଡ଼ିଆ ପିଲାଙ୍କ ପାଇଁ ଶ୍ୟାମ ବଜାର ଅଞ୍ଚଳର ମୋହନ

ଲାଲ୍ ଷ୍ଟ୍ରୀଟ୍‌ରେ ଏକ ହଷ୍ଟେଲ୍ ଥିଲା । ନାମଥିଲା ତା'ର ଓଡ଼ିଶା ହଷ୍ଟେଲ୍ । ସେ ହଷ୍ଟେଲ୍ ଘରର ଭଡ଼ା ଓଡ଼ିଶା ସରକାର ଦେଉଥିଲେ । ସେଇ ହଷ୍ଟେଲ୍‌ରେ ରହୁଥିଲେ ହୃଦାନନ୍ଦ ମଲ୍ଲିକ । ବେଳେବେଳେ ମୁଁ ଓ ରେବତୀ ଟ୍ରାମ୍‌ରେ ଯାଇ ହୃଦାନନ୍ଦ ବାବୁଙ୍କ ସହିତ ପ୍ରବାସୀ ଓଡ଼ିଆମାନଙ୍କ ସଂପର୍କରେ ଆଲୋଚନା କରୁଥିଲୁ । ହୃଦାନନ୍ଦ ବାବୁ ଓ ଅନ୍ୟମାନେ ମଧ୍ୟ ବେଳେବେଳେ ମୋ ପାଖକୁ ଆସୁଥିଲେ । କଲିକତାରେ ରହୁଥିବା ଓଡ଼ିଆମାନେ ଓଡ଼ିଆ ଭାଷାଠୁ କିଭଳି ଦୂରେଇ ଯାଉଛନ୍ତି ସେ ସଂପର୍କରେ ଆମେ ଅନେକ ସମୟରେ ଆଲୋଚନା କରୁଥିଲୁ । ବେଳେବେଳେ ମେଡ଼ିକାଲ୍ କଲେଜ ହତାକୁ ଯାଇ ଘାସ ପଡ଼ିଆରେ ବସି ଆମର ଏ ସବୁ ବିଷୟରେ ଆଲୋଚନା ହୁଏ ।

ଦିନକର ଅପରାହ୍ଣ । ମୁଁ, ହୃଦାନନ୍ଦ ବାବୁ, ରାମଚନ୍ଦ୍ର ବାବୁ ଓ କଣ୍ଡୁରି ବାବୁ ସେଇ ପଡ଼ିଆରେ ବସିଥାଉ । ଖଣ୍ଡେ କାଗଜ ଉପରେ ଭଜା ଚିନାବାଦାମ ରଖି ଗୋଟାଏ ଗୋଟାଏ ଆଣି ଛଡ଼େଇ ପାଟିରେ ପକାଉଥାଉ । ହୃଦାନନ୍ଦ ବାବୁ କହିଲେ- "କଲିକତାରୁ ପ୍ରବାସୀ ଓଡ଼ିଆଙ୍କ ମନଲାଖି ଏକ ପତ୍ରିକା ପ୍ରକାଶ କଲେ କେମିତି ହୁଅନ୍ତା ?"

ଆମେ ତିନିଜଣ ସାଙ୍ଗେ ସାଙ୍ଗେ ତାଙ୍କ କଥାକୁ ସମର୍ଥନ କଲୁ । ସେଇଠି ସ୍ଥିର ହେଲା ଆମେ ପତ୍ରିକାଟିଏ ପ୍ରକାଶ କରିବୁ । ସେଇଠି ମଧ୍ୟ ନିଷ୍ପତ୍ତି ନିଆଗଲା ଯେ' ପତ୍ରିକାଟିର ନାମ ରହିବ " ଆସନ୍ତା କାଲି" ।

କେମିତି ଛପାହେବ, କେଉଁଠି ଛପାହେବ, ସେ ସବୁ ଆଲୋଚନା କଲୁ । ସେତେବେଳେ କଟକସ୍ଥ ମନମୋହନ ପ୍ରେସ୍ ଓ ପୁସ୍ତକାଳୟର ଶାଖା ଶଶିଭୂଷଣ ଦେ ଷ୍ଟ୍ରୀଟ୍‌ରେ ଥିଲା । ଆମେ ଚାରିବଂଧୁ ସାଙ୍ଗେ ସାଙ୍ଗେ ପଦ ବ୍ରଜରେ ବାହାରିଲୁ । ସେଠି ପହଞ୍ଚି ସେଠି ଦାୟିତ୍ୱରେ ଥିବା ଲୋକଙ୍କ ସହିତ ଆଲୋଚନା କଲୁ । ସେ ରାଜି ହୋଇଗଲେ ଛାପିବାପାଇଁ । ସ୍ଥିର [illegible] ଆମ ଚାରିଜଣଙ୍କୁ ନେଇ ସଂପାଦକ ମଣ୍ଡଳୀ ରହିବ । ତାହା ହିଁ କରାଗଲା ।

ପ୍ରେସ୍‌ର ନିକଟତମ ବାସିନ୍ଦା ଥିଲି ମୁଁ । ପତ୍ରିକା ଛପା କାର୍ଯ୍ୟବେଳେ ମୋତେ ହିଁ ପ୍ରତି ସଂଧ୍ୟାରେ ପ୍ରେସ୍‌କୁ ଯାଇ ପ୍ରୁଫ୍ ଦେଖିବାକୁ ପଡୁଥିଲା । ଦିନେ ଦିନେ ମୁଁ ହଷ୍ଟେଲ୍‌କୁ ଫେରିନପାରି ସେଇଠି ଟେବୁଲ୍ ଉପରେ ଖବର କାଗଜ ପକେଇ ଶୋଇ ପଡୁଥିଲି ।

ପାର୍ବତୀ ଚରଣ ପରିଜା ଡାକନାମ ପାତିରାମ ପରିଜା ରହୁଥା'ନ୍ତି ପ୍ରେମଚାନ୍ଦ ବଡ଼ାଲ ଷ୍ଟ୍ରୀଟ୍‌ରେ । ଚୌରଙ୍ଗୀ ଟ୍ରାମ୍ ଓ ବସ୍ ଷ୍ଟେଣ୍ଡରେ ତାଙ୍କର ଏକ ବିରାଟ ପତ୍ରିକା ଦୋକାନ ଥାଏ । ଆନନ୍ଦ ବଜାର ପତ୍ରିକାର ବିକ୍ରି ଦାୟିତ୍ୱ ସେ ନେଇଥାନ୍ତି । ତାଙ୍କ ଦୋକାନରେ ବହୁଭାଷାର ପତ୍ରିକା ଦୈନିକ, ସାପ୍ତାହିକ, ପାକ୍ଷିକ, ମାସିକମାନ ବିକ୍ରି ହୁଏ ।

ପତ୍ରିକାସବୁକୁ ତଳେ ଅଖା ପକେଇ ତା ଉପରେ ମେଲେଇ ରଖିଥାନ୍ତି । ଯେତେବେଳେ ଗଲେ ସେଠି ଦେଖାଯାଏ ଗ୍ରାହକମାନଙ୍କ ଭିଡ଼ । ଆମେ ଯାଇ ତାଙ୍କ ସହିତ କଥା ହେଲୁ । ସେ ଆଗ୍ରହର ସହିତ "ଆସନ୍ତା କାଲି" ବିକ୍ରୟପାଇଁ ନେବାକୁ ରାଜି ହେଲେ । "ଆସନ୍ତା କାଲି"ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଥିଲା ୧୯୪୯ ମସିହାରେ । ମୁଁ ପଢ଼ା ଶେଷ କରି ବାଲେଶ୍ୱର ଚାଲି ଆସିବାପରେ ଅନ୍ୟମାନଙ୍କ ତତ୍ତ୍ୱାବଧାନରେ ଏହା ପ୍ରକାଶ ପାଉଥିଲା ଏବଂ ପରେ ଏହା ଆଉ ପ୍ରକାଶ ପାଇଲା ନାହିଁ ।

ମୋର କଲିକତା ରହଣି ଥିଲା ୧୯୪୮ ରୁ ୧୯୫୧ ମସିହା । ଏହି ସମୟରେ ଓଡ଼ିଶାର ସାହିତ୍ୟ-ତାରକା ସଚ୍ଚିଦାନନ୍ଦ ରାଉତରାୟ ମାଟିଆ ବୁରୁଜ୍‌ରେ ଥିବା "କେଶୋରାମ କଟନ୍ ମିଲ୍"ର ଶ୍ରମ ମଂଗଳ ଅଫିସର ଥିଲେ । 'ଆସନ୍ତାକାଲି' ପ୍ରକାଶନ ସମୟରେ ଥରେ ମାତ୍ର ମୁଁ ତାଙ୍କ ପାଖକୁ ଯାଇଥିଲି ।

କଲିକତାରେ ଆଖପାଖ ଅଞ୍ଚଳରେ ଅନେକ ସୂତା କଳ ଓ ଝୋଟକଳ ଥିଲା । ସେ ସବୁ କଳରେ ଅନେକ ଓଡ଼ିଆ ଚାକିରି କରୁଥିଲେ । ସେମାନଙ୍କ ପାଇଁ ଛୋଟ ଛୋଟ ଗପ ବହି ଛାପି ତାକୁ ଓ "ଆସନ୍ତା କାଲି"କୁ ବିକ୍ରି କରିବା ପାଇଁ ଅନେକ ରବିବାରରେ ଆମେ ସେ ଅଞ୍ଚଳକୁ ଯାଉଥିଲୁ ।

ହାଡ଼ିଞ୍ଜ ହଷ୍ଟେଲ୍‌ରେ ଥିବା ସମୟରେ ଆଉ କିଛି ଘଟଣା ଘଟିଥିଲା ଯାହା ମୋ ମନପଟରେ ଆଜି ବି ଜୀବନ୍ତ ଅଛି । ଥରେ ରବିବାର ସକାଳେ ଆମେ ୫ ଜଣ ଅର୍ଥାତ୍ ରେବତୀ, ସତ୍ୟେନ୍, ହରିନାରାୟଣ, ଅସ୍ମଦ ବସୁ ଓ ମୁଁ ଡାୟମଣ୍ଡ ହାର୍‌ବର ବୁଲିବାକୁ ଯାଇଥିଲୁ । ପଶ୍ଚିମ ବଙ୍ଗର ଏହା ଏକ ଦର୍ଶନୀୟ ସ୍ଥାନ । ଏହିଠାରେ ଗଙ୍ଗାନଦୀର ସମୁଦ୍ର-ପତନ । ବୁଲାବୁଲି ସାରି ବସ୍‌ରେ ଫେରିଲୁ । ଏସ୍‌ପ୍ଲାନେଡ୍‌ରେ ଓହ୍ଲାଇଲୁ । ଅସ୍ମଜବାବୁଙ୍କର ଏସ୍‌ପ୍ଲାନେଡ୍‌ରେ କଣ କାମ ଥିଲା । ସେ ସେଠାରେ ରହିଗଲେ । ଆମେ ୪ ଜଣ ଟ୍ରାମ୍‌ରେ ବସି ହଷ୍ଟେଲ୍ ଫେରିଲୁ ।

ସଂଧ୍ୟା ହେଇ ଯାଇଥାଏ । ଆମ ମୁଣ୍ଡରେ ଗୋଟେ ଦୁର୍ବୁଦ୍ଧି ପଶିଲା । ଖଣ୍ଡିଏ କାଗଜରେ ଲେଖିଦେଲୁ - "Sad News - Asmaj Basu is dead. ସେଇଟିକୁ ହଷ୍ଟେଲର ପ୍ରବେଶଦ୍ୱାର ପାଖରେ ଥିବା ନୋଟିସ୍ ବୋର୍ଡ଼ରେ ଲଗେଇ ଦେଇ ବୋର୍ଡ଼ ଭିତରେ ଥିବା ଲାଇଟ୍‌ଟାକୁ ଜଳେଇ ଦେଲୁ । ଏଥିପାଇଁ ଆମକୁ ସାହାଯ୍ୟ କଲେ ହଷ୍ଟେଲ୍‌ର ଦୁଇ ଦରଓ୍ୱାନ୍ ରାମାଦିନ୍ ଓ ପାଣ୍ଡେ । ଏ ଖବର ସାଙ୍ଗେ ସାଙ୍ଗେ ହଷ୍ଟେଲ୍‌ର ୫ଟି ଯାକ ତାଲାରେ ପ୍ରଚାର ହୋଇଗଲା । ତା'ପରେ ଏ କଥା ହଷ୍ଟେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ୍ ସାଧନଚନ୍ଦ୍ର ରାୟ ଚୌଧୁରୀଙ୍କ କାନକୁ ଗଲା । ତା'ପରେ ଶୋକସଭାର ଆୟୋଜନ । ଶୋକ ସଭାରେ ଯୋଗ ଦେବାପାଇଁ କିଛି ଛାତ୍ର ତଳକୁ ଆସିଲେ । ଏହି ସମୟରେ ହଠାତ୍ ବାହାରୁ ପ୍ରବେଶ କଲେ ଅସ୍ମଜବାବୁ । ତାଙ୍କୁ ଦେଖି ସମସ୍ତେ ତଟସ୍ଥ । ଜଣେ ତାଙ୍କୁ ପଚାରିଦେଲା "ଆପ୍‌ନି ବେଁଚେ ଆଛେନ ? ଏ ପ୍ରଶ୍ନ ଶୁଣି ସେ' ବି ତଟସ୍ଥ ।

ସେ ତାଙ୍କୁ ନେଇ ନୋଟିସ୍ ବୋର୍ଡ଼ରେ ମରାହେଇଥିବା କାଗଜଟାକୁ ଦେଖାଇ ଦେଲା । ଅସ୍ମଜବାବୁ ସେ କାଗଜଟାକୁ ବୋର୍ଡ଼ରୁ ଛିଣ୍ଡେଇ ଆଣି କଟମଟକିନି ଆମ ଆଡ଼କୁ ଚାହିଁ ଉପରତାଲାକୁ ଚାଲିଗଲେ । ଆମେ ଯେତେବେଳେ ଉପରକୁ ଗଲୁ ସେ ଆମ ସହିତ କଥାବାର୍ତ୍ତା ବି କଲେ ନାହିଁ । ରାତିରେ ଆମେ ତାଙ୍କୁ ବୁଝେଇଲୁ କେବଳ ମଜା କରିବା ପାଇଁ ଆମେ ଏଇଟା କରିଥିଲୁ ।

ଦର୍ଶନ .ଶ୍ରେଣୀରେ ମୋ ସହିତ ଗୀତା ଦତ୍ତ ଆଉ ପୁରୁଲିଆର ମନୋଜ ବସୁ ପଢୁଥିଲେ। ଉଭୟଙ୍କ ମଧ୍ୟରେ ମଧୁର ସଂପର୍କ ଥିଲା । ଗୀତା ଅଡ଼ିବସିଲା ମନୋଜକୁ ବିବାହ କରିବା ପାଇଁ । ମନୋଜ କିନ୍ତୁ ଏଇ କଥା ଉପରେ ଧରାଛୁଆଁ ଦେଲା ନାହିଁ । ମନୋଜ ହାଡ଼ିଞ୍ଜ ହଷ୍ଟେଲ୍‌ରେ ମୋ'ରି କୋଠରି ପାଖରେ ଗୋଟିଏ ଜଣକିଆ କୋଠରିରେ ରହୁଥିଲା । ଦିନେ ସକାଳ ପ୍ରାୟ ନ'ଟା ବେଳେ ଗୀତା ଆସି ମନୋଜ ରହୁଥିବା କୋଠରି ଆଗରେ ଅନଶନରେ ବସିଗଲା । ଆମେ ତାକୁ ଯେତେ ବୁଝେଇଲେ ମଧ୍ୟ ସେ ଅନଶନରୁ ଉଠିଲା ନାହିଁ । ସୁପରିଣ୍ଟେଣ୍ଡେଣ୍ଟ୍ ସାଧନବାବୁ ହସ୍ତକ୍ଷେପ କଲେ, ତଥାପି ସେ ଉଠିଲା ନାହିଁ । ଶେଷରେ ସେ ଦୁଇଜଣଙ୍କୁ ସାଧନବାବୁ ରହୁଥିବା ଘରକୁ ଡାକିନେଇ ବୁଝେଇଲେ । ମନୋଜ ଗୀତାକୁ ବାହାହେବାକୁ ରାଜି ହୋଇଗଲା ଓ କିଛି ଦିନ ପରେ ସେମାନେ ବିବାହ କଲେ ।

ଗୋଲ୍‌ଦୀଘି ପାର୍କ ସେ' ପାଖରେ ମହାବୋଧି ସୋସାଇଟିର ଏକ ଛୋଟ ସଭାଗୃହ ଅଛି । ଥରେ ଆମେ ସେ ଘରକୁ ଭଡ଼ାନେଇ ଓଡ଼ିଆ ସାହିତ୍ୟର ଏକ ଆଲୋଚନା ସଭା କରିଥିଲୁ । ବକ୍ତା ଭାବରେ ଡାକିଥିଲୁ ପଣ୍ଡିତ ନୀଳକଣ୍ଠ ଦାସ ଓ ପ୍ରୋଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ । ଆମେ ଜାଣି ନଥିଲୁ ଯେ' ସେ ଦୁହେଁ କେହି କାହାରି ଛାଇ ମାଡ଼ନ୍ତି ନାହିଁ। ସେ ଦୁହିଁଙ୍କର ଭାଷଣ ସାହିତ୍ୟ ଉପରେ ନ ହୋଇ ପରସ୍ପରକୁ କାଦୁଅ ଛାଟିବାର ଭାଷଣ ହୋଇଗଲା । କିଛି ଶ୍ରୋତା ଆମକୁ କହିଲେ - "ଏ ଦୁଇଜଣଙ୍କୁ ଏକା ସାଙ୍ଗରେ କାହିଁକି ଡାକିଲେ ?" ଆମ ପାଖରେ ଉତ୍ତର କିଛି ନଥିଲା ।

ଥରେ ବାଣିଜ୍ୟ ବିଭାଗର ଛାତ୍ରଛାତ୍ରୀମାନେ କେତେକ ଦାବୀ ପୂରଣ ପାଇଁ ଧର୍ମଘଟ କରିଥିଲେ । ବିଶ୍ୱବିଦ୍ୟାଳୟ ହତା ମଧ୍ୟରେ ତାହା ପ୍ରବଳ ଆକାର ଧାରଣ କରିଥିଲା । ବଂଧୁକଧାରୀ ପୋଲିସ୍ ହତା ଭିତରକୁ ଆସି ଲାଠି ଚାଳନା ଓ ଗୁଳି ଚାଳନା ବି କରିଥିଲେ। ଆମେ ହାଡ଼ିଞ୍ଜ ହଷ୍ଟେଲ୍‌ରୁ ପୋଲିସ୍ ମାନଙ୍କ ଉପରକୁ ଢେଲା ଫିଙ୍ଗିଲୁ । ପୋଲିସ୍ ଆମ ଆଡ଼କୁ ଲକ୍ଷ୍ୟ କରି ୨/୩ ରାଉଣ୍ଡ୍ ଗୁଳି ଚଳାଇଲା । ମୁଁ ହଷ୍ଟେଲ୍‌ରେ ଯେଉଁ ଜାଗାରେ ଠିଆ ହୋଇଥିଲି ସେଇଠୁ ମାତ୍ର ଛ'ଇଞ୍ଚ ଦୂରରେ ଗୋଟେ ଗୁଳି ଆସି କାନ୍ଥରେ ବାଜିଥିଲା । ସେ ଗୁଳିରେ କାନ୍ଥରେ ପ୍ରାୟ ତିନି ଚାରି ଇଞ୍ଚ ଗହୀରର ଚିହ୍ନ ରହି ଯାଇଥିଲା ।

୧୯୭୫ ମସିହାରେ ମୁଁ ଯେତେବେଳେ ଶିକ୍ଷାମନ୍ତ୍ରୀ ଥିଲି ସେତେବେଳେ ଶିକ୍ଷା ସଂପର୍କୀୟ ଏକ ଆଲୋଚନାରେ ଭାଗନେବାପାଇଁ କଲିକତା ଯାଇ ଉତ୍କଳ ଭବନରେ ୩/୪ ଦିନ ଥିଲି । ଗୋଟେ ଦିନ ମୋର ସେଇ ପୁରୁଣା ବାସସ୍ଥାନ ହାଡ଼ିଞ୍ଜ ହଷ୍ଟେଲକୁ ଯାଇଥିଲି । କୌତୂହଳ ବଶତଃ ସେହି ଗୁଳିବିଦ୍ଧ ସ୍ଥାନକୁ ଯାଇ ଗୁଳି ଚିହ୍ନକୁ ଦେଖିଥିଲି । ଇଂରେଜ ଶାସନ ସମୟରେ ତିଆରି ହୋଇଥିବା ଏହି ହଷ୍ଟେଲର ପାଞ୍ଚତାଲା କୋଠା ଏବେ ଆଉ ନାହିଁ । ତାକୁ ଭାଙ୍ଗି ଦିଆଯାଇ ତା' ଜାଗାରେ ନୂଆ କୋଠା ତିଆରି ହୋଇଛି ।

ପୂର୍ବରୁ ମୁଁ ଉଲ୍ଲେଖ କରିଛି ଇରମର ଜମିଦାର ପାଢ଼ୀଘର କଥା ଏବଂ ସେ ଘର ସହିତ ଆମ ଘରର ପାରିବାରିକ ସଂପର୍କ । ଟୁଆଁନନାଙ୍କ ବଡ଼ବାପା ରାଧାକାନ୍ତ ପାଢ଼ୀଙ୍କ ବଡ଼ ପୁଅ ରତିକାନ୍ତ (ଡାକନାମ ବିପିନ) ସେ ସମୟରେ ଏକ ଓଡ଼ିଆ ଚଳଚିତ୍ର ନିର୍ମାଣ କରିବାପାଇଁ କଲିକତାରେ ପହଞ୍ଚିଲେ । ମେଡ଼େନ ଷ୍ଟ୍ରୀଟ୍

(ଚୌରଙ୍ଗୀଠୁ ଅନ୍ତବାଟ) ରେ ଏକ ଘର ଭଡ଼ାରେ ନେଲେ । ଛବିର ସୁଟିଂ ହେଲା ଇନ୍ଦ୍ରଲୋକ ଷ୍ଟୁଡ଼ିଓରେ । ଛବିର ନାୟକ ଭୂମିକାରେ ଅଭିନୟ କଲେ ପ୍ରଯୋଜକ ରତିକାନ୍ତ ପାଢ଼ୀ । ନାୟିକା ଭୂମିକାରେ ଅଭିନୟ କଲେ କଲିକତା ନିବାସିନୀ ଜଣେ ଓଡ଼ିଆଣୀ । ଛବିଟର ନାମ ଥିଲା "ରୋଲ୍‌ସ -୨୮" । ଛବିର ସୁଟିଂ ଦେଖିବାପାଇଁ ମୁଁ ଓ ଟୁଆଁ ନନା କେତେଥର ଇନ୍ଦ୍ରଲୋକ ଷ୍ଟୁଡ଼ିଓକୁ ଯାଇଥିଲୁ ।

ଏ ଛବିଟିର ଅନ୍ୟତମ ପ୍ରଯୋଜକ ଥିଲେ ଡମପଡ଼ାର ରାଜା ଟିକି ସାହେବ ଯେ' କି ଢେଙ୍କାନାଳ ରାଜବଂଶରୁ ଆସି ଡମପଡ଼ାରେ ପୋଷ୍ୟପୁତ୍ର ହୋଇଥିଲେ । ତାଙ୍କର ମେଡ଼େନ ଷ୍ଟ୍ରୀଟ୍‌ରେ ଘର ଥିଲା ଓ ସେ ଅନେକ ସମୟରେ କଲିକତା ଆସି ସେଇଠି ରହୁଥିଲେ । ସେ ସମୟରେ ତାଙ୍କ ସହିତ ମୋର ମଧ୍ୟ ପରିଚୟ ହୋଇଥିଲା । ତାଙ୍କର ଗୋଟିଏ ଅଷ୍ଟିନ୍ କାର୍ ଥିଲା । ସେହି କାର୍‌ରେ ସେ ଓ ବିପିନ୍ ନନା ଷ୍ଟୁଡ଼ିଓ ଯାଆନ୍ତି । ଥରେ ଦି'ଥର ମୁଁ ଆଉ ଟୁଆଁ ନନା ତାଙ୍କ ସହିତ ଷ୍ଟୁଡ଼ିଓ ଯାଇଛି ।

କଲିକତାର ଦୁର୍ଗାପୂଜା ଭାରତ ପ୍ରସିଦ୍ଧ । ଦୁର୍ଗାପୂଜା ସମୟରେ କଲିକତାର ବଙ୍ଗାଳୀମାନେ ସବୁକିଛି ଭୁଲି ଯାଆନ୍ତି । ଶ୍ୟାମବଜାର ଅଞ୍ଚଳର ପୂଜା ହେଉଛି ସର୍ବପ୍ରାଚୀନ ପୂଜା । ଶ୍ୟାମବଜାର ଅଞ୍ଚଳ ହେଉଛି ବଙ୍ଗାଳୀମାନଙ୍କର ଆଦ୍ୟ ବସତିସ୍ଥାନ । ଏହି ଅଞ୍ଚଳରେ ବହୁ ପ୍ରତିଷ୍ଠିତ ପରିବାର ବାସ କରନ୍ତି । ଗୋଟାଏ ବର୍ଷ ମୁଁ ଓ ରେବତୀ ଦୁର୍ଗାପୂଜା ଛୁଟିରେ ସାଙ୍ଗେ ସାଙ୍ଗେ ଘରକୁ ନ ଯାଇ କଲିକତାର ପୂଜା ଦେଖିବା ପାଇଁ ଛୁଟିର ପ୍ରଥମାର୍ଦ୍ଧ କଲିକତାରେ କଟେଇଥିଲୁ । ସପ୍ତମୀ ଅଷ୍ଟମୀ ନବମୀ ଏହି ୩ ଦିନ ପ୍ରତ୍ୟେକ ଦିନ ସଂଧ୍ୟାରେ ଆମେ ବାହାରୁ । ପଦବ୍ରଜରେ ଦିନେ ଶ୍ୟାମବଜାର ଅଞ୍ଚଳକୁ, ଦିନେ ବହୁବଜାର, ଚୌରଙ୍ଗୀ ଦେଇ ଭବାନୀପୁର ଅଞ୍ଚଳକୁ, ଦିନେ ଶିଆଳଦା ଦେଇ ଶିଆଳଦାର ଉତ୍ତରକୁ ଓ ଦକ୍ଷିଣକୁ ଯାଇଥିବା ରାସ୍ତାରେ ଯାଇ ଅନେକ ପୂଜାମଣ୍ଡପ ଦେଖିଲୁ । ଏ ତିନିଦିନରେ ପାଦରେ ପ୍ରାୟ ଆମେ ୭୦/୮୦ କିଲୋମିଟର୍ ବୁଲିଥିବୁ । ହୁଗୁଳୀ ନଦୀରେ ମେଢ଼ ସବୁକୁ ବିସର୍ଜନ ଦିଆଯାଏ । ଦଶହରା ଦିନ ସକାଳେ ମୁଁ ଓ ରେବତୀ ହାଓଡ଼ା ଷ୍ଟେସନକୁ ଆସି ଦିନ ୧୧ଟାରେ ପେସେଞ୍ଜର ଟ୍ରେନ୍ ଧରିଲୁ । ମୁଁ ସୋରରେ ଓହ୍ଲାଇଗଲି । ରେବତୀ କଟକ ଗଲା । ସେ'ଠୁ ସେ ବସ୍‌ରେ ଯିବ ଭବାନୀ ପାଟଣା ।



# ସେହି ଭୟଙ୍କର ରାତ୍ରି

ମୁଁ ସୋର ଷ୍ଟେସନ୍‌ରେ ଓହ୍ଲାଇବାବେଳକୁ ସଂଧ୍ୟା ହୋଇଯାଇଥାଏ । ମୁଁ ଷ୍ଟେସନ୍‌ରୁ ଉତ୍ତରେସୋର ଆସି ଜଗନ୍ନାଥ ସଡ଼କରେ କୁପାରି ସଡ଼କ ମୁଖକୁ ଆସିଲି । ସେତେବେଳର ଜଗନ୍ନାଥ ସଡ଼କର ବାଲେଶ୍ୱରଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଡ଼କ ଏବେ ୫ ନମ୍ବର ଜାତୀୟ ରାଜପଥର ଅନ୍ତର୍ଭୁକ୍ତ ହୋଇଛି । ଆକାଶ ମେଘୁଆ ଥାଏ । ସେଥିପାଇଁ ଜହ୍ନ ବେଳେବେଳେ ଡାଙ୍କି ହୋଇ ଯାଉଥାଏ । ସେତେବେଳକାର କୁପାରି ମାଟିସଡ଼କରେ ଗାଆଁକୁ ଯିବାବେଳେ ମଝିରେ ଏକ ବଡ଼ ଗାଆଁ ସରଶଂଖ ପଡ଼େ । ସରଶଂଖ ପର୍ଯ୍ୟନ୍ତ ରାସ୍ତାଟା ନିଛାଟିଆ । ସରଶଂଖଠୁ ନଦୀ ଗାଁ ପ୍ରାୟ ୫ କିଲୋମିଟରରୁ ବେଶୀ ରାସ୍ତା ହେବ ଏବଂ ନଦୀ ଗାଁଠାରୁ ଆମ ଗାଆଁ ଏକ କିଲୋମିଟରରୁ ସାମାନ୍ୟ ବେଶୀ । ଏଇ ରାସ୍ତାକୁ ଆମ ପୂର୍ବ ପୁରୁଷ ନିର୍ମାଣ କରାଇଥିଲେ । ନଦୀ ଗାଁରେ ପହଞ୍ଚି ଗାଆଁ ଆଡୁ ଖୁବ୍ ଜୋର୍ ଢୋଲ ବାଜାର ଶବ୍ଦ ଶୁଭିଲା । ମୁଁ ଭାବିନେଲି ଗାଆଁରେ ଠାକୁରାଣୀ ମାଜଣା ଚାଲିଛି । ସେତେବେଳେ ଗାଆଁର ଲୋକେ ସେମାନଙ୍କ କାମପାଇଁ ଠାକୁରାଣୀଙ୍କ ପାଖରେ ମାନସିକ କରନ୍ତି । କାମ ହୋଇଗଲା ପରେ ମାଜଣା କରନ୍ତି । ମୋ ଅନୁମାନ ଠିକ୍ । ଆଉ କିଛି ବାଟ ଗଲାପରେ ଗଲାପରେ ଦେଖିଲି ଜଣେ ଲୋକ ମୁଣ୍ଡକୁ ହଲେଇ ହାତରେ ବେତ ଧରି ଧାଇଁ ଧାଇଁ ସାମାନା ଆଡୁ ଆସୁଛି । ମାଜଣାରେ ଠାକୁରାଣୀମାନେ ଲୋକଙ୍କ ଉପରେ ସବାର ହୋଇ ଭୟଙ୍କର ରୂପ ଧାରଣ କରନ୍ତି । ରାଜଯାତ୍ରା ସମୟରେ ସେମାନଙ୍କର ଭୟଙ୍କର ରୂପ ମୁଁ ଦେଖିଛି । ଦେହ ମୋର ଭୟରେ ଥରି ଉଠିଲା । ମୁଁ ସଡ଼କବାଟ ଛାଡ଼ି ଧାନ ବିଲ ଭିତରକୁ ଯାଇ ହିଡ଼ ଉପରେ ଦଉଡ଼ିଲି । ବିଲରେ ଧାନଗଛ ଆଉ ଜଳ । ଜଳ ଭିତରେ ଅନେକ ସରୀସୃପ, ବେଙ୍ଗଙ୍କ ରଡ଼ିରେ ପରିବେଶ ଭୟଙ୍କର । କିଛିବାଟ ଦଉଡ଼ି

ଦମ୍ ନେଲି । ଠାକୁରାଣୀ ସବାର୍ ହୋଇଥିବା ଲୋକଟି ଆଗକୁ ଦଉଡ଼ି ଯିବାପରେ ମୁଁ ପୁଣି ସଡ଼କକୁ ଫେରି ଘର ଅଭିମୁଖେ ଧାଇଁଲି । ଗୋଡ଼ ଦି'ଟା କାଦୁଅ ବୋଳା । ଭାବିଲି ହରିସାଗର ପୋଖରୀ ପକ୍କାଘାଟରେ ଗୋଡ଼ ଧୋଇ ଘରକୁ ଯିବି । ପକ୍କାଘାଟଠୁ ଆମ ଘରର ଦୂରତା ଶହେ ହାତ ହେବ । ଘାଟକୁ ଗଲି । ପାଣି ଭିତରକୁ ପଡ଼ିଥିବା ପକ୍କା ପାଉଛକୁ ଯାଇ ଆଗେ ଆଞ୍ଜୁଳା ପାଣି ପିଇଗଲି । ଗୋଡ଼ ଧୋଇ ଥକ୍କା ମେଣ୍ଟେଇବା ପାଇଁ ପକ୍କା ପିଣ୍ଡି ଉପରେ ବସିଗଲି । ବସୁ ବସୁ ଆଖି ଲାଗିଗଲା । ଚିତ୍ ହୋଇ ଶୋଇଗଲି । ରାତି ପ୍ରାୟ ୧୦ଟା ବେଳକୁ ଜଣେ କିଏ ମୋତେ ଦେଖି "ସାନ ବାବୁ, ସାନବାବୁ, " ଡାକି ଉଠେଇଲା ଓ ମୋ ସାଙ୍ଗରେ ଘର ପର୍ଯ୍ୟନ୍ତ ଗଲା । ବଡ଼ବାପାଙ୍କୁ କହିଲା - "ସାନ ବାବୁ ପକ୍କାଘାଟରେ ଶୋଇଥିଲେ ।"

ବଡ଼ ବାପା ମୋ ମୁହଁକୁ ଚାହିଁଲେ । ମୁଁ କିଛି କହିବା ଅବସ୍ଥାରେ ନଥିଲି । ଦୋତାଲା ଉପରେ ମୁଁ ରହୁଥିବା କୋଠରିକୁ ଚାଲିଗଲି । ରାତିରେ ମୋ ସ୍ତ୍ରୀକୁ ସବୁକଥା କହିଲି ।

ଗାଆଁରେ ତିନିଚାରିଦିନ ରହି ସ୍ତ୍ରୀକୁ ନେଇ ଶ୍ୱଶୁର ଘର ଗାଆଁକୁ ଗଲି । ସେ'ଠି ଦି'ଦିନ ରହି କଲିକତା ଗଲି ।



# ଦୈହିକ ପୀଡ଼ା

କଲିକତାର ଛାତ୍ରାବାସରେ ପହଞ୍ଚିବାର କିଛି ଦିନପରେ ମୁଁ ଜ୍ୱର ରୋଗରେ ଆକ୍ରାନ୍ତ ହେଲି । ଜଣେ ଅବସରପ୍ରାପ୍ତ ଡାକ୍ତର ପିଲାମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିବା ପାଇଁ ନିଯୁକ୍ତ ଥାନ୍ତି । ସେ ସପ୍ତାହକୁ ଥରେ ହଷ୍ଟେଲ୍‌କୁ ଆସନ୍ତି । କିନ୍ତୁ କାହାକୁ କୌଣସି ରୋଗ ହେଲେ ତାଙ୍କୁ ଡକାଯାଏ । ମୋତେ ଦେଖିବାପାଇଁ ଡକାହୋଇ ଆସିଲେ । ଦେହର ଉତ୍ତାପ ମାପିଲେ । ପରୀକ୍ଷା କରିବା ପାଇଁ ଦେହରୁ ରକ୍ତନେଲେ । ପରଦିନ ଆସି କହିଲେ - ମୁଁ କାଳାଜ୍ୱରରେ ଆକ୍ରାନ୍ତ ।

କାଳାଜ୍ୱର ହେଉଛି ମାରାତ୍ମକ ଜ୍ୱରରୋଗ । ମୋ ଚକିତ୍ସା ପାଇଁ ସବୁପ୍ରକାର ବ୍ୟବସ୍ଥା କରାଗଲା । ୬/୭ ଦିନ ଲାଗିଲା ଭଲ ହେବାକୁ । ଭାରି ଦୁର୍ବଳ ହୋଇ ପଡ଼ିଥିଲି । ଡାକ୍ତର ପରାମର୍ଶ ଦେଲେ ଘରକୁ ଯାଇ କିଛି ଦିନ ବିଶ୍ରାମ ନେବାକୁ । କଲିକତାରୁ ଆସି ବାଲେଶ୍ୱରରେ ଓହ୍ଲାଇ ଆର୍ତ୍ତ କବିରାଜ ରୋଡ଼ରେ ଥିବା ଶ୍ୱଶୁରଙ୍କ ଘରକୁ ଗଲି । ମୁଁ ଭାରି ଦୁର୍ବଳ ହୋଇ ଯାଇଥାଏ । ପରଦିନ ଶ୍ୱଶୁର ଗାଆଁକୁ ଖବର ଦେଲେ । ମୋ ସ୍ତ୍ରୀ ବି ଆସିଲେ । ସେଠାରେ ୭ ଦିନ ବିଶ୍ରାମ ନେଇ କଲିକତା ଫେରିଲି ।

କିଛିଦିନ ପରେ ଆଉ ଏକ ଦୈହିକ ପୀଡ଼ାର ଶିକାର ହେଲି । ଡାହାଣ ହାତର ବୁଢ଼ା ଆଙ୍ଗୁଳିରେ କଣନଖା ହେଲା । ବୁଢ଼ା ଆଙ୍ଗୁଳିର ଅଗ୍ରଭାଗ ପାଚି ଯାଇ ପୂଜରେ ଭର୍ତ୍ତି ହୋଇଗଲା । ଡାକ୍ତର କହିଲେ - ଆଙ୍ଗୁଳିଟାକୁ ମଝିରୁ କାଟିଦେବାକୁ ପଡ଼ିବ । ଡାହାଣ ହାତର ବୁଢ଼ା ଆଙ୍ଗୁଠି ଯଦି କଟା ହେଇଯାଏ, ମୋ ଅବସ୍ଥା ଯେ କଣ ହେବ, ତାହା ମୋତେ ବ୍ୟସ୍ତ ବିବ୍ରତ କରି ପକାଇଲା । ଏହା ହେଲେ ଆଉ କଣ ସେ ହାତରେ ଲେଖାଲେଖି କରିହେବ ନା ଖାଇ ହେବ ? ଡାକ୍ତର ଘାରେ ପଟି ବାନ୍ଧିଦେଲେ । ମୁଁ ଚାମଚ ସାହାଯ୍ୟରେ ଖାଇଲି ।

କଣ କରିବି ? ମୁଁ ତୃତୀୟ ତାଲାର ୯ ନମ୍ବର ଜଣକିଆ କୋଠରିରେ ରହୁଥାଏ । ରେବତୀ ରହୁଥାଏ ୧୦ ନମ୍ବର କୋଠରିରେ । ଦୁହେଁ ବସି ସ୍ଥିର କଲୁ ଆଙ୍ଗୁଳି ନ କାଟି ହୋମିଓ ପାଥିକ ଚିକିତ୍ସା କରିବା ପାଇଁ ।

ମୁଁ ଜାଣିଥିଲି ବାଲେଶ୍ୱରର ସରକାର ପରିବାର ଯେ ଆମ ଜମିଦାରିରୁ ଅଧା ନେଇଥିଲେ, ସେଇ ପରିବାରର ବଡ଼ ପୁଅ ଜୀତେନ୍ଦ୍ରନାଥ ସରକାର ହରିସନ୍ ରୋଡ଼ (ବର୍ତ୍ତମାନର ମହାତ୍ମାଗାନ୍ଧି ରୋଡ଼) ଓ ଆମ୍‌ହାର୍ଷ୍ଟ ଷ୍ଟ୍ରୀଟର ଛକରୁ ଯାଇଥିବା ସୀତାରାମ ଘୋଷ ଷ୍ଟ୍ରୀଟ୍‌ରେ ରହନ୍ତି । ସେ ଜଣେ ଏଲୋପାଥିକ୍ ଡାକ୍ତର ହୋଇଥିଲେ ବି ହୋମିଓ ପାଥିକ ଚିକିତ୍ସା କରନ୍ତି । ରେବତୀ ଓ ମୁଁ ତାଙ୍କ ପାଖକୁ ଗଲୁ । ଆମ ପରିଚୟ ଦେଲୁ । ସେ ମୋ ଆଙ୍ଗୁଳିକୁ ସାମାନ୍ୟ ଅପରେସନ୍ କରିଦେଲେ ଓ ମଲମ ଲଗେଇ ପଟି ବାନ୍ଧିଦେଲେ। ଖାଇବା ପାଇଁ ହୋମିଓପାଥିକ ଔଷଧ ଦେଲେ। ଘା ଶୁଖିବାକୁ ପ୍ରାୟ ମାସେ ଲାଗିଲା । ଆଙ୍ଗୁଳିର ସେ କ୍ଷତଚିହ୍ନ ଆଜି ବି ଅଛି ।



# ବିଦାୟ କଲିକତା

ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ପୂର୍ବରୁ ମୁଁ ପଢୁଥିବା ଦର୍ଶନ ବିଭାଗର ଅଧ୍ୟାପକ ଥିଲେ। ପ୍ରଥମବର୍ଷ ଶେଷରେ ଦର୍ଶନର ପ୍ରଥମ ଭାଗ ପରୀକ୍ଷା ମୁଁ ଦେଇଥିଲି । ଦ୍ୱିତୀୟ ବର୍ଷ ବିଶ୍ୱବିଦ୍ୟାଳୟର ଛାତ୍ର ଇଉନିୟନ୍‌କୁ ପ୍ରତିନିଧି ଭାବରେ ନିର୍ବାଚିତ ହୋଇ ଯାଇଥିଲି । ସେହିବର୍ଷ ଦର୍ଶନ ବିଭାଗର ବାର୍ଷିକ ଉତ୍ସବକୁ ଡକ୍ଟର ରାଧାକ୍ରିଷ୍ଣନ ଅତିଥିଭାବରେ ଆସି ଆମ୍ଭମାନଙ୍କୁ ସଂବୋଧିତ କରିଥିଲେ। ଦର୍ଶନ ଶାସ୍ତ୍ରରେ ସେ ଥିଲେ ସେତେବେଳେ ଅଦ୍ୱିତୀୟ ପଣ୍ଡିତ । ସେହି ପୁଣି ପରବର୍ତ୍ତୀ କାଳରେ ଭାରତ ବର୍ଷର ଉପରାଷ୍ଟ୍ରପତି ଓ ରାଷ୍ଟ୍ରପତି ପଦ ମଣ୍ଡନ କରିଥିଲେ । ସେ' ଦିନ ତାଙ୍କୁ ଦେଖିବା ଓ ତାଙ୍କ ଭାଷଣ ଶୁଣିବାର ସୌଭାଗ୍ୟ ମୋର ହୋଇଥିଲା ।

ସେତେବେଳେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଥିଲେ ଡ. ବିଧାନଚନ୍ଦ୍ର ରାୟ । ଡାକ୍ତର ହିସାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା । ଓ୍ୟେଲିଂଟନ ସ୍କୋୟାରରେ ତାଙ୍କ ଘର । କେତେଥର ମୁଁ ଓ ରେବତୀ ଓ୍ୟେଲିଂଟନ ସ୍କୋୟାର ପାର୍କକୁ ଯାଇଛୁ ଓ ସେଇଠି ବସି ତାଙ୍କ ଘରକୁ ଅନାଇ ରହିଛୁ । ଆଜିକାଲି ମୁଖ୍ୟମନ୍ତ୍ରୀ ରହୁଥିବା ଘର ଆଗରେ ଯେମିତି ଗାଡ଼ି ଓ ପୋଲିସ୍ ମାଳମାଳ ସେତେବେଳେ ତାହା ନଥିଲା । ତାଙ୍କ ଘର ଏକ ପୁରୁଣା କାଳିଆ ଘର । ସେହି ଘର ଆଗରେ କେବଳ ଜଣେ ବଂଧୁକଧାରୀ ପୋଲିସ୍ ଆମେ ଦେଖୁଥିଲୁ । ଖୁବ୍ ଡେଙ୍ଗା ଓ ସ୍ୱାସ୍ଥ୍ୟବାନ ମଣିଷଟିଏ ଥିଲେ ବିଧାନ ବାବୁ । ସେ ବିବାହ କରିନଥିଲେ । ସେ ସମୟରେ କଲିକତାରେ ୪ଟି ବ୍ୟବସାୟିକ ରଙ୍ଗମଞ୍ଚ ଥିଲା । ସବୁଗୁଡ଼ିକ ଉତ୍ତର କଲିକତାରେ । ରଙ୍ଗମହଲ, ଷ୍ଟାର ଓ ମିନର୍ଭା ପୁରୁଣା ରଙ୍ଗମଞ୍ଚ । ବିଶ୍ୱରୂପା ରଙ୍ଗମଞ୍ଚ ଥିଲା ନୂତନ ସୃଷ୍ଟି । ଏହି ସବୁ ମଞ୍ଚରେ ସପ୍ତାହରେ ମାତ୍ର ତିନିଦିନ ନାଟକ ମଞ୍ଚସ୍ଥ ହେଉଥିଲା । ସେ ଦିନଗୁଡ଼ିକ ହେଲା ଗୁରୁବାର, ଶନିବାର ଓ ରବିବାର । ଏହି ସବୁ ଅଭିନୀତ

ହେଉଥିବା ନାଟକ ଦେଖିବାକୁ ରେବତୀ ଓ ମୁଁ ଯାଉଥିଲୁ । ଷ୍ଟାର୍ ଥିଏଟରେ ଅଭିନୀତ "ଅଙ୍ଗାର" ନାଟକ ବର୍ଷାଧିକ କାଳ ଚାଲିଥିଲା । ଏ ନାଟକ ଦେଖିବାକୁ ଆମେ ଚାରିଥର ଯାଇଥିଲୁ । ଏକ କୋଇଲା ଖଣି ଓ ଏହାର ଶ୍ରମିକଙ୍କୁ ନେଇ ଏହି ନାଟକଟି ରଚିତ ହୋଇଥିଲା । ଏହାର ମଞ୍ଚ ଶୈଳୀ ଓ ସେ ସମୟର ପ୍ରସିଦ୍ଧ ଅଭିନେତା ଓ ଅଭିନେତ୍ରୀମାନଙ୍କର ନିଖୁଣ ଅଭିନୟ ଦର୍ଶକଦର୍ଶିକାମାନଙ୍କୁ ବିମୋହିତ କରୁଥିଲା । କୋଇଲାଖଣି ଭିତରକୁ ଜଳପ୍ରବେଶର ଦୃଶ୍ୟ ଓ ଖଣି ଭିତରେ ଜଳ ବଢୁଥିବାର ଦୃଶ୍ୟ ସହିତ ଅଭିନେତାଙ୍କର ଜଳବୃଦ୍ଧି ଯୋଗୁ ଜଳ ଭିତରେ କ୍ରମଶଃ ଅଦୃଶ୍ୟ ହୋଇଯିବାର ଦୃଶ୍ୟ ଚମତ୍କାର ଭାବରେ ପ୍ରଦର୍ଶିତ ହେଉଥିଲା । ଏ ନାଟକ ମୋତେ ଏତେ ମୁଗ୍ଧ କରିଥିଲା ଯେ ମୁଁ କଲେଜଷ୍ଟ୍ରୀଟ୍‌ର ବହି ଦୋକାନରୁ ଏ ନାଟକ ଖଣ୍ଡିଏ କିଣିଥିଲି । ସେ ନାଟକ ଏବେ ମଧ୍ୟ ମୁଁ ପଢ଼େ ଓ ପଢ଼ିବାବେଳେ ସେହି ଦୃଶ୍ୟସବୁ ମୋ ଆଖି ଆଗରେ ନାଚିଯାଏ ।

କଲିକତାରେ ଅନେକ ଦର୍ଶନୀୟ ସ୍ଥାନ ରହିଛି । ତନ୍ମଧ୍ୟରୁ କାଳୀଘାଟର କାଳୀମନ୍ଦିର ଅନ୍ୟତମ । ପ୍ରତ୍ୟେକ ଦିନ ଶହ ଶହ ଭକ୍ତ ପୂଜା କରିବାକୁ ସେଠାକୁ ଯାଆନ୍ତି । ମୁଁ ବି କେତେଥର ଯାଇଛି । ସେତେବେଳେ ସେଠାକାର ପୂଜକସବୁ ଥିଲେ ଓଡ଼ିଆ ।

ଦକ୍ଷିଣେଶ୍ୱର କାଳୀମନ୍ଦିର ଅନ୍ୟ ଏକ ପ୍ରସିଦ୍ଧ ଦେବୀପୀଠ । ରାମକୃଷ୍ଣ ପରମହଂସ ଏହିଠାରେ ହିଁ କାଳୀସାଧନା କରି ସିଦ୍ଧିଲାଭ କରିଥିଲେ । ଏହା ହୁଗୁଳୀ ନଦୀ କୂଳରେ ଅବସ୍ଥିତ । ନଦୀର ଅପର ପାର୍ଶ୍ୱରେ ବେଲୁଡ଼ ମଠ ଯାହା ସହିତ ସ୍ୱାମୀ ବିବେକାନନ୍ଦଙ୍କ ସଂପର୍କ ଥିଲା । ତାଙ୍କୁ ବିଶ୍ୱବିଖ୍ୟାତ କରିବାରେ ଏହି ମଠର ଅବଦାନ ଅନେକ ଥିଲା ।

ଆମେ ରହୁଥିବା ହଷ୍ଟେଲଠୁ ଅଳ୍ପ ଦୂରରେ ମୁସଲମାନଙ୍କର ଆରାଧନା ପୀଠ ନାକୋଦା ମସ୍‌ଜିଦ୍ ରହିଅଛି । ଏହି ଦିଲ୍ଲୀର ଜୁମା ମସ୍‌ଜିଦ ଭଳି ପ୍ରାଚୀନ ଏବଂ ବିରାଟ । ଥରେ ମୁଁ ଓ ରେବତୀ ସେଠାକୁ ଯାଇଥିଲୁ ଓ ମୁଣ୍ଡରେ ରୁମାଲ ବାନ୍ଧି ପ୍ରାର୍ଥନାରେ ଯୋଗ ଦେଇଥିଲୁ ।

ହାଓଡ଼ାପାଖ ଗଙ୍ଗାନଦୀର ଶାଖାନଦୀ ହୁଗୁଳିର ଝୁଲନ୍ତା ପୋଲ, ଭିକ୍ଟୋରିଆ ମେମୋରିଏଲ, ମିଉଜିୟମ୍, ଆଲିପୁର ଚିଡ଼ିଆଖାନା, ଖିଦିରପୁର ଡକ୍, ବାଲିଗଞ୍ଜ କୃତ୍ରିମ ହ୍ରଦ, ଚୌରଙ୍ଗୀ ମନୁମେଣ୍ଟ, ଇଡ଼େନ୍ ଗାର୍ଡ଼ନ, ରବୀନ୍ଦ୍ରନାଥ ଠାକୁରଙ୍କ ଘର ପ୍ରଭୃତି କଲିକତାର ଆକର୍ଷଣୀୟ ସ୍ଥାନ ।

କଲିକତା ମହାନଗରୀ ଇଂରେଜମାନଙ୍କର ଅବଦାନ । ଏଠାରେ ଟ୍ରାମ୍ ଚଳପ୍ରଚଳ କରେ । ଏହି ଟ୍ରାମ୍‌ରେ ବସିଲେ ଛୋଟିଆ ଟ୍ରେନ୍‌ରେ ବସିବା ଭଳି ଲାଗେ ।

ଏବର ରାଜଭବନ ଦିନେ ଭାରତବର୍ଷର ବଡ଼ଲାଟଙ୍କର ବାସଭବନ ଥିଲା । ମନ୍ତ୍ରୀମାନେ ବସୁଥିବା ରାଇଟର୍ସ ବିଲ୍‌ଡ଼ିଂ ମଧ୍ୟ ଇଂରେଜ ଶାସନ କାଳରେ । କଲିକତା ବିଶ୍ୱବିଦ୍ୟାଳୟ, ହାଡ଼ିଞ୍ଜ ହଷ୍ଟେଲ୍, ପ୍ରେସିଡେନ୍‌ସୀ କଲେଜ, ହିନ୍ଦୁ ହଷ୍ଟେଲ୍, ବେଥୁନ୍ କଲେଜ, ରିପନ୍ କଲେଜ, ମେଡ଼ିକାଲ୍ କଲେଜ, କଲିକତା ହାଇକୋର୍ଟ, ଖିଦିରପୁର ପୋତାଶ୍ରୟ, ମିଉଜିଅମ୍ ପ୍ରଭୃତି ସେହିମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ବହୁରାସ୍ତା ଯଥା ହରିସନ୍ ରୋଡ଼, କେନିଷ୍ଟ୍ରୀଟ୍, ଆମର୍ହଷ୍ଟ ଷ୍ଟ୍ରୀଟ୍ ସବୁ ତାଙ୍କରି ନାମରେ ନାମିତ ହୋଇଥିଲା । କଲିକତା ବକ୍ଷରେ ହିଁ ପଲାସୀ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । ବଙ୍ଗଳାର ନବାନ୍ ସିରାଜଦୌଲାଙ୍କୁ ଏହି ରଣକ୍ଷେତ୍ରରେ ପରାଜିତ କରି ଇଂରେଜମାନେ ବଙ୍ଗଳା ଅଧିକାର କରିଥିଲେ । ଇଂରେଜ ଶାସନର ବହୁ ସ୍ମୃତି କଲିକତା ମହାନଗରୀରେ ହିଁ ରହିଛି ।

ମୁଁ ପଞ୍ଚମ ବର୍ଷର ଦର୍ଶନ ପରୀକ୍ଷା ଦେଇଥିଲି । କିନ୍ତୁ ଷଷ୍ଠ ବର୍ଷର ପରୀକ୍ଷା ଆଉ ଦେଲି ନାହିଁ । ୧୯୫୧ ମସିହାରେ ଏଲ୍.ଏଲ୍.ବି ଶେଷ ପରୀକ୍ଷା ଦେଇ ସବୁଦିନ ପାଇଁ କଲିକତାରୁ ବିଦାୟ ନେଇ ଚାଲି ଆସିଲି । ଆସିବାବେଳେ ମନେ ପଡୁଥିଲା ରବିଠାକୁର ଲେଖିଥିବା :-

"ଯଦି ତୋର ଡାକ୍ ଶୋନେ କେଉ ନା ଆସେ
ତବେ ଏକ୍‌ଲା ଚଲୋ ରେ.... ।।

ଏଇ ପଂକ୍ତିକୁ ମନ ଭିତରେ ସାଇତି ରଖି ଜୀବନର ଚଲାପଥରେ ଆଗେଇ ଚାଲିଲି ।



# ବାଲେଶ୍ୱରରେ ଓକାଲତି

କଲିକତା ଛାଡ଼ି ଆସିବା ପରେ ଗାଆଁ ଘର, ଶ୍ୱଶୁର ଘର ଏମିତି ହେଉ ହେଉ ପରୀକ୍ଷାଫଳ ବାହାରିଲା । ମୁଁ ୧୯୫୨ ମସିହାରେ ବାଲେଶ୍ୱରରେ ଓକାଲତି ଆରମ୍ଭ କଲି ।

ବାଲେଶ୍ୱର ଏକ ପୁରାତନ ସହର । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଦଖଲ କରିବାପରେ ବାଲେଶ୍ୱର ମଧ୍ୟ ଇଂରେଜମାନଙ୍କ ଶାସନାଧୀନ ହେଲା । ମାତ୍ର ତା' ପୂର୍ବରୁ ୧୬୩୩ ମସିହାରେ ଇଂଲଣ୍ଡର ଇଷ୍ଟଇଣ୍ଡିଆ କମ୍ପାନୀ ବାଲେଶ୍ୱରରେ ବ୍ୟବସାୟ ଆରମ୍ଭ କରିଥିଲେ । କେବଳ ଇଂରେଜ ନୁହନ୍ତି ପର୍ତ୍ତୁଗୀଜ, ଓଲନ୍ଦାଜ, ଡିନାମାର ଓ ଫରାସୀମାନେ ମଧ୍ୟ ବାଲେଶ୍ୱରରେ ବସତି ସ୍ଥାପନ କରିଥିଲେ। ସେମାନଙ୍କ ବସତିରେ ଚିହ୍ନ ଆଜି ବି ରହିଅଛି । ଓଲନ୍ଦାଜ ସାହି, ଡିନାମାର ଡିଙ୍ଗା, ଫରାସୀ ଡିଙ୍ଗା ପ୍ରଭୃତି ତାର ପ୍ରମାଣ । "ଡିଙ୍ଗା" ଶବ୍ଦର ଅର୍ଥ ହେଉଛି ଅଧିକୃତ ସ୍ଥାନ । ବାଲେଶ୍ୱର ଥିଲା ଲୁଣ ବ୍ୟବସାୟର ଏକ ପ୍ରଧାନ କେନ୍ଦ୍ର । ବୁଢ଼ାବଳଙ୍ଗ ନଦୀର ପରମିଟ ଘାଟକୁ ଜାହାଜମାନ ମଧ୍ୟ ଆସୁଥିଲା ।

ମୁଁ ଓକାଲତି ଆରମ୍ଭ କଲାବେଳକୁ ବାଲେଶ୍ୱରର ବୟୋଜ୍ୟେଷ୍ଠ ଓ ପ୍ରବୀଣ ଓକିଲମାନେ ଥିଲେ ବଙ୍ଗାଳୀ । ସେମାନେ ହେଲେ ଉପେନ୍ଦ୍ରନାଥ ଘୋଷ, ଚାରୁଚନ୍ଦ୍ର ରାୟ, ବରେନ୍ଦ୍ରନାଥ ଘୋଷ, ଆଶୁତୋଷ ଘୋଷ ପ୍ରମୁଖ ।

ସେମାନଙ୍କଠାରୁ ସାମାନ୍ୟ କନିଷ୍ଠ କିନ୍ତୁ ପ୍ରବୀଣ ଓଡ଼ିଆ ଓକିଲମାନେ ଥିଲେ ସଙ୍କର୍ଷଣ ମହାନ୍ତି, କୃଷ୍ଣ ପ୍ରସାଦ ମହାନ୍ତି, ପୀତାମ୍ବର ପଣ୍ଡା, ନବକୁମାର ଦାସ, ରାଧାମୋହନ ରଣା ପ୍ରମୁଖ ।

ସେତେବେଳେ ମୋ'ଠାରୁ ବରିଷ୍ଠ ଓକିଲ ଯେଉଁମାନେ ଥିଲେ ସେମାନେ ହେଲେ ଜ୍ଞାନରଂଜନ ପଟ୍ଟନାୟକ, ବାରୀଶ୍‌ଚନ୍ଦ୍ର ରାୟ, କିଶୋରୀମୋହନ ଦାସ,

ରବୀନ୍ଦ୍ରନାଥ ସରକାର, ପ୍ରିୟନାଥ ନନ୍ଦୀ, ଗଜେନ୍ଦ୍ର ପ୍ରସାଦ ଦାଶ, ଅମରେଶ ରାୟ, କରୁଣାକର ଦାସ, ହରପ୍ରସାଦ ମହାପାତ୍ର ।

ମୋର ସମସାମୟିକ ବା ସାମାନ୍ୟ ଏ ପାଖ ସେ ପାଖର ଓକିଲମାନେ ହେଲେ - ଭବେଶଚନ୍ଦ୍ର ରାୟ, ଯୋଗେଶଚନ୍ଦ୍ର ଦାସ, ମୁନୀନ୍ଦ୍ରନାଥ ଘୋଷ, ଇନ୍ଦୁଭୂଷଣ ଦାସପଟ୍ଟନାୟକ, ସନ୍ୟାସୀ ନନ୍ଦ, ଜଗନ୍ନାଥ ପ୍ରସାଦ, ରବୀନ୍ଦ୍ର ନାଥ ମିଶ୍ର, ହରିହର ବାରିକ, ଶରତଚନ୍ଦ୍ର ରଣା, ହରିଚରଣ ପଣ୍ଡା, ରାଜକିଶୋର ମହାନ୍ତି, ଶମ୍ଭୁନାଥ ମହାନ୍ତି, ମହେନ୍ଦ୍ରପ୍ରସାଦ ପଣ୍ଡା, ଗୋପାଳ ମହାପାତ୍ର, ଶରତ ମହାପାତ୍ର, ଚକ୍ରଧର ରାଉତ, ସତ୍ୟନାରାୟଣ ମହାନ୍ତି ପ୍ରମୁଖ । ସେ ସମୟରେ ଭବେଶଚନ୍ଦ୍ର ରାୟଙ୍କର ଅକାଳ ବିୟୋଗ ହୋଇଥିଲା । ଶୋଭେଶ୍‌ଚନ୍ଦ୍ର ରାୟ ଥିଲେ ତାଙ୍କ ସାନଭାଇ । ସେ କଟକରେ ଓକାଲତି କରୁଥିଲେ ।

ସେତେବେଳେ ଓକିଲମାନେ ଦେଓ୍ୱାନି ଓ ଫଉଜଦାରି ଉଭୟ ମୋକଦ୍ଦମା ଲଢ଼ିପାରୁଥିଲେ। ଆଉ କିଛି ଥିଲେ, ସେମାନଙ୍କୁ କୁହାଯାଉଥିଲା ମୋକ୍ତାର । ସେମାନେ କେବଳ ଫଉଜଦାରି ମୋକଦ୍ଦମା ଲଢୁଥିଲେ। ମୋ' ବେଳର ମୋକ୍ତାରମାନେ ହେଲେ ମୁକୁନ୍ଦ ପ୍ରସାଦ ଦାସ (ଯେ' ବାଚସ୍ପତି ହୋଇଥିଲେ) ଶେଖ୍ ଅବଦୁଲ୍ ଜବ୍‌ବାର, ମଧୁସୂଦନ ରାୟ, ନିରଞ୍ଜନ ପଣ୍ଡା, ଅଚ୍ୟୁତନନ୍ଦ ଦାସ ପ୍ରମୁଖ । ପରବର୍ତ୍ତୀ କାଳରେ ଓକିଲ ଓ ମୋକ୍ତାର ଏଭଳି ପ୍ରଭେଦ ରହିଲା ନାହିଁ, ଏ ଭଳି ନାମ ମଧ୍ୟ ରହିଲା ନାହିଁ । ସମସ୍ତଙ୍କୁ ଏଡ଼ଭୋକେଟ୍ କରିଦିଆଗଲା ଏବଂ ମୋକ୍ତାରି ପାଠ୍ୟକ୍ରମର ଉଚ୍ଛେଦ ହେଲା ।

ସେତେବେଳେ ସବ୍‌ଡ଼େପୁଟୀ କଲେକ୍‌ଟର ଓ ଡେପୁଟୀ କଲେକ୍ଟରମାନେ ଫଉଜଦାରି ଅର୍ଥାତ୍ ମାଡ଼ପିଟ୍, ଦଙ୍ଗାହଙ୍ଗାମା, ଚୋରି ଆଦି ମୋକଦ୍ଦମାମାନ ବିଚାର କରୁଥିଲେ । ହତ୍ୟା, ଡକାୟତି ପ୍ରଭୃତି ମାମଲା ଜିଲ୍ଲାଜଜ୍ ବା ସେସନ୍‌ସ ଜଜ୍ ବିଚାର କରୁଥିଲେ। ମୁନ୍‌ସିଫ୍ ଓ ସବ୍‌ଜଜ୍‌ମାନେ ଦେଓ୍ୱାନି ମୋକଦ୍ଦମା ଅର୍ଥାତ୍ ଜମିଜମା ସଂପର୍କୀୟ ମୋକଦ୍ଦମାମାନ ବିଚାର କରୁଥିଲେ। ସେମାନଙ୍କ ରାୟ ବିରୁଦ୍ଧରେ ଜିଲ୍ଲାଜଜଙ୍କ ପାଖରେ ଅପିଲ୍ କରାଯାଉଥିଲା । ସବ୍‌ଜଜ୍‌ମାନେ ମଧ୍ୟ ଏସିଷ୍ଟାଣ୍ଟ ସେସନ୍‌ସଜଜ୍ କ୍ଷମତା ପାଉଥିଲେ ଓ କିଛି ଫଉଜଦାରି ମୋକଦ୍ଦମାର ଶୁଣାଣି କରୁଥିଲେ ।

ମୁଁ କୃଷ୍ଣପ୍ରସାଦ ମହାନ୍ତିଙ୍କ ଜୁନିୟର୍ ଭାବରେ ମୋର ଓକାଲତି ଜୀବନ ଆରମ୍ଭ କରିଥିଲି । ଓକିଲ ଭାବରେ ମୁଁ ଉଭୟ ଦେଓ୍ୱାନି ଓ ଫଉଜଦାରି ମୋକଦ୍ଦମା

ଯଦିଓ କରୁଥିଲି, କିନ୍ତୁ ମୋର ଅଧିକ ଆଗ୍ରହ ଥିଲା ଦେଓ୍ୟାନି ମୋକଦ୍ଦମା ପ୍ରତି । ସଙ୍କର୍ଷଣ ମହାନ୍ତି ଥିଲେ ବିଶିଷ୍ଟ ଦେଓ୍ୟାନି ଓକିଲ । ଫଉଜଦାରି ମୋକଦ୍ଦମା ସେ କରୁନଥିଲେ। ତାଙ୍କ ଅଧୀନରେ ଓକାଲତି କରୁଥିଲେ କିଶୋରୀ ମୋହନ ଦାସ । କିଶୋରୀ ବାବୁ ବିବାହ କରି ନଥିଲେ । ମୁଁ ଲେଖିଥିବା ଦେଓ୍ୟାନି ମୋକଦ୍ଦମାର ଅର୍ଜି ଓ ଜବାବର ଚିଠା ବେଳେବେଳେ ସଙ୍କର୍ଷଣ ବାବୁଙ୍କୁ ଦେଖେଇ ସଂଶୋଧନ କରି ଆଣୁଥିଲେ । ମୋ ଚିଠାକୁ ସେ ଭାରି ପସନ୍ଦ କରୁଥିଲେ ।

ନୂଆ ବଜାରର ଝାଡ଼େଶ୍ୱର ଲେନ୍‌ରେ ମୁଁ, ହରପ୍ରସାଦ ମହାପାତ୍ର ଓ ଯୋଗେଶ ଚନ୍ଦ୍ର ଦାସ ଘରଭଡ଼ା ନେଇ ରହୁଥିଲୁ । କଚେରିରୁ ଫେରି ଆମେ ତିନିଜଣ ସୂର୍ଯ୍ୟାସ୍ତ ପୂର୍ବରୁ ବୁଲିବାକୁ ଯାଉଥିଲୁ । ଅରଡ଼ବଜାର ପାର୍ ହୋଇ ଲୁଣିଆ ଯୋଡ଼ି ପର୍ଯ୍ୟନ୍ତ ପ୍ରାୟ ଯାଉଥିଲୁ । ବେଳେବେଳେ ଗଜେନ୍ଦ୍ର ପ୍ରସାଦ ଦାଶ ସହଦେବ ଖୁଣ୍ଟାରୁ ଆସି ଆମ ସହିତ ଯାଉଥିଲେ। ଗଜେନ୍ଦ୍ର ବାବୁ ଥିଲେ ମୋର ଦୂର ସଂପର୍କୀୟ ବଂଧୁ ।

ମୋର ମୋହରିର ଥିଲେ ଗୋପାଳ ଚନ୍ଦ୍ର ସିଂହ । ତାଙ୍କ ଘର ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିର ନିକଟରେ । ମୋର ପସନ୍ଦ ଯୋଗ୍ୟ ଯୁବକଟିଏ । ମକ୍କେଲମାନଙ୍କୁ କେବେ ସେ ହଇରାଣ କରିବାର ମୁଁ ଜାଣିନାହିଁ ।

୧୯୪୦ ମସିହାରୁ ଦେଓ୍ୟାନି ଅଦାଲତ ପରିସରରେ ସରସ୍ୱତୀ ପୂଜା ହୋଇ ଆସୁଥିଲା । ଓକିଲ ଓ ଦେଓ୍ୟାନି ଅଦାଲତର କର୍ମଚାରୀମାନଙ୍କ ମିଳିତ ସହଯୋଗରେ ଏହା ହେଉଥିଲା । ମୋର ଓକିଲ ଜୀବନ କେବଳ ଓକାଲତି କରିବାରେ ସୀମିତ ନଥିଲା । ସାହିତ୍ୟ, କଳା, ବ୍ୟବସାୟର ପରିଧି ଭିତରେ କିଛି ସମୟ ମୋତେ ବିତେଇବାକୁ ପଡୁଥିଲା ।



# ଫକୀର ମୋହନ ସାହିତ୍ୟ ପରିଷଦ

୧୯୪୮ ମସିହାରେ ଆରମ୍ଭ ହୋଇଥିଲା ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଜନ୍ମସ୍ଥାନ ବାଲେଶ୍ୱରଠାରେ ଫକୀର ମୋହନ ସାହିତ୍ୟ ପରିଷଦ । ଏହାର ପ୍ରଥମ ସଭାପତି ଥିଲେ ସେତେବେଳେ ବାଲେଶ୍ୱର କଲେଜରେ ଅଧ୍ୟାପକ ଥିବା ଡ. କୁଞ୍ଜ ବିହାରୀ ଦାଶ ।୧୯୫୨ ମସିହାରେ ବାଲେଶ୍ୱରରେ ଓକାଲତି ଆରମ୍ଭ କଲାପରେ ମୁଁ ଏହା ସହିତ ନିବିଡ଼ ସଂପର୍କରେ ଆସିଲି । ସେତେବେଳେ ଟାଉନ୍‌ହଲ୍ ପରିସରରେ ଏହାର ଅଫିସ୍‌ଟିଏ ଥିଲା । ପରବର୍ତ୍ତୀ ସମୟରେ ଏହା ବାଲେଶ୍ୱରର ବହୁବ୍ୟକ୍ତିଙ୍କୁ ଆକୃଷ୍ଟ କରିପାରିଥିଲା । ମୁଁ ଦୁଇଥର ଏହାର ସଭାପତି ହୋଇଥିଲି । ବହୁ ପ୍ରତିଷ୍ଠିତ ବ୍ୟକ୍ତି ଏହାର ସଭାପତି ଓ ସଂପାଦକ ଦାୟିତ୍ୱ ତୁଲାଇଛନ୍ତି । ଶାନ୍ତି କାନନରେ ଥିବା ଫକୀରମୋହନଙ୍କ ପୂର୍ଣ୍ଣାବୟବ ମୂର୍ତ୍ତିଟି ସେ ନିଜେ ତିଆରି କରାଇଥିଲେ । ମୁଁ ସେଠାକୁ ଯେତେବେଳେ ଯାଏ, ପ୍ରଥମେ ଏଇ ପ୍ରତିମୂର୍ତ୍ତିକୁ ପ୍ରଣାମ କରେ ଏବଂ ତା' ପରେ ଯାଇ ସେ ନିର୍ମାଣ କରିଥିବା ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ନିକଟରେ ବସେ । ଏବେ ସେ' ଦିନର କଥା କିଛି ମନେ ପଡୁଛି ।

ଫକୀର ମୋହନଙ୍କୁ କେଉଁ ସ୍ଥାନରେ ଦାହ କରାଯାଇଥିଲା ତାହା ନିରୂପଣ କରିବାପରେ ମୁଁ ଛତୁଆ ଶ୍ମଶାନକୁ ଯାଇଥିଲି, ମାତ୍ର ପାଖରେ ବାସିନ୍ଦାମାନେ କେହି କିଛି କହିପାରିଲେ ନାହିଁ । ଶେଷରେ ଜଣେ ବୃଦ୍ଧ ଆସି ଗୋଟାଏ ଜାଗାକୁ ଦେଖାଇ କହିଥିଲେ- "ଆମେ ଶୁଣିଚୁ ଏଇ ଜାଗାରେ ତାଙ୍କୁ ପୋଡ଼ା ଯାଇଥିଲା ।"

ସେ' ଏଭଳି ଭାବରେ କହିଥିଲେ ଯେ ତାଙ୍କ କଥାକୁ ବିଶ୍ୱାସ କରିହେଲା ନାହିଁ । ଇଚ୍ଛା ଥିଲା ଦାହସ୍ଥାନ ନିଶ୍ଚିତ ଭାବରେ ଚିହ୍ନଟ କରାଯାଇ ପାରିଥିଲେ, ସେଠାରେ ତାଙ୍କର ସମାଧି ନିର୍ମାଣ କରାଯାଇ ପାରିଥାନ୍ତା । ତେଣୁ ସେତେବେଳେ

ପରିକଳ୍ପିତ ସମାଧି ତିଆରି କରିବା ସମ୍ଭବ ହୋଇପାରିନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ଡ. ଲକ୍ଷ୍ମୀକାନ୍ତ ତ୍ରିପାଠୀ, ସଂପାଦକ ନିବାରଣ ଜେନା ଓ କୋଷାଧ୍ୟକ୍ଷ ରାଜ୍ୟସଭା ସାଂସଦ ମନ୍ମଥ ନାଥ ଦାସଙ୍କ ଆର୍ଥିକ ସହାୟତାରେ ଏକ ସୁନ୍ଦର ସମାଧି "ଶାନ୍ତିଘାଟ" ନିର୍ମାଣ କରାଯାଇଛି ।

୧୯୭୪ ମସିହାରେ ମୁଁ ଶିକ୍ଷା ଓ ସଂସ୍କୃତି ବିଭାଗ ମନ୍ତ୍ରୀ ଥିବାବେଳେ ମଲ୍ଲିକାଶପୁରସ୍ଥ ତାଙ୍କ ବାସଭବନକୁ ସରକାରଙ୍କ ତରଫରୁ ଅଧିଗ୍ରହଣ କରାଯିବାର ନିଷତ୍ତି ନିଆଗଲା । ସେତେବେଳେ ବାଲେଶ୍ୱର ଜିଲ୍ଲାପାଳ ଥିଲେ ରବୀନ୍ଦ୍ର ମୋହନ ସେନାପତି । ସେ ହେଉଛନ୍ତି ଫକୀରମୋହନଙ୍କ ଭାଇଙ୍କ ନାତି ଅଧିରାଜ ମୋହନ ସେନାପତିଙ୍କ ପୁଅ । ଫକୀରମୋହନଙ୍କ ପୁଅ ମୋହିନୀମୋହନ ସେନାପତିଙ୍କର ପୁତ୍ର ସନ୍ତାନ ନଥିଲେ। ତାଙ୍କର ଏକମାତ୍ର କନ୍ୟା ବୀଣାଦେବୀ ଥିଲେ ଜଣେ ଶିକ୍ଷୟତ୍ରୀ ଏବଂ ବିବାହ କରିଥିଲେ କାଶୀନାଥ ମିଶ୍ରଙ୍କୁ । ଏ ଘରର ମାଲିକାଣୀ ଥିଲେ ବୀଣାଦେବୀ । ଏ ଘରର ମୂଲ୍ୟ ବାବଦକୁ ସରକାର ଯେତିକି ଅର୍ଥ ଧାର୍ଯ୍ୟ କରିଥିଲେ ତାହା କମ୍ ହୋଇଯାଇଚି ବୋଲି ବୀଣାଦେବୀ ଓ ତାଙ୍କ ସ୍ୱାମୀ ସଚିବାଳୟକୁ ଆସି ମୋତେ କହିଥିଲେ ।

ମୁଁ ତାଙ୍କୁ କହିଥିଲି - "ଫକୀରମୋହନଙ୍କ ସ୍ମୃତିରକ୍ଷା ପାଇଁ ବାଲେଶ୍ୱର ଜିଲ୍ଲାପାଳ ଯେ' କି ଆପଣଙ୍କର ନାତି ସଂପର୍କୀୟ ହେବେ, ତାଙ୍କରି ଜରିଆରେ ସରକାର ଏହାକୁ ଅଧିଗ୍ରହଣ କରୁଛନ୍ତି । ଜିଲ୍ଲାପାଳ ମୂଲ୍ୟ ନିର୍ଦ୍ଧାରଣ କରିଛନ୍ତି । ତେଣୁ ଆପଣ ଆପତ୍ତି ଉଠାନ୍ତୁ ନାହିଁ ।"

ସେ କିନ୍ତୁ ମୋ କଥା ମାନି ନଥିଲେ। ମୋ'ଠାରୁ ଫେରିଯାଇ ଅଦାଲତରେ ମୋକଦ୍ଦମା କରିଥିଲେ। ଅବଶ୍ୟ ପରେ ତାଙ୍କୁ ବୁଝାବୁଝି କରି ନିର୍ଦ୍ଧାରିତ ମୂଲ୍ୟଠାରୁ କିଛି ଅଧିକା ଦିଆଯାଇଥିଲା । ସେ ମୋକଦ୍ଦମାକୁ ପ୍ରତ୍ୟାହାର କରିନେଇଥିଲେ। ତା'ପରେ ସରକାର ଗୃହକୁ ଅଧିଗ୍ରହଣ କରିଥିଲେ ।

ପରବର୍ତ୍ତୀ ସମୟରେ ମୋ'ରି ମନ୍ତ୍ରିତ୍ୱ କାଳରେ ମୁଁ ଆରମ୍ଭ କରିଥିଲି ବିଭିନ୍ନ ସ୍ଥାନରେ ଗ୍ରନ୍ଥାଗାର ପ୍ରତିଷ୍ଠା ପାଇଁ ପାଠାଗାର ଆନ୍ଦୋଳନ । ସରସ୍ୱତୀ ପୂଜାଠାରୁ ୭ ଦିନ ଧାଇଁ ବିଭିନ୍ନ ସ୍କୁଲ୍ କଲେଜମାନଙ୍କରେ ପୁସ୍ତକ ପ୍ରଦର୍ଶନୀମାନ କରାଯାଉଥିଲା । ସେତେବେଳେ ବାଲେଶ୍ୱରର ଲୋକସଂପର୍କ ଅଧିକାରୀ ଥିଲେ

ସ୍ୱାଧୀନତା ସଂଗ୍ରାମୀ ପୀତାମ୍ବର ପାଣି । ସେହି ସମୟରେ ଶାନ୍ତିକାନନରେ ପାଠାଗାର ପ୍ରତିଷ୍ଠା ହୋଇଥିଲା ।

୧୯୯୮ ମସିହାରେ ଫକୀରମୋହନଙ୍କ ୧୫୬ତମ ଜୟନ୍ତୀ ତଥା ପରିଷଦର ସୁବର୍ଣ୍ଣ ଜୟନ୍ତୀରେ ପରିଷଦର ପୂର୍ବତନ ସଭାପତି ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଚିନ୍ତାମଣି ବେହେରା ଓ ମୋତେ ମାନପତ୍ର ଦେଇ ପରିଷଦ ସମ୍ବର୍ଦ୍ଧିତ କରିଥିଲା । ୨୦୦୪ ମସିହାରେ ପରିଷଦ ନିଷ୍ପତ୍ତି କରିଥିଲା ପ୍ରତିବର୍ଷ ଜଣକୁ "ପରିଷଦ ଗୌରବ" ସମ୍ମାନ ପ୍ରଦାନ କରାଯିବ ଏବଂ ସେହି ବର୍ଷ ପରିଷଦ ମୋତେ ଏହି ସମ୍ମାନରେ ସମ୍ମାନିତ କରିଥିଲା ।



# ନୃତ୍ୟସଙ୍ଗୀତ କଳାମନ୍ଦିର

୧୯୫୬ ମସିହାରେ ମୁଁ ଓ ମୋର କିଛି ବୟୋଜ୍ୟେଷ୍ଠ ଓ କନିଷ୍ଠ ବନ୍ଧୁଙ୍କ ଦ୍ୱାରା ବାଲେଶ୍ୱରରେ ପ୍ରତିଷ୍ଠା କରାଯାଇଥିଲା "ନୃତ୍ୟ ସଂଗୀତ କଳାମନ୍ଦିର" । ଏହି ଅନୁଷ୍ଠାନ ସହିତ ସହରର ବହୁ ବୁଦ୍ଧିଜୀବୀ ସଂପୃକ୍ତ ଥିଲେ । ଏହାର ପ୍ରଥମ ସଭାପତି ଥିଲେ ତତ୍‌କାଳୀନ ବାଲେଶ୍ୱର ମ୍ୟୁନିସିପାଲିଟିର ଚେୟାରମେନ୍ ଜ୍ଞାନରଂଜନ ପଟ୍ଟନାୟକ । ସଂପାଦକ ଥିଲୁ ମୁଁ ଓ ଏଡ଼ଭୋକେଟ ହର ପ୍ରସାଦ ମହାପାତ୍ର । କୃଷ୍ଣ ପ୍ରସାଦ ମହାନ୍ତି, ସନ୍ୟାସୀ କୁମାର ନନ୍ଦ, ଯୋଗେଶଚନ୍ଦ୍ର ଦାସ, ରାଜକିଶୋର ମହାନ୍ତି, ରମାନାଥ ମହାପାତ୍ର ପ୍ରମୁଖ । (ଏମାନେ ସମସ୍ତେ ଏଡ଼ଭୋକେଟ) ନିୟମିତ ଭାବରେ ଏଠାକୁ ଆସୁଥିଲେ ଓ ପରବର୍ତ୍ତୀ କାଳରେ ଏହି ଅନୁଷ୍ଠାନର ବିଭିନ୍ନ ପଦବୀରେ ରହିଥିଲେ। ସହରର କିଛି ଅଗ୍ରଗଣ୍ୟ ମହିଳା ଶୈଳରାଣୀ ଦାସ, ସରୋଜିନୀ ପାଣିଗ୍ରାହୀ, ଶିଶିର କୁମାରୀ ପଟ୍ଟନାୟକ, ଲକ୍ଷ୍ମୀପ୍ରିୟା ଦାଶ ମହାପାତ୍ର ପ୍ରମୁଖ ନିୟମିତ ଭାବରେ ଏହି ଅନୁଷ୍ଠାନକୁ ଆସୁଥିଲେ। ଏହା ଟାଉନ୍ ହଲ୍ ପରିସରରେ ଆରମ୍ଭ ହୋଇଥିଲା । ପରେ ଅବଶ୍ୟ ସେହି ପରିସରରେ ଏହାର ସ୍ୱତନ୍ତ୍ର ଗୃହ ନିର୍ମିତ ହୋଇଥିଲା ।

ଏହି ଅନୁଷ୍ଠାନର ପ୍ରଥମ ଅଧକ୍ଷ ଥିଲେ ଗୋପାଳଗାଁ ନିବାସୀ ସଂଗୀତଜ୍ଞ ତଥା ସଂଗୀତଗୁରୁ ସୁକୁମାର ସାହୁ । ଅନ୍ୟଶିକ୍ଷକମାନେ ଥିଲେ ରାମଚନ୍ଦ୍ର ମହାପାତ୍ର, ଶ୍ରୀଧରନାଥ ଶର୍ମା, ଅଧରନାଥ ଶର୍ମା, ରମଣୀ ରଂଜନ ଜେନା ପ୍ରମୁଖ । ସପ୍ତାହରେ ଦୁଇଦିନ ଶନିବାର ଉପରଓଳି ଓ ରବିବାର ଦୁଇଓଳି କ୍ଲାସ୍ ହେଉଥିଲା । ନୃତ୍ୟ, ସଂଗୀତ, ତବଲା ପ୍ରଭୃତି ଶିକ୍ଷା ଦିଆଯାଉଥିଲା । ମୋ ଲିଖିତ ଗୀତିନାଟ୍ୟ ଏହି ସ୍କୁଲର୍ ପିଲାମାନଙ୍କ ଦ୍ୱାରା ଅଭିନୀତ ହେଉଥିଲା । ତନ୍ମଧ୍ୟରୁ "ଯୁଗେ ଯୁଗେ ଉତ୍କଳ" ଗୀତିନାଟ୍ୟ ଦର୍ଶକଦର୍ଶିକାମାନଙ୍କୁ ମୁଗ୍ଧ କରୁଥିଲା ।

ମୋ ବଡ଼ ଝିଅ ସଂଘମିତ୍ରା, ଜ୍ଞାନ ବାବୁଙ୍କ ଝିଅ ଅନସୂୟା, ଶିଶିର ପାଣିଗ୍ରାହୀଙ୍କ ଝିଅ ଲୀନା, ଗୋପାଳ ଗାଁ ବେନାର୍ଜୀ ପରିବାରର ଅନୁକା ଓ ଅନ୍ୟମାନେ ନୃତ୍ୟ ଶିଖୁଥିଲେ। ସଂଘମିତ୍ରା ଓ ଅନୁକା ନୃତ୍ୟ ପ୍ରଦର୍ଶନ କରିବା ପାଇଁ କଲିକତା (ଏବର କୋଲ୍‌କତା) ଯାଇଥିଲେ । ସେ ସମୟରେ "କଳାମନ୍ଦିର" ପାଇଁ ଏହାଥିଲା ଗର୍ବର ବିଷୟ । ଏହି ଅନୁଷ୍ଠାନର ଛାତ୍ରୀମାନେ ଜନରାଜ୍ୟ ଦିବସରେ ନୃତ୍ୟ ପରିବେଷଣ କରିବା ପାଇଁ କଟକ ଯାଇଥିଲେ ଓ ନୃତ୍ୟ ପରିବେଷଣରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ।

ଅନୁଷ୍ଠାନର ବାର୍ଷିକ ଉତ୍ସବ ସେହି ଟାଉନ୍‌ହଲ୍ ପରିସରରେ ବହୁ ଜାକଜମକରେ ପାଳିତ ହେଉଥିଲା । ଛାତ୍ର ଛାତ୍ରୀମାନଙ୍କ ଦ୍ୱାରା ପରିବେଷିତ ନୃତ୍ୟ, ସଂଗୀତ, ଗୀତ, ତବଲା ବାଦନ ଦର୍ଶକ ଦର୍ଶିକାମାନଙ୍କୁ ବହୁ ଭାବରେ ଆମୋଦିତ କରୁଥିଲା ।

ଏହି ଅନୁଷ୍ଠାନ ୧୯୫୬ ମସିହାରୁ ନିରବଚ୍ଛିନ୍ନ ଭାବେ ତା'ର ଦାୟିତ୍ୱ ସଂପାଦନ କରିଆସୁଛି । ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ସାଂସ୍କୃତିକ ଉତ୍ସବରେ ଯୋଗଦେଇ ଆସୁଛି । ଦୀର୍ଘଦିନ ଧରି ଏହାର ସଂପାଦନା ଦାୟିତ୍ୱ ତୁଲାଉଥିବା ଦୀର୍ଘଦିନ ଧରି ଏହାରସଂପାଦନାନ ଦାୟିତ୍ୱ ତୁଲାଉଥିବା ଶରତ ଚନ୍ଦ୍ର ଦାସ ଏହି ଅନୁଷ୍ଠାନ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛନ୍ତି ।

"ନୃତ୍ୟ ସଂଗୀତ କଳାମନ୍ଦିର" ବାଲେଶ୍ୱରର ସାଂସ୍କୃତିକ ଇତିହାସରେ ଏକ ଅଭୁଲା ପୃଷ୍ଠାହୋଇ ରହିବ ।



# ରାଜଶ୍ରୀ ପ୍ରେସ୍ ଓ ସାହିତ୍ୟ ଜଗତ

ଯେଉଁ ଝାଡ଼େଶ୍ୱର ଲେନ୍‌ରେ ଭଡ଼ାଘର ନେଇ ମୁଁ ରହୁଥିଲି ସେହି ଲେନ୍‌ରେ ଗୋଟିଏ ଛୋଟ ପ୍ଲଟ୍ ଆମର ଥିଲା । ମୋ ବାଲେଶ୍ୱର ରହଣିର ୩/୪ ବର୍ଷ ଭିତରେ ବଡ଼ ବାବା ସେହି ପ୍ଲଟ୍‌ରେ ଗୋଟିଏ ପକ୍କାଘର ତିଆରି କରେଇଦେଲେ । ବ୍ରଜନାଥ ରଥ ବେଳେ ବେଳେ ମୋ ଘରକୁ ଆସୁଥିଲେ। ଦିନେ ଆମେ ଠିକ୍ କାଲୁ ଉଭୟ ମିଶି ଗୋଟାଏ ଛାପା ଖାନା କରିବୁ । ଆମ ଘର ପାଖ ନୂଆ ବଜାରରେ ମୋତିଗଞ୍ଜ ବାସିନ୍ଦା ଗୌରମୋହନ ଦାସଙ୍କର ଭଡ଼ା ଦେବାପାଇଁ ୨ଟି ଦୋକାନଘର ଥିଲା । ଗୌରମ ମୋହନ ବାବୁ ଛାପାଖାନା ପାଇଁ ଆମକୁ ସେ ଘର ଭଡ଼ାରେ ଦେବାପାଇଁ ରାଜି ହୋଇଗଲେ । ମୁଁ କଲିକତା ଯାଇ ଇଂଲଣ୍ଡ ତିଆରି ଏକ ପୁରୁଣା ପ୍ରେସ୍ ଓ ଅନ୍ୟାନ୍ୟ ସରଞ୍ଜାମ କିଣି ଆଣିଲି । ମୋ ବାପା ରାଜନାରାୟଣ ଓ ସ୍ୱର୍ଗତଃ ବଡ଼ଭାଇ ଶ୍ରୀ ନାଥଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ ତା' ନାଆଁ ରଖିଲି "ରାଜଶ୍ରୀ ପ୍ରେସ୍ ।"

ସେତେବେଳେ ବାଲେଶ୍ୱରର ମୁଖ୍ୟ ବଜାର ମୋତିଗଞ୍ଜରେ ଶ୍ରୀକୃଷ୍ଣ ଦେଙ୍କର ଟାଉନ୍‌ପ୍ରେସ୍ ନାମକ ଏକ ବଡ଼ ଛାପାଖାନା ଥିଲା । ତାଙ୍କ ମୃତ୍ୟୁପରେ କଂଗ୍ରେସ୍ ନେତା ବିଜୟକୃଷ୍ଣ ଦେ (ଯେ ଥିଲେ ଶ୍ରୀକୃଷ୍ଣ ଦେଙ୍କର ବଡ଼ପୁଅ), ସେ ପ୍ରେସ୍ କଥା ବୁଝୁଥିଲେ ଓ ୧୯୬୧ ମସିହାରେ କଂଗ୍ରେସ ଦଳ ତରଫରୁ ବାଲେଶ୍ୱର ବିଧାନ ସଭା ଆସନରୁ ବିଧାୟକ ମଧ୍ୟ ହୋଇଥିଲେ ।

ଆମ ପ୍ରତିଷ୍ଠିତ ରାଜଶ୍ରୀ ପ୍ରେସ୍ ଭଡ଼ା ଘରେ କିଛି ଦିନ ଚାଲିବା ପରେ ଆମେ ତାକୁ ମୋ' ଘରକୁ ଉଠାଇ ଆଣିଲୁ । ଘରର ଏକାର୍ଦ୍ଧରେ ମୁଁ ରହୁଥିଲି ଓ ସେହି ପାକରେ ଗୋଟିଏ କୋଠରିରେ ଆଇନ୍ ପୁସ୍ତକମାନ ରଖି ଆଇନ୍ ବ୍ୟବସାୟ କରୁଥିଲି । କିଛିଦିନ ପରେ ବ୍ରଜନାଥ ରଥ ମୋ'ଠାରୁ ଅଲଗା ହୋଇ

ସିନେମା ଛକରେ ନିଜର ଗୋଟିଏ ପ୍ରେସ୍ କଲେ । ତା'ର ନାମ ସେ ରଖିଲେ "ବିଶ୍ୱଶ୍ରୀ ପ୍ରେସ୍" । ଭଡ଼ାଘରେ ପ୍ରଥମେ ଆରମ୍ଭ କରି ପରେ ତା'ଠୁ ଅଳ୍ପ ଦୂରରେ ଜାଗା କିଣିଲେ ଓ ଘର ତିଆରି କରି "ବିଶ୍ୱଶ୍ରୀ ପ୍ରେସ୍"କୁ ସେଠାକୁ ଉଠାଇ ନେଲେ ।

ହଠାତ୍ ଦିନେ କଲିକତାରେ ରହୁଥିବା ଦିଗମ୍ବର ଦାସ ମୋ' ପାଖରେ ଆସି ପହଞ୍ଚିଲେ । କହିଲେ- ଜୀବନବୀମା ଚାକିରିରୁ ସେ ଅବସର ନେଇଛନ୍ତି । ସେ ଥିଲେ ନିଃସନ୍ତାନ । ଘରର ଜଞ୍ଜାଳ ତାଙ୍କର କିଛି ନଥିଲା । ଘରେ ତାଙ୍କର ସ୍ତ୍ରୀ ରହୁଥିଲେ । ମୁଁ ଚିନ୍ତାରେ ପଡ଼ିଲି, ତାଙ୍କୁ କି ଭଳି ଭାବରେ ବିନିଯୋଗ କରିବି ? ସେ ଜଣେ ସାହିତ୍ୟିକ । କଲିକତାରେ ଥିବାବେଳେ ତାଙ୍କର କିଛି ଗୋଇନ୍ଦା ଉପନ୍ୟାସ ପ୍ରକାଶ ପାଇଥିଲା ଓ ପାଠକ-ପାଠିକାମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ତାଙ୍କ ଶାଳକ କଣ୍ଢୁରି ଚରଣ ଦାସ ମଧ୍ୟ ଗୋଇନ୍ଦା ଉପନ୍ୟାସ ଲେଖିବାରେ ସିଦ୍ଧହସ୍ତ ।

ଦିଗମ୍ବର ଦାସ ଓ ମୁଁ ବସି ସ୍ଥିର କଲୁ ନୂଆବଜାରରେ ଗୋଟିଏ ବହି ଦୋକାନ କରିବୁ । ଓକିଲ ବନମାଳୀ ଚୌଧୁରୀଙ୍କର ନୂଆବଜାରରେ ଥିବା ଭଡ଼ାଘରରୁ ଗୋଟିଏ ଘର ଭଡ଼ାନେଇ ଆରମ୍ଭ କଲୁ ବହିଦୋକାନ "ସାହିତ୍ୟ ଜଗତ ।" "ସାହିତ୍ୟ ଜଗତ" ବହି ବିକ୍ରି ସହିତ କିଛି ବହି ମଧ୍ୟ ପ୍ରକାଶ କରିଥିଲା ।

ମୋ ଲେଖା "ପଥଭିକାରି" (ଏକାଙ୍କିକା), "ପରଶମଣି" (କିଶୋର ନାଟକ, "ନୂଆ କିଛି ନୁହେଁ" (ପୂର୍ଣ୍ଣାଙ୍ଗ ନାଟକ), "ଜାତିର ବାପୁଜୀ" (ପିଲାଙ୍କ ପାଇଁ) ଓ କବିତା ବହି "ସାର୍ଥକ କବିତା" ଓ "ଜୀବନ ଜ୍ୱାଳା ଓ ଅନ୍ୟାନ୍ୟ ଗଳ୍ପ" ବହି ପ୍ରକାଶ ପାଇଥିଲା ।

ସେତେବେଳେ ନାରୀ କବି ବିଦ୍ୟୁତ୍‌ପ୍ରଭାଙ୍କ ସ୍ୱାମୀ ପଞ୍ଚାନନ ମହାନ୍ତି ବାଲେଶ୍ୱର ବାଣିଜ୍ୟକର ଅଫିସ୍‌ରେ ସହକାରୀ ଅଫିସର୍ (A.C.T.O.) ଥିଲେ। ସେମାନେ ଆମ ଘର ସାମ୍‌ନାରେ ଘରଭଡ଼ା ନେଇ ରହୁଥିଲେ । ସେମାନଙ୍କ ସହିତ ମୋର ଓ ମୋ ସ୍ତ୍ରୀଙ୍କର ଆତ୍ମୀୟତା ବଢ଼ିଯାଇଥିଲା । ବିଦ୍ୟୁତ୍‌ପ୍ରଭାଙ୍କର ଗୋଟିଏ କବିତା ବହି "ଗଛପତର" ଓ ଆହୁରି କିଛି ବହି "ସାହିତ୍ୟ ଜଗତ" ପ୍ରକାଶ କରିଥିଲା । "ସାହିତ୍ୟ ଜଗତ"ର ଦାୟିତ୍ୱ ନେଇଥିଲେ ଦିଗମ୍ବର ଦାସ ।

କିଛି ଦିନ ପରେ "ସାହିତ୍ୟ ଜଗତ" ବନ୍ଦ ହୋଇ ଯାଇଥିଲା । ପରେ "ରାଜଶ୍ରୀ ପ୍ରେସ୍"କୁ ଭୁବନେଶ୍ୱର ଉଠାଇ ଅଣାଯାଇଥିଲା । କାରଣ ମୁଁ ମନ୍ତ୍ରୀ ହେବାପରେ ବାଲେଶ୍ୱର ଯାଇ ପାରୁନଥିଲି କି ପ୍ରେସ୍ କଥା ବୁଝି ପାରୁନଥିଲି । ସେ ପ୍ରେସ୍‌ର ନାମକୁ ମୋ ସ୍ତ୍ରୀର ନାମାନୁସାରେ ରଖାଯାଇଥିଲା "ଶ୍ରୀ ଲକ୍ଷ୍ମୀ ପ୍ରିଣ୍ଟର୍ସ" । ବିଧାନଘାଟୀ ଅଞ୍ଚଳରେ ଥିବା ମୋ' ଘରେ ତାହାକୁ ସ୍ଥାପନ କରାଯାଇଥିଲା ।

"ରାଜଶ୍ରୀ ପ୍ରେସ୍"ର ଆଉ କିଛି କଥା ଓ ଦୃଶ୍ୟ ଆଜି ବି ମୋର ମନେ ପଡ଼େ । ପ୍ରେସ୍‌ରେ ୩ ଜଣ ଅକ୍ଷର ସଂଯୋଜକ ଓ ଜଣେ ମେସିନ୍‌ମେନ୍ ଥିଲେ। ଭୋଟ୍ ତାଲିକା ଛପା ହେବାବେଳେ କମ୍ ଦିନ ଭିତରେ ଅନେକ କାମ କରିବାକୁ ପଡୁଥିଲା । ପ୍ରେସ୍‌ରେ ଥିବା ଏତେ କମ୍ ଲୋକଙ୍କ ଦ୍ୱାରା ଏହା ସମ୍ଭବ ହେଉ ନଥିଲା । ପ୍ରେସ୍‌ରେ ମେନେଜର୍ ଥିବା ରାଜକିଶୋର ଓ ମୋର ପୁଅମାନେ ଅକ୍ଷର ସଂଯୋଜନା କରିବାକୁ ବସି ଯାଉଥିଲେ। ମୋ ସ୍ତ୍ରୀ ମେସିନ୍ ଚଳାଉଥିଲେ ଓ ମୁଁ ପ୍ରୁଫ୍ ସଂଶୋଧନ କରୁଥିଲି । ରାତି ୧୦ଟାରୁ ରାତି ୨ଟା ପର୍ଯ୍ୟନ୍ତ ଆମେ ଏ ଦାୟିତ୍ୱ ନେଉଥିଲୁ ।

ମୁଁ ନିଖୁଣ୍ ଭାବରେ ପ୍ରୁଫ୍ ସଂଶୋଧନ କରୁଥିଲି । ପରବର୍ତ୍ତୀ କାଳରେ ମୋର ଅନେକ ଗଳ୍ପ, କବିତା, ଉପନ୍ୟାସ ଓ ନାଟକ କଟକର ସ୍ୱନାମଧନ୍ୟ ପ୍ରକାଶକ "ଗ୍ରନ୍ଥମନ୍ଦିର" ପ୍ରକାଶ କରିଛନ୍ତି । କିଛି ବହିର ପ୍ରୁଫ୍ ସଂଶୋଧନ ମୁଁ ନିଜେ କରିଛି ।



# ସାମ୍ବାଦିକତା ଓ ମୁଁ

ସାହିତ୍ୟ ସହିତ ସାମ୍ବାଦିକତା ପ୍ରତି ମଧ ମୁଁ ଆକୃଷ୍ଟ ହେଉଥିଲି । ଓକାଲତି ଜୀବନର ପ୍ରଥମାବସ୍ଥାରେ "ମାତୃଭୂମି" ପତ୍ରିକାର ସଂପାଦକ ବାଳକୃଷ୍ଣ କର ମୋତେ ସେ ପତ୍ରିକାର ବାଲେଶ୍ୱରସମ୍ବାଦ ଦାତା ଭାବରେ ନିଯୁକ୍ତି ଦେଇଥିଲେ । ସାପ୍ତାହିକ "ମାତୃଭୂମି" ରେ ନିୟମିତଭାବରେ ମୋର ଲେଖାମାନ ପ୍ରକାଶ ପାଉଥିଲା । ସାପ୍ତାହିକର ପ୍ରଥମ ପୃଷ୍ଠା ଯେଉଁଟା ସଂପାଦକଙ୍କ ଦ୍ୱାରା ଲେଖାଯାଏ, ସେହି ସ୍ଥାନରେ ମୁଁ ଲେଖିଥିବା ନିବନ୍ଧମାନ ପ୍ରକାଶ ପାଇଛି । "ପ୍ରଜାତନ୍ତ"ରେ ମଧ ମୋର କିଛି ନିବନ୍ଧ ପ୍ରକାଶ ପାଇଥିଲା ।

୧୯୭୮ ମସିହାରେ "ଧରିତ୍ରୀ" ସଂପାଦକ ରାମନାଥ ପଣ୍ଡା ଯେତେବେଳେ ସଂପାଦକ ଦାୟିତ୍ୱରୁ କିଛିଦିନ ପାଇଁ ଅବ୍ୟାହତ ନେଲେ, ସେତେବେଳେ ପତ୍ରିକାର ସଂପାଦନା ଦାୟିତ୍ୱ ନନ୍ଦିନୀ ଶତପଥୀ ମୋତେ ଦେଇଥିଲେ। ମୁଁ ସଂପାଦକ ଥିବା ସମୟରେ ପ୍ରତ୍ୟେକ ଦିନ ପ୍ରେସ୍‌କୁ ଯାଇ ପ୍ରକାଶ ପାଇବାକୁ ଯାଉଥିବା ସମ୍ବାଦମାନଙ୍କ ମଧ୍ୟରୁ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଉଥିବା ସମ୍ବାଦ ଗୁଡ଼ିକୁ ପ୍ରାୟ ଦେଖୁଥିଲି । ସଂପାଦକୀୟ ମୁଁ ନିଜେ ଲେଖୁଥିଲି । ଇଂରେଜୀ ଖବର କାଗଜରେ ମୁଖ୍ୟ ସଂପାଦକୀୟ ଏବଂ ତା' ତଳକୁ ଆଉ ଗୋଟାଏ ବା ଦୁଇଟା ଅପେକ୍ଷାକୃତ କମ୍ ଗୁରୁତ୍ୱଥିବା ସଂବାଦ ପ୍ରକାଶ ପାଏ । "ଧରିତ୍ରୀ" ସଂପାଦକୀୟ ସ୍ତମ୍ଭରେ ମୁଁ ସେମିତିକା ସଂପାଦକୀୟ ପ୍ରକାଶ କରୁଥିଲି । ଏଭଳିଆ ବ୍ୟବସ୍ଥାକୁ ସମର୍ଥନ ଜଣାଉଥିବା କିଛି ସାମ୍ବାଦିକଙ୍କଠୁ କିଛି ଚିଠି ମଧ ପାଇଥିଲି ।

ସେ ସମୟରେ ଅନିରୁଦ୍ଧ ନନ୍ଦ "ପ୍ରଜାତନ୍ତ"ର ବାଲେଶ୍ୱର ପ୍ରତିନିଧି ଥିଲେ । ସେ ମୋ'ଠାରୁ ବୟସରେ ବଡ଼ । ସେ ସବୁବେଳେ ମୋତେ ସାନଭାଇ ଭଳି ବ୍ୟବହାର କରୁଥିଲେ। ସେ ଥିଲେ ଗୋରାତକ୍‌ତକ୍ ମୋଟା ମଣିଷଟିଏ । ଦୁଇଟି ଗୋଡ଼ର ପାହୁଲଠୁ ଆଣ୍ଠୁ ପର୍ଯ୍ୟନ୍ତ ବାତଗ୍ରସ୍ତ ଯୋଗୁଁ ମୋଟା । ପ୍ରତିଦିନ ସାଇକେଲରେ ସେ ପ୍ରାୟ ୩୦/୪୦ କିଲୋମିଟର ବୁଲୁଥିଲେ। ନୂଆ ବଜାରରେ କବିରାଜ

ମିହିର ପାଣିଗ୍ରାହୀ ଗୋଟିଏ ଘର ଭଡ଼ାନେଇ ରୋଗୀଙ୍କୁ କବିରାଜି ଔଷଧ ଦେଉଥିଲେ । କବିରାଜି ସହିତ ସେ ସାମ୍ବାଦିକତା ମଧ୍ୟ କରୁଥିଲେ। ଅନିରୁଦ୍ଧବାବୁ ସାମ୍ବାଦିକତା ସହିତ କବିରାଜି ମଧ୍ୟ କରୁଥିଲେ । ମୁଁ ଅନେକ ସମୟରେ ସେଠାକୁ ଯାଉଥିଲି । ସେଠାରେ ସାମ୍ବାଦିକତାର ମହକ ମୋତେ ଆମୋଦିତ କରୁଥିଲା ।

ସେତେବେଳେ ଜୟନ୍ତ ଘୋଷ ମଧ୍ୟ ଜଣେ ପ୍ରବୀଣ ସାମ୍ବାଦିକ ଥିଲେ । ସେ ପ୍ରତ୍ୟହ ସାଇକେଲ୍ ଯୋଗେ ରେମୁଣାରୁ ବାଲେଶ୍ୱର ଆସନ୍ତି । ସେ ସମୟରେ ଅନ୍ୟଜଣ ସାମ୍ବାଦିକ ଥିଲେ ମିହିର କୁମାର ଆଚାର୍ଯ୍ୟ । ସିନେମା ବଜାରରେ ଥାଏ ତାଙ୍କର ଅଫିସ ଏବଂ ସମ୍ବାଦପତ୍ରର ବିକ୍ରୟକେନ୍ଦ୍ର । ଏ ସମସ୍ତଙ୍କ ସହିତ ମୋର ସୁସଂପର୍କ ଥିଲା । ସେତେବେଳେ ନିରପେକ୍ଷ ସମ୍ବାଦ ପରିବେଷଣ ଥିଲା ସାମ୍ବାଦିକତାର ଧର୍ମ । ମୁଁ ମଧ୍ୟ ସେହି ମନ୍ତ୍ରରେ ଦୀକ୍ଷିତ ଥିଲି ।

ଏହି ଭଳି କିଛିଦିନ ସାମ୍ବାଦିକତା କରିବାପରେ, ରାଜନୀତିକୁ ଯିବାପରେ ମଧ୍ୟ ସାମ୍ବାଦିକତା ମୋତେ ଛାଡୁନଥିଲା । ବାଲେଶ୍ୱରର ଜଣେ ଯୁବ ସାମ୍ବାଦିକ ଲକ୍ଷ୍ମୀଧର ବେହେରା "ଜନପ୍ରିୟ" ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିବା ପାଇଁ ମୋ ସହିତ ପରାମର୍ଶ କଲେ । ପତ୍ରିକା ପ୍ରକାଶ କରିବା ପାଇଁ ମୁଁ ତାଙ୍କୁ ଉତ୍ସାହିତ କଲି । ସେ ହେଲେ ସେ ପତ୍ରିକାର ସଂପାଦକ ଓ ତାଙ୍କରି ଅନୁରୋଧରେ ମୁଁ ହେଲି ତା'ର ମୁଖ୍ୟ ସଂପାଦକ । ପତ୍ରିକାଟି କେତୋଟି ସଂଖ୍ୟା ପ୍ରକାଶ ପାଇବାପରେ ବନ୍ଦ ହୋଇ ଯାଇଥିଲା ।

ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟୀ ତରଫରୁ "ଲୋକଶକ୍ତି" ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇଥିଲା । ମୁଁ ରହିଥିଲି ତା'ର ସଂପାଦକ ।

ମୁଁ ମଧ୍ୟ କିଛି ଦିନ ପ୍ରଦେଶ କଂଗ୍ରେସ କମିଟୀର ମୁଖପାତ୍ର ଥିଲି । ପ୍ରତ୍ୟେକ ସପ୍ତାହରେ ଗୋଟାଏ ଦିନ ପ୍ରଦେଶ କଂଗ୍ରେସ କମିଟୀ ଅଫିସ୍‌ରେ ସାମ୍ବାଦିକ ସମ୍ମିଳନୀ କରାଉଥିଲି । ଓଡ଼ିଆ, ଇଂରାଜୀ, ହିନ୍ଦୀ, ବଙ୍ଗଳା ଖବର କାଗଜର ସାମ୍ବାଦିକମାନେ ଏହି ସମ୍ମିଳନୀକୁ ଆସୁଥିଲେ ।

କେବଳ ଏତିକି ନୁହେଁ ୧୯୮୫ ମସିହାରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ମୁଁ ମନ୍ତ୍ରୀ ଥିବାବେଳେ ସାମ୍ବାଦିକମାନଙ୍କର ଦାୟିତ୍ୱରେ ଥିଲି । ମାସରେ ପ୍ରାୟ ଥରେ ସାମ୍ବାଦିକମାନଙ୍କୁ ନେଇ ସ୍ୱସ୍ତି ହୋଟେଲ୍‌ରେ ବସୁଥିଲି । ସରକାର କରୁଥିବା ବିଭିନ୍ନ କାର୍ଯ୍ୟକ୍ରମ ଉପରେ ପୁଂଖାନୁପୁଂଖ ଆଲୋଚନା କରୁଥିଲି । ସାମ୍ବାଦିକତା ପ୍ରତି ମମତା ଆଜି ବି ମୋ ପାଖରେ ଅଛି ।



# ସତ୍ୟନାରାୟଣ ସ ମିଲ୍

ମୋ ଶ୍ୱଶୁର ବିମଳା ପ୍ରସାଦ ପଣ୍ଡା ବାଲେଶ୍ୱର ଜେଲ୍‌ଖାନା ନିକଟରେ ମୟୁରଭଞ୍ଜର କାମିନୀକାନ୍ତ ପଟ୍ଟନାୟକଙ୍କର ଥିବା ଏକ ଜାଗାକୁ ବନ୍ଧକ ସୂତ୍ରେ ନେଇ "ସତ୍ୟନାରାୟଣ ସ ମିଲ୍" ନାମରେ ଏକ କରତକଳ ପ୍ରତିଷ୍ଠା କରିଥିଲେ। ସେହି କରତ କଳରେ ତାଙ୍କର ଦଶଅଣା ଅଂଶ ଓ ମୋର ଛ'ଅଣା ଅଂଶ ରଖିଥିଲେ। କରତକଳ ଚଳେଇବା ପାଇଁ ଶାଳ ଜଙ୍ଗଲମାନ ନିଲାମରେ ନିଆଯାଉଥିଲା । କରତକଳରେ ଦୁଇଟି ଟ୍ରକ୍ ଥିଲା । ଜଙ୍ଗଲରୁ କଟା ହୋଇ ଶାଳକାଠ ଟ୍ରକ୍‌ଦ୍ୱାରା କରତକଳକୁ ଅଣାଯାଏ ଓ ସେଠାରେ ପଟା ଓ ବନ୍ଧ କରାଯାଏ । ପଶ୍ଚିମବଙ୍ଗ କଣ୍ଟାଇର କିଛି କାଠ ବ୍ୟବସାୟୀ ଆସି ଏହି କରତକଳରୁ ପଟା ଓ ବନ୍ଧ କାଠ କିଣିନେଇ ଯାଆନ୍ତି ।

ବାଲେଶ୍ୱରରେ ଏହି କରତକଳକୁ ଛାଡ଼ି ଆହୁରି ୪/୫ଟା କରତକଳ ଥିଲା । ଶ୍ୱଶୁର ବଞ୍ଚିଥିବାଯାକେ ମୁଁ କରତକଳକୁ ଯାଉନଥିଲି ବା ସେ ସଂପର୍କରେ କିଛି ବୁଝୁନଥିଲି । ବ୍ୟବସାୟର ଲାଭାଂଶ ଶ୍ୱଶୁର ନେଉଥିଲେ। ମୁଁ ଥିଲି କେବଳ ନାମମାତ୍ର ଅଂଶୀଦାର ।

୧୯୫୯ ମସିହାରେ ଶ୍ୱଶୁର ପରଲୋକ ଗମନ କଲେ । ତା' ପୂର୍ବରୁ ମୋ ସ୍ତ୍ରୀଙ୍କ ସାନଭଉଣୀ ସରସ୍ୱତୀଙ୍କର ପତିବିୟୋଗ ଘଟିଥିଲା । ସେ ଶେରଗଡ଼ ନିକଟସ୍ଥ ଏବଂ ନୀଳଗିରି ରୋଡ଼ ରେଳଷ୍ଟେସନ ସଂଲଗ୍ନ ପାଟରା ଗ୍ରାମର ପଦ୍ମଲୋଚନ ପାଣିଗ୍ରାହୀଙ୍କୁ ବିବାହ କରିଥିଲେ। ପଦ୍ମଲୋଚନ ଥିଲେ ଜଣେ ସରକାରୀ କର୍ମଚାରୀ । ଶ୍ୱଶୁରଙ୍କର ବିୟୋଗପରେ କରତକଳରେ ଶ୍ୱଶୁରଙ୍କର ଦୁଇ ସ୍ତ୍ରୀ, ମୋ ସ୍ତ୍ରୀ ଏବଂ ଶାଳୀ ଅଂଶୀଦାର ରହିଲେ । ମୁଁ ରହିଲି ପରିଚାଳକ ଅଂଶୀଦାର ।

ଗୋଟିଏ ଟ୍ରକ୍‌ର ଡ୍ରାଇଭର ଥିଲେ ଶ୍ୟାମନନ୍ଦ । ଆଉ ଗୋଟିଏ ଟ୍ରକ୍ ଖରାପ ହୋଇ ପଡ଼ିଥିଲା । କରତକଳରେ ଗୋଟିଏ ଜିପ୍ ମଧ୍ୟ ଥିଲା । ତାକୁ ଚଳାଉଥିଲା

ଭିକାରି ବୋଲି ଜଣେ ଡ୍ରାଇଭର୍ । ଏହି ସମୟରେ ମୋ କକାଙ୍କ ପୁଅ ଗୋଲକବାବୁ କିସ୍ତିରେ ଗୋଟାଏ ନୂଆ ଟ୍ରକ୍ କିଣିଲେ । ଶ୍ୟାମନନା କହିଲେ- "ବାବୁ, ଆପଣ ଜିପ୍‌ଚଲା ଶିଖିଯାଆନ୍ତୁ । ଭିକାରି ଟ୍ରକ୍ ଚଳାଉ ।

ଶ୍ୟାମନନା ମୋତେ ଜିପ୍ ଚଳେଇବା ଶିଖେଇ ଦେଲେ । ମୁଁ ସେତେବେଳେ ଜଙ୍ଗଲକଟା ଦେଖିବାକୁ ନିଜେ ଜିପ୍ ଚଳେଇ ଯାଉଥିଲି । ମେଘାସନ ପାହାଡ଼ ଉପରକୁ ଜିପ୍‌ଚଳେଇ ଘାଟିରାସ୍ତାରେ ବହୁବାର ଯାଇଛି । ନୀଳଗିରିରେ ରେଞ୍ଜ ଅଫିସ୍ ଓ ଅନୁଗୁଳରେ ଥାଏ କନ୍‌ଜରଭେଟର୍‌ଙ୍କ ଅଫିସ୍ । କାମ ପଡ଼ିଲେ ସେଠାକୁ ମଧ୍ୟ ଜିପ୍ ଚଳେଇ ଯାଉଥିଲି । କେତେବେଳେ ଆମ କରତକଳର ମେନେଜର ପ୍ରଫୁଲ୍ଲବାବୁ ବା ଆଉ କେତେବେଳେ ଜଙ୍ଗଲ ମେନେଜର୍ ଉପେନ୍ଦ୍ର ବାବୁ ମୋ ସହିତ ଯାଆନ୍ତି । ପାହାଡ଼ ଉପରକୁ ଗଲାବେଳେ ବା ପାହାଡ଼ରୁ ତଳକୁ ଆସୁଥିବା ବେଳେ କେତେଥର ହାତୀ, ବାଘ, ଭାଲୁଙ୍କ ହାବୁଡ଼ରେ ପଡ଼ିଛି । ହାତୀ ଦେଖିଲେ ତା' ପାଖକୁ ନ ଯାଇ କିଛି ଦୂରରେ ଜିପ୍ ରଖି ଆମେ ଚୁପ୍‌ଚାପ୍ ରହିଯାଉ । ହାତୀମାନେ ରାସ୍ତା ଉପରେ କିଛି ସମୟ ଖେଳାଖେଳି କରି ଜଙ୍ଗଲ ଭିତରକୁ ଚାଲିଯିବାପରେ ଆମେ ଆସୁ । ଆମେ ଯେତେବେଳେ ଏଇ ସବୁ ଜନ୍ତୁମାନଙ୍କୁ ଦେଖିଛୁ, ସେମାନଙ୍କ ପିଲାପିଲିଙ୍କ ସହିତ ଦେଖିଚୁ । ସେମାନଙ୍କ ଖେଳାଖେଳି, କଂଠରୁ ନିର୍ଗତ ସ୍ନେହସୂଚକ ଶବ୍ଦ ସେଇ ଭୟାବହ ପରିସ୍ଥିତିରେ ଆମକୁ ଆମୋଦିତ ମଧ୍ୟ କରିଛି ।

ଥରେ ଜିପ୍ ନନେଇ ଶ୍ୟାମନନା ସହିତ ତା'ରି ଟ୍ରକ୍‌ରେ ବସି ମେଘାସନ ପାହାଡ଼ ଉପରକୁ ଯାଇଥିଲି । କାଠ ବୋଝେଇ କରି ଫେରିବାବେଳେ ସେ କହିଲେ- "ବାବୁ, ମୁଁ ପାଖରେ ବସୁଚି, ଆପଣ ଟ୍ରକ୍ ଚଳାଇ ଚାଲନ୍ତୁ ।"

କାଠ ବୋଝେଇ ଟ୍ରକ୍, ମୁଁ ତାକୁ ଚଳେଇ ପାହାଡ଼ ଉପରୁ ତଳକୁ ଆସି ପାରିବି ଏ ଆତ୍ମ ବିଶ୍ୱାସ ମୋର ନଥିଲା ।

ଶ୍ୟାମନନା କହିଲେ - "କିଛି ଭୟ ନାହିଁ, ମୁଁ ପାଖରେ ବସିଚି । ଦରକାର ପଡ଼ିଲେ ଷ୍ଟିୟରିଂ ଧରିନେବିନି । ଷ୍ଟିଏରିଂ ଧରନ୍ତୁ, ଚଳାନ୍ତୁ ।" ଚଳେଇଲି । ଗୋଟାଏ ଜାଗାରେ ଲମ୍ୱା ଗଡ଼ାଣିଟିଏ ଥାଏ । ତଳକୁ ଯାଇ ପୁଣି ଉପରକୁ ଉଠିବାକୁ ହୁଏ । ସେଇ ସଂଧି ସ୍ଥଳରେ ଖୁବ୍ ଛୋଟ ଝରଣାଟିଏ ଅଛି । ହଠାତ୍ ଶ୍ୟାମନନା କହିଲେ- "ଗାଡ଼ିର ବ୍ରେକ୍ ଦିଅନ୍ତୁ ।"

ବ୍ରେକ୍ ଦେଇ ଗାଡ଼ି ଠିଆ କରେଇ ଦଳକୁ ଚାହିଁ ଦେଖିଲି, ଦୁଇଟି ବଡ଼ ହାତୀ, ଗୋଟାଏ ଦନ୍ତା ଆଉ ଗୋଟାଏ ମାଈ ହାତୀ, ସେମାନଙ୍କର ଛୁଆକୁ ନେଇ ଝରଣା ପାଖରେ କ୍ରୀଡ଼ାରତ । ବଡ଼ ହାତୀ ଦୁଇଟି ଶୁଣ୍ଢରେ ପାଣି ଆଣି ଛୁଆଟି ଉପରେ ଛିଞ୍ଚୁଛନ୍ତି । ଆମେ ପ୍ରାୟ ୧୫ ମିନିଟ୍ ରହିବାପରେ ସେମାନେ ଚାଲିଗଲେ । ଆମେ ତା' ପରେ ଆସିଲୁ ।

ଆଉ ଏକ ରାତିର ଘଟଣା । ପର୍ବତ ପୃଷ୍ଠର ନିକାଞ୍ଚନରେ ଥିବା ଏକ ବଙ୍ଗଳାରେ ଗୋଟିଏ ରାତି ମୋତେ ରହିବାକୁ ପଡ଼ିଥିଲା । ମାଟି ଭିତରେ ତିଆରି ହୋଇଥିବା ଉଚ୍ଚ ପକ୍କା ଖୁମ୍ବ ଉପରେ ବଙ୍ଗଳାଟି ତିଆରି । କୌଣସି ଜନ୍ତୁ ଯେମିତି ଏ ବଙ୍ଗଳାକୁ ଯାଇ ନ ପାରିବେ ସେଥିପାଇଁ ଏ ପ୍ରକାର ବ୍ୟବସ୍ଥା ।

ରାତି ଆଠଟା ପରେ ବଙ୍ଗଳା ଚାରିପାଖରୁ ବିଭିନ୍ନ ବନ୍ୟଜନ୍ତୁଙ୍କର ଗର୍ଜନର ଶବ୍ଦ । ହାତୀମାନଙ୍କର ଗଛଡ଼ାଳ ଭାଙ୍ଗୁଥିବାର ଆବାଜ । ନିଦ ଯୋଗୁଁ ଆଖି ବନ୍ଦ ହେବା ପୁଣି ଖୋଲି ଯିବା ହିଁ ଥିଲା ସେହି ରାତ୍ରିରେ ମୋର ଅବସ୍ଥା । ସକାଳ ପୂର୍ବରୁ ସବୁ ଜୀବଜନ୍ତୁ ଯେ ଯାହା ସ୍ଥାନକୁ ଚାଲି ଯାଇଥିଲେ । କିନ୍ତୁ ବଙ୍ଗଳା ଚାରିପାଖର କିଛି ଗଛମାନଙ୍କର ଭଙ୍ଗାଡାଳ ତଳେ ପଡ଼ିଥିବାର ଦେଖାଯାଇଥିଲା ।

ବଙ୍ଗଳାଠୁ ପ୍ରାୟ ପାଞ୍ଚ ଛ କିଲୋମିଟର ଦୂରରେ ଆମେ ନିଲାମ ନେଇଥିବା ଜଙ୍ଗଲ । ଗଛ କାଟିବାପାଇଁ ସେହି ଜଙ୍ଗଲ ଭିତରେ ପଚାଶ ଷାଠିଏ ଜଣ କାଠ କଟାଳି କୁଲି ଅସ୍ଥାୟୀ ଝାଟିମାଟିର ଘର ତିଆରି କରି ରହୁଥିଲେ । ସେମାନେ ଥିଲେ ଉଭୟ ପୁରୁଷ ଓ ସ୍ତ୍ରୀ । ସେମାନେ ସବୁ ଥିଲେ ପାଖଆଖ ଗାଆଁର ଆଦିବାସୀ ଲୋକ । ସଂଧ୍ୟାପରେ ସେମାନେ ମଶାଲ ଧରି ଯିବାଆସିବା କରନ୍ତି କାରଣ ହାତୀ କୁଆଡ଼େ ନିଆଁକୁ ଭାରି ଡରେ ଓ ନିଆଁ ପାଖକୁ ନ ଆସି ପଳାୟନ କରେ ।

ସେ ଯା' ହେଉ ସକାଳ ଆଠଟା ବେଳେ ଗୋଟାଏ ଟ୍ରକ୍ ଆସି ମୋତେ ଏ ବଙ୍ଗଳାରୁ କାଠ କଟା ଜାଗାକୁ ନେଇ ଯାଇଥିଲା । ପ୍ରାୟ ବାରଟା ବେଳେ କାଠ ବୋଝେଇ ଟ୍ରକ୍‌ରେ ମୁଁ ବାଲେଶ୍ୱର ଫେରିଥିଲି । ଏହି ସମୟରେ ମୁଁ ମୋ ସ୍ତ୍ରୀ ଲକ୍ଷ୍ମୀପ୍ରିୟାକୁ ମୁଁ ଜିପ୍ ଚଳେଇବା ଶିଖେଇଥିଲି । ରବିବାରିଆ ବେଳେବେଳେ ଗାଆଁକୁ ଯିବାକୁ ପଡ଼େ । ଲକ୍ଷ୍ମୀପ୍ରିୟା ଜିପ୍ ଚଳାଏ, ମୁଁ ପାଖରେ ବସିଥାଏ । ପରବର୍ତ୍ତୀ ସମୟରେ ମୋର ଚାରିପୁଅ ଯେତେବେଳେ ବଡ଼ ହେଲେ ମୁଁ ଓ ମୋ ସ୍ତ୍ରୀ ସେମାନଙ୍କୁ ଗାଡ଼ି ଚଳେଇବା ଶିଖେଇଥିଲୁ ।

ସେତେବେଳେ ଓକାଲତି କାମ ସାରି ପ୍ରାୟ ପାଞ୍ଚଟା ବେଳକୁ କରତକଳରେ ପହଞ୍ଚି ଯାଉଥିଲି ଓ ସେ ଦିନର କାମ ଓ ବିକ୍ରିବଟା ବିଷୟରେ ବୁଝୁଥିଲି । ଅନେକ ସମୟରେ କିଛି ଓକିଲବନ୍ଧୁ ବି ଆସି ପହଞ୍ଚୁଥିଲେ । ଚା ଖିଆ ପରେ ଗଳ୍ପ ଜମି ଯାଉଥିଲା । ନ' ସାଢ଼େ ନ' ବେଳକୁ ଘରକୁ ଫେରୁଥିଲି ।

ମୁଁ ରାଜନୀତିରେ ଯୋଗ ଦେବାପରେ ଏହି ବ୍ୟବସାୟ ପ୍ରତି ଆଉ ବିଶେଷ ଧ୍ୟାନ ଦେଇ ପାରୁନଥିଲି । କକାଙ୍କ ପୁଅ ଗୋଲକବାବୁ କିସ୍ତିରେ ଆଣିଥିବା ଟ୍ରକ୍‌ର କିସ୍ତିଟଙ୍କା ଠିକ୍ ଭାବରେ ପରିଶୋଧ ନ ହୋଇ ପାରିବାରୁ ଅର୍ଥ ଦେଇଥିବା କମ୍ପାନୀ ଟ୍ରକ୍‌ଟିକୁ ଜବତ୍ କରି ନେଇ ଯାଇଥିଲେ ।

ନୀଳଗିରି ଅଞ୍ଚଳର ତିନି ଚାରିଜଣ ଲୋକ ମିଶି ଗୋପାଳଗାଆଁରେ ଏକ କରତକଳ ଆରମ୍ଭ କରିଥିଲେ। ୧୯୬୭ ମସିହାରେ ଏଇ କରତକଳକୁ ନାମମାତ୍ର ମୂଲ୍ୟରେ ସେମାନଙ୍କୁ ବିକ୍ରି କରି ଦିଆଯାଇଥିଲା ।

■■■



# ସ୍ୱାଧୀନତା ଓ ତା'ପରେ

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଭାରତବର୍ଷ ସ୍ୱାଧୀନ ହେଲା । ଦେଶର ମୁସଲମାନ ବହୁଳ କିଛି ଅଂଶ ହେଲା ପାକିସ୍ତାନ । ସ୍ୱାଧୀନ ଭାରତବର୍ଷର ପ୍ରଧାନମନ୍ତ୍ରୀ ହେଲେ ପଣ୍ଡିତ ଜବାହାରଲାଲ୍ ନେହେରୁ ।

୧୯୪୮ ମସିହା ଜାନୁୟାରୀ ମାସ ୩୦ ତାରିଖରେ ଦିଲ୍ଲୀ ବିରଳା ଭବନ ପ୍ରାର୍ଥନା ସଭାରେ ନାଥୁରାମ ଗଡ଼ସେ ମହାତ୍ମାଗାନ୍ଧିଙ୍କୁ ହତ୍ୟାକଲା ।

ହରେକୃଷ୍ଣ ମହତାବ୍ ଓଡ଼ିଶାର ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ି କେନ୍ଦ୍ରରେ ମନ୍ତ୍ରୀ ହେବାରୁ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

୧୯୪୮ ମସିହା ଜାନୁୟାରି ୨୮ ତାରିଖରେ ମୟୁରଭଞ୍ଜ ବ୍ୟତୀତ ଓଡ଼ିଶାର ଅନ୍ୟ ସମସ୍ତ ଗଡ଼ଜାତର ଓଡ଼ିଶା ସହିତ ମିଶ୍ରଣ ହେଲା । ଗଡ଼ଜାତ ମିଶ୍ରଣପରେ ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓ ଓ ଅନ୍ୟ କିଛି ଗଡ଼ଜାତର ରାଜାମାନେ ଗୋଟିଏ ଇଉନିୟନ୍ ଗଠନ କରି ଗଡ଼ଜାତମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ କରିବାର ଆନ୍ଦୋଳନ ଆରମ୍ଭ କରିଥିଲେ। ମାତ୍ର ଏହା ଫଳବତୀ ନ ହେବାରୁ "ଗଣତନ୍ତ୍ର ପରିଷଦ ନାମରେ ଏକ ରାଜନୈତିକ ଦଳ ଗଠନ କରିଥିଲେ।

ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶର ରାଜଗୋପାଳାଚାରୀ ଜଣେ ଟାଣୁଆ କଂଗ୍ରେସ୍ ନେତାଥିଲେ । ସେ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ଏବଂ ଭାରତବର୍ଷର ବଡ଼ଲାଟ ମଧ ଥିଲେ । ମାତ୍ର କଂଗ୍ରେସ ସହିତ ମତାନୈକ୍ୟ ଘଟିବାରୁ ସେ କଂଗ୍ରେସ ଛାଡ଼ି "ସ୍ୱତନ୍ତ୍ର ଦଳ" ଗଠନ କରିଥିଲେ।

ବାଲେଶ୍ୱରର କିଛି ଓକିଲ ବଂଧୁ ଯେଉଁମାନେ ମୋର ଅତ୍ୟନ୍ତ ଅନ୍ତରଙ୍ଗ ଥିଲେ, ସେମାନେ ଏହି "ସ୍ୱତନ୍ତ୍ର" ଦଳରେ ଯୋଗ ଦେଇଥିଲେ। ଏହି ଦଳର ସଭାପତି ହେଲେ କରୁଣାକର ଦାସ । ହରପ୍ରସାଦ ମହାପାତ୍ର, ଯୋଗେଶ ଚନ୍ଦ୍ର

ଦାସ ମଧ୍ୟ ଏହି ଦଳରେ ସାମିଲ ହେଲେ । ବଂଧୁତା ଖାତିରରେ ସେମାନେ ମଧ୍ୟ ବିଭିନ୍ନ ଆଲୋଚନାକୁ ମୋତେ ଡାକନ୍ତି ।

୧୯୬୧ ମସିହା ବିଧାନସଭା ନିର୍ବାଚନରେ ସ୍ୱତନ୍ତ୍ରଦଳ ତରଫରୁ ସୋର ନିର୍ବାଚନ ମଣ୍ଡଳିରୁ ପ୍ରାର୍ଥୀ ଛିଡ଼ା କରାଇବାକୁ ସ୍ଥିର ହେଲା । ଆମ ପରିବାର ସୋର ଅଞ୍ଚଳରେ ପରିଚିତ ଥିବାରୁ, ସେମାନଙ୍କର ବାଧ୍ୟବାଧକତାରେ ମୁଁ ପ୍ରାର୍ଥୀ ହେଲି । କଂଗ୍ରେସ ଦଳର ପ୍ରାର୍ଥୀ ଥିଲେ କରୁଣାକର ପାଣିଗ୍ରାହୀ । ଏହି ନିର୍ବାଚନରେ କଂଗ୍ରେସ ଅଭୂତପୂର୍ବ ସଫଳତା ପାଇଥିଲା । ମୁଁ ପରାଜିତ ହୋଇଥିଲି । ବିଧାନ ସଭାର ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ ୮୨ଟି ଆସନ ଲାଭ କରିଥିଲା । ଏଭଳି ସଂଖ୍ୟା ଗରିଷ୍ଠତା ପୂର୍ବ ନିର୍ବାଚନମାନଙ୍କରେ କଂଗ୍ରେସକୁ ମିଳିନଥିଲା । ବିଜୁ ପଟ୍ଟନାୟକ ହୋଇଥିଲେ ମୁଖ୍ୟମନ୍ତ୍ରୀ । ତାଙ୍କ ମନ୍ତ୍ରୀମଣ୍ଡଳରେ ତାଙ୍କୁ ଛାଡ଼ି ଆଉ ଛ'ଜଣ କେବିନେଟ୍ ମନ୍ତ୍ରୀ ଥିଲେ । ସେମାନେ ହେଲେ ବୀରେନ୍ ମିତ୍ର, ନୀଳମଣି ରାଉତରାୟ, ସଦାଶିବ ତ୍ରିପାଠୀ, ପବିତ୍ର ମୋହନ ପ୍ରଧାନ, ଡକ୍ଟର ଜଗନ୍ନାଥ ରାଓ ଓ ହରିହର ସିଂହ ମର୍ଦ୍ଦରାଜ ।

ଏହି ମନ୍ତ୍ରିମଣ୍ଡଳରେ ୮ ଜଣ ଉପମନ୍ତ୍ରୀ ଥିଲେ। ସେମାନେ ହେଲେ ବୃନ୍ଦାବନ ନାୟକ, ପ୍ରହ୍ଲାଦ ମଲ୍ଲିକ, ଟି. ସାଙ୍ଗନ୍ନା, ଚନ୍ଦ୍ରମୋହନ ସିଂହ, ବୀର ବିକ୍ରମାଦିତ୍ୟ ବରିହା, ସନ୍ତୋଷକୁମାର ସାହୁ, ଚିତ୍ତରଂଜନ ନାୟକ ଓ ସରସ୍ୱତୀ ପ୍ରଧାନ ।

ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବାପାଇଁ ଅନେକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ତାଙ୍କରି ସମୟରେ ଓଡ଼ିଶା ଶିଳ୍ପ ଉନ୍ନୟନ କର୍ପୋରେସନ ଗଠନ କରାଯାଇଥିଲା । ଗ୍ରାମ ପଞ୍ଚାୟତମାନଙ୍କରେ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯାଉଥିଲା । କୋରାପୁଟ ଜିଲ୍ଲାରେ ବାଲିମେଳା ବିଦ୍ୟୁତ୍ ପ୍ରକଳ୍ପ, ମିଗ୍‌କାରଖାନା, ପାରାଦ୍ୱୀପ ବନ୍ଦର, ଏକ୍ସପ୍ରେସ୍ ଓ୍ୱେ ତାଙ୍କରି ଚିନ୍ତାଧାରାର ପ୍ରତୀକ । ତାଙ୍କରି ସମୟରେ ମଧ୍ୟ ଖଣି କର୍ପୋରେସନ୍, ଜଙ୍ଗଲ କର୍ପୋରେସନ୍, ନିର୍ମାଣ କର୍ପୋରେସନ୍ ଆଦି ଗଠିତ ହୋଇଥିଲା ।

ବିଜୁବାବୁ ଥିଲେ ଜଣେ ଦୃଢ଼ମନା ବ୍ୟକ୍ତି । ସେ ଥିଲେ ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନ । ଗରିବମାନଙ୍କର ଅବସ୍ଥା ସୁଧାରିବାକୁ ସେ ସର୍ବଦା ଚିନ୍ତା କରୁଥିଲେ। କିଛିଦିନ ମୁଖ୍ୟମନ୍ତ୍ରୀ ରହିବା ପରେ ତା୧-୧୦-୧୯୬୩ ରିଖରେ କାମରାଜ ଯୋଜନାରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ। ତାଙ୍କ ପରେ ବୀରେନମିତ୍ର ହୋଇଥିଲେ ମୁଖ୍ୟମନ୍ତ୍ରୀ । ସେ ଥିଲେ ଖୁବ୍ ଦୟାଳୁ । ତାଙ୍କ ଶାସନକୁ କୁହାଯାଉଥିଲା ଦରବାରୀ ଶାସନ । ବୀରେନ୍‌ବାବୁ କହୁଥିଲେ ବିଜୁବାବୁ ରାମଚନ୍ଦ୍ର

ଓ ସେ ଭରତ । ସେଥିପାଇଁ ନିଜେ ଯୋଜନାବୋର୍ଡ଼ର ଅଧ୍ୟକ୍ଷ ନ ହୋଇ ବିଜୁବାବୁଙ୍କୁ କରିଥିଲେ। ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବରେ ସଚିବାଳୟର ଯେଉଁ କୋଠରିରେ ବସୁଥିଲେ ବୀରେନ୍‌ବାବୁ ସେ କୋଠରିରେ ନ ବସି ତାହା ବିଜୁବାବୁଙ୍କୁ ଛାଡ଼ି ଦେଇଥିଲେ। ବୀରେନ୍‌ବାବୁଙ୍କର ଧୈର୍ଯ୍ୟର ଘୋର ଅଭାବ ଥିଲା । ଶାସନର ମୁଖ୍ୟ ହିସାବରେ ସେ ଯେଉଁଭଳି ଆଚରଣ ପ୍ରଦର୍ଶନ କରିବା କଥା ସେ କରୁନଥିଲେ । ତାଙ୍କର ଚିନ୍ତାଧାରା, ଏପରିକି ତାଙ୍କ ନିଷ୍ପତ୍ତି ଘନଘନ ବଦଳି ଯାଉଥିବାର ନଜିର ରହିଛି ।

ତାଙ୍କର ମୁଖ୍ୟମନ୍ତ୍ରିତ୍ୱ କାଳରେ ପାର୍ସିଝିଅ ପିଲୁବେନର ଜିପ୍ ଦୁର୍ଘଟଣାରେ ମୃତ୍ୟୁ ହୋଇଥିଲା । ଏହି ମୃତ୍ୟୁ ପାଇଁ ଦୁର୍ଘଟଣାଟାକୁ ଏକ ଇଚ୍ଛାକୃତ ଦୁର୍ଘଟଣା ବୋଲି ପ୍ରଚାର କରାଯାଇ ମୁଖ୍ୟମନ୍ତ୍ରୀ ଓ ଅନ୍ୟ କେତେକ ମନ୍ତ୍ରୀଙ୍କୁ ଏଥିପାଇଁ ଦାୟୀ କରାଯାଇଥିଲା ଓ ପିଲୁବେନକୁ ଧର୍ଷଣ କରାଯାଇ ତାହାକୁ ଚପାଇ ଦେବାପାଇଁ ଦୁର୍ଘଟଣା ଘଟାଯାଇଛି ବୋଲି କୁହାଗଲା । ଖାନ୍ନା କମିସନ ନିକଟରେ ଅଭିଯୋଗ ହୋଇଥିଲା ଯେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ଓ ମନ୍ତ୍ରୀ ନୀଳମଣି ରାଉତରାୟ, ଜଗନ୍ନାଥ ରାଓ, ଟି ସାଙ୍ଗାନ୍ନା ପ୍ରମୁଖ ପାଶବିକ ଅତ୍ୟାଚାର ସହ ସଂପୃକ୍ତ ଥିଲେ। ସୁଦୂର ବମ୍ବେ ସହରରୁ ଏହି ପାର୍ସିଯୁବତୀ କୁମାରୀ ପିଲୁବେନ ଓଡ଼ିଶାକୁ ଆସିଥିଲା ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନର ସ୍ୱେଚ୍ଛାସେବିକା ରୂପେ । ତାଙ୍କର ଏହି ଦୁଃଖଦ ମୃତ୍ୟୁ ମୋ ମନରେ ବି ସେତେବେଳେ ଦାରୁଣ ଆଘାତ ଦେଇଥିଲା । ବିଚାରପତି ଖାନ୍ନା ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗରୁ ସେମାନଙ୍କୁ ମୁକ୍ତ କରି ଦେଇଥିଲେ। ଏହାର କିଛି ଦିନ ପରେ ବୀରେନ୍‌ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ଓ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ହୋଇଥିଲେ ସଦାଶିବ ତ୍ରିପାଠୀ ।

ମୁଁ ୧୯୬୧ ନିର୍ବାଚନରେ ହାରିଯିବା ପରେ ଆଉ ରାଜନୀତି ପ୍ରତି ଆଗ୍ରହ ପ୍ରକାଶ କରୁନଥିଲି । କେବଳ ଖବରକାଗଜରୁ ସେ ସମୟର ରାଜନୈତିକ ପରିସ୍ଥିତି ବିଷୟରେ ଅବଗତ ହେଉଥିଲି ।

ସେତେବେଳେ ହରେକୃଷ୍ଣ ମହତାବଙ୍କର କଂଗ୍ରେସ ସହ ଅପଡ଼ ହୋଇଯାଇଥିଲା । ଏକଦା ତାଙ୍କ ସୃଷ୍ଟ ନେତା ଓ ତାଙ୍କର ମୁଖ୍ୟ ସମର୍ଥକଥିବା ବିଜୁ ବୀରେନ୍, ନୀଳମଣି ତାଙ୍କର ଘୋର ବିରୋଧୀ ପାଲଟି ଯାଇଥିଲେ। କାଳକ୍ରମେ ରାଜା ମହାରାଜାଙ୍କ ସୃଷ୍ଟ ଗଣତନ୍ତ୍ର ପରିଷଦ ମଧ୍ୟ ସ୍ୱତନ୍ତ୍ର ଦଳରେ ରୂପାନ୍ତରିତ ହୋଇ ଯାଇଥିଲା ।



# ଅଭୁଲା ରାତି

୧୯୬୩ ମସିହା । କକା ଲକ୍ଷ୍ମୀକାନ୍ତଙ୍କର ଅବସ୍ଥା ଗୁରୁତର ବୋଲି ଖବର ପାଇ ଗାଆଁକୁ ଗଲି । ସୋର ଡାକ୍ତରଖାନାରେ ଥିବା ଡାକ୍ତର ଆସି ତାଙ୍କୁ ଚିକିତ୍ସା କରୁଥିଲେ । ମୁଁ ଗାଆଁରେ ପହଂଚିବା ବେଳେ ଡାକ୍ତରମଧ ରୋଗୀଙ୍କ ପାଖରେ ଉପସ୍ଥିତ ଥିଲେ। ତାଙ୍କ ସହିତ ଆଲୋଚନା ପରେ ସେ କହିଲେ ରୋଗୀଙ୍କୁ ଘରେ ନରଖି ତୁରନ୍ତ ଡାକ୍ତରଖାନାକୁ ସ୍ଥାନାନ୍ତର କରିବାକୁ ।

ସୋର ଡାକ୍ତରଖାନାକୁ ସେତେବେଳେ ରୋଗୀ ରହି ଚିକିତ୍ସା ହେବାର ବ୍ୟବସ୍ଥା ନଥିଲା । ତେଣୁ ମୁଁ ତାଙ୍କୁ ବାଲେଶ୍ୱର ଡାକ୍ତରଖାନାକୁ ନେଇ ଆସିଲି । ପ୍ରାୟ ରାତି ଏଗାରଟା ବେଳେ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଯାଇ ଗୋଟାଏ କେବିନ୍‌ରେ ରଖାଗଲା । ସିଭିଲ୍ ସର୍ଜନ ଈଶ୍ୱରୀ ପ୍ରସାଦ ଆଚାର୍ଯ୍ୟ ଆସି ତାଙ୍କୁ ଦେଖିଲେ। ଚିକିତ୍ସାର ସବୁ ପ୍ରକାର ବ୍ୟବସ୍ଥା ହେଲା ।

ମୁଁ ପ୍ରତିଦିନ ସଂଧ୍ୟାପରେ ଡାକ୍ତରଖାନାକୁ ଯାଉଥିଲି । ଘରୁ ଚାରି ପାଞ୍ଚଟା ଚେୟାର ଆଣି କେବିନ୍ ପିଣ୍ଡାରେ ପକାଯାଇଥିଲା । କିଛି ଓକିଲବଂଧୁ ମଧ ଆସି ପହଞ୍ଚି ଯାଉଥିଲେ। ରାତି ଦଶଟା ପର୍ଯ୍ୟନ୍ତ ଗପସପ କରି ଆମେ ଯେ' ଯାହାର ଘରକୁ ଫେରୁଥିଲୁ । ଭିକାରି ଡ୍ରାଇଭର ମୋତେ ଘରେ ଛାଡ଼ି ସାମିଲ୍‌କୁ ନ ଯାଇ ପୁଣି ଡାକ୍ତରଖାନାକୁ ଫେରିଯାଏ । ସେଇଠି ଜିପ୍ ରଖି ଶୁଏ । ତାକୁ କୁହାଯାଇଥାଏ ଯଦି ଦରକାର ପଡ଼େ ମୋତେ ଆସି ନେଇଯିବୁ ।

ସେ'ଦିନ ରାତିର କଥା । ପ୍ରାୟ ରାତି ଆଠ । ମୁଁ ଆଉ ଦୁଇଜଣ ଓକିଲ ବଂଧୁ କେବିନ ପିଣ୍ଡାରେ ବସିଛୁ । ଗୋଟାଏ ପୋଲିସ୍ ଜିପ୍ ଆସି କେବିନ୍ ସାମ୍‌ନାରେ ଛିଡ଼ାହୋଇଗଲା । ସେ ଜିପ୍‌ରୁ କିଛି ପୋଲିସ୍ ଓହ୍ଲାଇ ପଡ଼ିଲେ । ତା' ପଛରେ ଗୋଟାଏ ଏମ୍ବାସେଡ଼ର କାର୍ ଥାଏ । ଜିପ୍ ସାମନା୍‌ରେ ସେ' ବି ଆସି

ଠିଆ ହୋଇଗଲା । ସେଥିରୁ ଓହ୍ଲାଇ ପଡ଼ିଲେ ବାଲେଶ୍ୱର ସଦର ପଞ୍ଚାୟତ ସମିତିର ଚେୟାରମେନ ମନୋରଂଜନ ପାଣି । ସେ ମୋ କକାପୁଅ ସାନଭାଇ ଗୋଲକବାବୁଙ୍କର ଅଜାଶ୍ୱଶୁର ହେବେ । ସେ ପ୍ରାୟ ଦଉଡ଼ିବା ଗତିରେ ମୋ ପାଖରେ ଆସି ପହଞ୍ଚିଗଲେ ।

ମୁଁ ପଚାରିଲି - "ଅଜା କଣ ହେଇଚି ?"

ସେ କହିଲେ - "ନୀଳମଣି ବାବୁ ଆସିଛନ୍ତି । ନୀଳମଣି ରାଉତରାୟ- ଓଡ଼ିଶାର ଗୃହମନ୍ତ୍ରୀ ।"

ମୁଁ ତାଙ୍କୁ ଜାଣିଥିଲେ ବି ତାଙ୍କ ସହିତ ମୋର ଚାକ୍ଷୁଷ ପରିଚୟ ନଥିଲା ।

ନୀଳମଣିବାବୁ ଆସି ମୋ' ପାଖରେ ପହଞ୍ଚିଗଲେ । ମୁଁ ତାଙ୍କୁ ନମସ୍କାର କଲି । ସେ ପ୍ରତିନମସ୍କାର ଜଣାଇ କହିଲେ - "ଯଦୁବାବୁ; ତୁମ କକା କେଉଁଠି ଅଛନ୍ତି ?"

ମୁଁ ତାଙ୍କୁ ଦେଖାଇ ଦେଲି । ସେ କକାଙ୍କ ଶେଯ ପାଖକୁ ଗଲେ । ମୁଁ ଓ ଅଜା ବି ଗଲୁ । ତାଙ୍କୁ ଦେଖି ପିଣ୍ଡାକୁ ଫେରିଆସିଲୁ । ସେତେବେଳେ ମୋ ବଂଧୁ ଦୁଇଜଣ ଚାଲିଗଲେ । ଆମେ ପିଣ୍ଡାରେ ବସିବାପରେ ମୁଁ ମନ୍ତ୍ରୀଙ୍କୁ ପଚାରିଲି - "ସାର୍, ଆପଣ ମୋ ପାଖକୁ କାହିଁକି ଆସିଲେ ?"

ସେ ତାଙ୍କ ଚୁରୁଟ୍ ଲଗାଇ କହିଲେ - "ମନୋରଂଜନଠୁ ଶୁଣିଲି ଯେ ତୁମ କକା ଅସୁସ୍ଥ ହେଇ ହସ୍ପିଟାଲ୍‌ରେ ଅଛନ୍ତି । ଦେଖିବାପାଇଁ ଚାଲି ଆସିଲି ।"

ମୋ କକାଙ୍କୁ ଦେଖିବାକୁ ଚାଲି ଆସିଲେ - ଏ କଥାଟା କେମିତି ମୋ ମନକୁ ପାଇଲା ନାହିଁ । ମୁଁ ତାଙ୍କ କଥା ଶୁଣି ଚୁପ୍‌ହୋଇ ରହିଲି ।

ତା' ପରେ ସେ ତାଙ୍କ ଆସିବାର ଉଦ୍ଦେଶ୍ୟ ବିଷୟରେ କଥା ଆରମ୍ଭ କଲେ ।

କହିଲେ - "ଯଦୁବାବୁ; ସୋର ବିଧାୟକ କରୁଣାକର ପାଣିଗ୍ରାହୀ ବୁଢ଼ା ହୋଇଗଲେଣି, ଅସୁସ୍ଥ ବି ରହୁଛନ୍ତି । ମୁଁ ଆସିଛି ତୁମକୁ କଂଗ୍ରେସକୁ ନେବାପାଇଁ । ତୁମେ ଜମିଦାର ଘରର ପିଲା । ଓକିଲାତି କରୁଛ । ତୁମର ଅଭାବ କିଛି ନାହିଁ । ତୁମେ କଂଗ୍ରେସରେ ଯୋଗଦେଇ କାମ କର । ଆସନ୍ତାଥରକୁ ବିଧାନସଭାପାଇଁ ସୋରରୁ ଠିଆ ହେବ ।"

ମୁଁ ଅରାଜି ହେବାରୁ ସେ ମୋତେ ବୁଝାଇଲେ । ମୁଁ ଅବୁଝା ହେବାରୁ ସେ ମୋତେ ନାନା ପ୍ରକାର କଥା କହି ବୁଝାଇବାକୁ ଚେଷ୍ଟା କଲେ । କିଛି ସମୟ

କଥାବାର୍ତ୍ତା ପରେ ସେ ତାଙ୍କ ଗାଡ଼ି ପାଖକୁ ଗଲେ । ଗାଡ଼ିରେ ରଖି ଆସିଥିବା କଂଗ୍ରେସ୍ ଦଳର ସଭ୍ୟ ସଂଗ୍ରହ ବହିଟାକୁ ଧରି ମୋ ପାଖକୁ ଫେରି ଆସିଲେ । ବହିଟାକୁ ମୋ ଆଡ଼କୁ ବଢ଼େଇ କହିଲେ - "ମୁଁ ଆଜି ଆସିଛି ତୁମକୁ କଂଗ୍ରେସ୍‌କୁ ନେବାପାଇଁ । ତୁମେ ଦସ୍ତଖତ ନ କଲେ ମୁଁ ଆଜି ଏଠୁ ଯିବି ନାହିଁ ।"

ଅଜା ବି ମୋତେ ବୁଝେଇଲେ । ରାତି ୧୧ଟା ବାଜିଲାଣି । ମନେ ମନେ ଭାବିଲି - ଯାହା ହେବ ପଛେ ହେଉ ଦସ୍ତଖତ କରିଦେବି । ସଭ୍ୟ ସଂଗ୍ରହ ବହିଟା ତାଙ୍କ ହାତରୁ ଆଣି ଦସ୍ତଖତ କରିଦେଇ ତାଙ୍କୁ ଦେଇଦେଲି । ସେ ମୁହଁରେ ହସ ଫୁଟେଇ ବହିଟାକୁ ମୋ ହାତରୁ ନେଇ ଉଠି ପଡ଼ିଲେ । ତା'ପରେ ସର୍କିଟ୍ ହାଉସ୍ ଚାଲିଗଲେ । ଭିକାରି ଡ୍ରାଇଭର୍ ଜିପ୍‌ରେ ଆଣି ମୋତେ ଘରେ ଛାଡ଼ିଦେଲା । ମୋର ଆଉ କିଛି ଖାଇବାକୁ ଇଚ୍ଛା ହେଉ ନଥାଏ । ତଥାପି ସ୍ତ୍ରୀଙ୍କ ବାଧବାଧକତାରେ ଟିକିଏ ଖାଇଦେଇ ଶୋଇପଡ଼ିଲି ।

ରାତି ତିନ୍ । ଭିକାରି ଆସି ମୋତେ ଡାକିଲା । ମୁଁ ଉଠିପଡ଼ିଲି । କବାଟ ଖୋଲି ବାହାରକୁ ଆସି ପଚାରିଲି - କଣ ହେଲା ?

ସେ କହିଲା - "ବକା ଆପଣଙ୍କୁ ଭାରି ଖୋଜୁଛନ୍ତି ।"

କାଳ ବିଳମ୍ବ ନକରି ମୁଁ ଯାଇ ହସ୍ପିଟାଲରେ ପହଞ୍ଚିଗଲି । ବକା ଆଖି ଖୋଲି ମୋତେ ଚାହିଁଲେ ଓ କହିଲେ - "ଯଦୁ....."

ବାସ୍, ତା'ପରେ ସବୁ ଶେଷ । ସିଭିଲ୍ ସର୍ଜନଙ୍କୁ ଡାକିଲି । ସେ ଆସି ପରୀକ୍ଷା କରି ସେ ମୃତ ବୋଲି ଘୋଷଣା କଲେ । ମୋ ଆଖିରୁ ଝରଝର୍ ଲୁହ ଝରି ପଡ଼ିଲା । ଗୋଟାଏ ଭଡ଼ା ଗାଡ଼ିରେ ତାଙ୍କ ମୃତଦେହକୁ ଗାଆଁକୁ ଅଣାଯାଇ ମାଳୀବଗିଚା ଶ୍ମଶାନରେ ଶବ ସଂସ୍କାର କରାଗଲା ।

ସେହି ରାତି ଯେଉଁ ରାତିରେ ମୁଁ କଂଗ୍ରେସ୍ ଦଳରେ ଯୋଗଦେଲି ସେହି ରାତିରେ ପିତୃହରା ମୁଁ ମୋର ପରମ ଆଦରଣୀୟ ବକାଙ୍କୁ ହରାଇଲି । ସବୁ ଦୁଃଖଠାରୁ ଆତ୍ମୀୟଙ୍କ ମୃତ୍ୟୁ ହିଁ ମଣିଷକୁ ସବୁଠୁ ବେଶୀ ଦୁଃଖୀ କରାଏ । ବକାଙ୍କ ମୃତ୍ୟୁ ପୂର୍ବରୁ ଖୁଡ଼ୀ ହିଁ ମୃତ୍ୟୁବରଣ କରିଥିଲେ। ବର୍ତ୍ତମାନ ପରିବାରର ସମସ୍ତ ଦାୟିତ୍ୱ ବଡ଼ବାପାଙ୍କ ଉପରେ ପଡ଼ିଲା ।

ସେହି ରାତିଟି ମୋ ପାଇଁ ଅଭୁଲା ।



# ରାଜନୀତିରେ ପ୍ରଥମ ପାଦ

କଂଗ୍ରେସରେ ଯୋଗଦେବାର କେଇ ଦିନ ପରେ ମୋତେ ବାଲେଶ୍ୱର ଜିଲ୍ଲା କଂଗ୍ରେସର ସଂଗଠନ ସଂପାଦକ କରିଦିଆଗଲା । ଏ ନିଯୁକ୍ତିକୁ ଜିଲ୍ଲାର କିଛି ବରିଷ୍ଠ କଂଗ୍ରେସ୍ ନେତା, ଯେଉଁମାନେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ନୀଳମଣି ରାଉତରାୟଙ୍କର ବିରୋଧୀ ପାଳଟି ଯାଇଥିଲେ ସେମାନେ ବିରୋଧ କଲେ । ବିରୋଧର ମୁଖ୍ୟ ନେତୃତ୍ୱ ନେଇଥିଲେ ସ୍ୱାଧୀନତା ସଂଗ୍ରାମୀ ନୀଳାମ୍ବର ଦାସ । ଜାତୀୟ କଂଗ୍ରେସର ସଭାପତି କାମ୍‌ରାଜ ନାଦରଙ୍କ ନିକଟକୁ ଲେଖାଗଲା ଯେ କଂଗ୍ରେସର ସଂବିଧାନ ଅନୁଯାୟୀ କୌଣସି ବ୍ୟକ୍ତି ଦୁଇବର୍ଷ ପ୍ରାଥମିକ ସଦସ୍ୟ ରହିବା ପରେ ସକ୍ରିୟ ସଭ୍ୟ ହୋଇ ପାରିବ ଏବଂ ତାହା ପରେ ଯାଇ ଦଳର କର୍ମକର୍ତ୍ତା ରହିପାରିବ । ମୋର ପ୍ରାଥମିକ ସଭ୍ୟ ହେବାର ମାସେ ଦେଢ଼ମାସ ପରେ ମୁଁ ଜିଲ୍ଲା କଂଗ୍ରେସର ସଂଗଠନ ସଂପାଦକ ହୋଇ ପାରିବି ନାହିଁ । ଏ ନିଯୁକ୍ତି ସଂପୂର୍ଣ୍ଣ ବେଆଇନ୍ ବୋଲି ଥିଲା ସେମାନଙ୍କର ଯୁକ୍ତି ।

କିଛି ଦିନ ପରେ ଆପତ୍ତିକାରୀଙ୍କ ଚିଠିର ଉତ୍ତର ଆସିଲା । ଏଥିରେ ଲେଖାଥିଲା ଯେ – ବିଶେଷ ପରିସ୍ଥିତିରେ ଏଭଳି ନିଷ୍ପତ୍ତି ନିଆଯାଇଛି । ବିରୋଧ କରୁଥିବା ନେତାମାନେ ଏହାପରେ ଚୁପ୍ ରହିଲେ। କାମରାଜଙ୍କ ଏ ନିଷ୍ପତ୍ତି ମୋ ପାଇଁ ବରଦାନ ସଦୃଶ ହେଲା । ପରେ ମୁଁ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟୀର ସାଧାରଣ ସଂପାଦକ ହେଲି । ଜିଲ୍ଲା କଂଗ୍ରେସ୍ କମିଟୀର ସଂପାଦକ ଥିଲେ ଭଦ୍ରକ ଅଞ୍ଚଳର ରତ୍ନାକର ମହାନ୍ତି । ପରବର୍ତ୍ତୀ କାଳରେ ସେ ଭଦ୍ରକ ବିଧାନସଭା ଆସନରୁ କଂଗ୍ରେସ ବିରୋଧୀ ଦଳରୁ ବିଧାୟକ ହୋଇଥିଲେ।

ସେତେବେଳେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଯେଉଁ କଂଗ୍ରେସ ନେତାମାନେ ପ୍ରତିଷ୍ଠା ଅର୍ଜନ କରିଥିଲେ ସେମାନେ ହେଲେ କରୁଣାକର ପାଣିଗ୍ରାହୀ, ମହମ୍ମଦ

ହରିଙ୍ଗ୍, ନନ୍ଦକିଶୋର ଦାସ, ନୀଳାମ୍ବର ଦାସ, ଭାଗବତ ସାହୁ, ଗୋକୁଳାନନ୍ଦ ମହାନ୍ତି, ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ସତ୍ୟନାରାୟଣ ଦାସ, ଭୈରବ ଚନ୍ଦ୍ର ମହାପାତ୍ର, ଧନେଶ୍ୱର ଦାସ, ମୁରଲୀଧର ଜେନା, ଆଶୁତୋଷ ରାୟ, ଭୁବନ ଦତ୍ତଗୁପ୍ତ ପ୍ରମୁଖ । ଯଦିଓ ହରେକୃଷ୍ଣ ମହତାବ ଓ ନୀଳମଣି ରାଉତରାୟ ବାଲେଶ୍ୱର ଜିଲ୍ଲାର ଲୋକ ଏବଂ ଏହି ଜିଲ୍ଲାରୁ ନିର୍ବାଚିତ ହୋଇ ଯାଉଥିଲେ କିନ୍ତୁ ସେମାନେ ଜିଲ୍ଲା ରାଜନୀତିରେ ନ ରହି ରାଜ୍ୟ ରାଜନୀତିରେ ପ୍ରତିଷ୍ଠା ଅର୍ଜନ କରିଥିଲେ ।

ଟାଉନ୍‌ପ୍ରେସ୍‌ର ସ୍ୱତ୍ତ୍ୱାଧିକାରୀ, ଏମ୍.ଏଲ୍.ଏ. ହୋଇଥିବା ଯୁବନେତା ବିଜୟକୃଷ୍ଣ ଦେଙ୍କ ସହିତ ମୋର ବଂଧୁତାର ସୂତ୍ରପାତ ହୋଇଥିଲା । ବିଜୟବାବୁ ଥିଲେ ଭାରି ମେଳାପି ମଣିଷ ।



# ସେ ବେଳର ଆଉ କିଛି କଥା

ବାଲେଶ୍ୱର ସହରର ମୋତିଗଞ୍ଜ ବଜାର ଏକ ପୁରୁଣା ବଜାର । ସ୍ୱାଧୀନତା ଆନ୍ଦୋଳନ ସମୟରେ ହରେକୃଷ୍ଣ ମହତାବ ଏହିଠାରୁ ହିଁ ପ୍ରଥମ କରି ସାପ୍ତାହିକ ପତ୍ରିକା ଭାବରେ 'ପ୍ରଜାତନ୍ତ୍ର'କୁ ପ୍ରକାଶ କରାଇଥିଲେ। ବଜାରର ଯେଉଁସ୍ଥାନରେ ପ୍ରଜାତନ୍ତ୍ର ପ୍ରକାଶ ପାଉଥିଲା ସେଠାରୁ ଅଳ୍ପ ଦୂରରେ ଅଛି ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟୀ ଅଫିସ୍ । ଖୁବ୍ ପ୍ରଶସ୍ତ ଜାଗା, ଆଖିଦୃଶିଆ ପୋଖରି । କେତେ ଗୁଡ଼ିଏ ପକ୍କାଘର ଓ ସଭାସମିତି ପାଇଁ ଏକ ହଲ୍ ଅଛି ।

କଂଗ୍ରେସ ଅଫିସ୍ ଦାୟିତ୍ୱରେ ସୁନହଟ ପାଖ ପାତରପଡ଼ା ଗାଆଁର ପୂର୍ଣ୍ଣଚନ୍ଦ୍ର ଗିରି ରହିଥିଲେ । ସେ ଗୋଟିଏ କୋଠରିରେ ରହନ୍ତି । ତାଙ୍କ ପାଖ କୋଠରିରେ ରହୁଥିଲେ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ । ତାଙ୍କ ପ୍ରଥମ ସ୍ତ୍ରୀଙ୍କ ବିୟୋଗ ପରେ ସେ ଦ୍ୱିତୀୟ ଦାର ଗ୍ରହଣ କରିଥିଲେ। ସେ ବି ଅନେକ ସମୟରେ ଆସି କଂଗ୍ରେସ ଅଫିସ୍‌ରେ ରହୁଥିଲେ । ସେ ସମୟରେ ଅନ୍ୟ ଜଣେ ବରିଷ୍ଠ କଂଗ୍ରେସ କର୍ମୀ ତଥା ସ୍ୱାଧୀନତା ସଂଗ୍ରାମୀ ରେମୁଣା ଅଞ୍ଚଳର ଲକ୍ଷ୍ମଣ କମିଳା ପ୍ରତ୍ୟେକ ଦିନ ତାଙ୍କ ଘରୁ ସାଇକେଲ୍‌ରେ ଆସୁଥିଲେ। ରାତି ପର୍ଯ୍ୟନ୍ତ କଂଗ୍ରେସ ଅଫିସ୍‌ରେ ରହି ସାଇକେଲ୍‌ରେ ଘରକୁ ଫେରୁଥିଲେ । କରୁଣାକର ପାଣିଗ୍ରାହୀ ମଧ୍ୟ ବାଲେଶ୍ୱରରେ ଥିବାବେଳେ ପ୍ରାୟ ପ୍ରତ୍ୟହ ଦିନ କଂଗ୍ରେସ୍ ଅଫିସ୍ ଆସୁଥିଲେ। ମୋଫସଲ ଅଞ୍ଚଳର ବହୁକର୍ମୀ କିଏ କଚେରି କାମରେ, କିଏ ବଜାରରୁ ଜିନିଷପତ୍ର କିଣିବା କାମରେ ବା କିଏ କଂଗ୍ରେସ କାମରେ ଆସି ଦି ପହର ବେଳେ ଏଠି ପହଞ୍ଚି ଯାଉଥିଲେ । ଅଫିସ୍‌ରେ ପ୍ରତ୍ୟହ ସକାଳ ଓଳି ରନ୍ଧାବଢ଼ା ହେଉଥିଲା ଓ ସମସ୍ତେ କଂଗ୍ରେସ ଅଫିସ୍‌ରେ ଭୋଜନ କରୁଥିଲେ। ବିଜୟ କୃଷ୍ଣ ଦେ ବାଲେଶ୍ୱରରେ ଥିବାବେଳେ ପ୍ରତ୍ୟେକ ଦିନ ଅଫିସ୍ ଆସୁଥିଲେ।

ବେଳେବେଳେ ମୋ'ରି ଜିପ୍‌ରେ ମୁଁ, କରୁଣାକର ପାଣିଗ୍ରାହୀ, ସତ୍ୟନାରାୟଣ ଦାସ ସଭାପତି ହନିଫ ବାବୁଙ୍କ ପାଖକୁ ଭଦ୍ରକ ଯାଉଥିଲୁ । ତାଙ୍କୁ ନେଇ କଟକ ସ୍ୱରାଜ ଆଶ୍ରମ ମଧ୍ୟ ଯାଉଥିଲୁ । ଅନେକ ସମୟରେ ଡ୍ରାଇଭର୍‌କୁ ପଛରେ ବସାଇ ମୁଁ ଜିପ୍ ଚଳାଇ ଯାଉଥିଲି ।

ସେ ସମୟରେ ଜାତୀୟ ରାଜପଥ ହୋଇନଥିଲା । ସଡ଼କର ନାମ ଥିଲା ଜଗନ୍ନାଥ ସଡ଼କ । ଖରସୁଆଁ ନଦୀ ଉପରେ ଖରାଦିନିଆ ରାସ୍ତା ବା ପୋଲ ନଥିଲା । ଗାଡ଼ିମାନଙ୍କୁ ଏପରିକି ବସ୍‌ମାନଙ୍କୁ ମଧ୍ୟ ଡଙ୍ଗାରେ ପାରି ହେବାକୁ ପଡୁଥିଲା ।

ଦିନ କେଇଟା ଭିତରେ ମୁଁ କଂଗ୍ରେସ ଲୋକମାନଙ୍କର ପ୍ରିୟ ଭାଜନ ହୋଇ ପାରିଥିଲି ।

ଓକାଲତି ବ୍ୟବସାୟ, କରତକଳ ବ୍ୟବସାୟ କମି କମି ଯାଉଥିଲା । ଜମିଦାରର ଜଂଜାଳ ମଧ୍ୟ ନଥିଲା କାରଣ - ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଜମିଦାରି ଉଚ୍ଛେଦ ହୋଇଯାଇଥିଲା । ଜମିଦାରି ଉଚ୍ଛେଦପରେ ବିଭିନ୍ନ ଗାଆଁରେ ଆମର ପ୍ରାୟ ହଜାରେ ଏକର ଜମିଥିଲା । ବଡ଼ବାପା ସେ ସବୁ ବୁଝାବୁଝି କରୁଥିଲେ । ସେ ମଧ୍ୟ ଜଣେ ରେଜିଷ୍ଟାର୍ଡ଼ ଋଣଦାତା ଥିଲେ। ଲକ୍ଷାଧିକ ଟଙ୍କାର ଋଣ କାରବାର କରୁଥିଲେ। ମୁଁ ଆର୍ଥିକ ଦୃଷ୍ଟିରୁ କେତେବେଳେ ଅସୁବିଧାର ସମ୍ମୁଖୀନ ହେଉ ନଥିଲି ।

ମୁଁ ଜିଲ୍ଲା କଂଗ୍ରେସର ସାଧାରଣ ସଂପାଦକ ଥିବାବେଳେ କଂଗ୍ରେସ୍ ଅଫିସ ପରିଚାଳନା ଓ ଖାଇବା ପିଇବା ଖର୍ଚ୍ଚ ବାବଦକୁ ବେଳେବେଳେ ମୋତେ ବି କିଛି ଦେବାକୁ ପଡୁଥିଲା । ପୂଝାରୀ କାମରେ ନିଯୁକ୍ତ ଥିବା କରୁଣା ବେଳେବେଳେ ସକାଳେ ବେଗ୍‌ଟିଏ ସାଇକେଲ୍‌ରେ ଝୁଲାଇ ଆମ ଘରକୁ ଆସେ ଏବଂ କହେ - "ବାବୁ ! ଆଜି ଚାଉଳ ପରିବା କିଛି ନାହିଁ ।" ମୁଁ ତାକୁ ୧୦/୧୫ ଟଙ୍କା ଦେଇ ଦିଏ । ଆମ ଘର ପାଖରେ ଥିବା ନୂଆ ବଜାରରୁ ସେ ଚାଉଳ ପରିବା କିଣି ନେଇ ଚାଲିଯାଏ । ସେତେବେଳେ ୧୦/୧୫ ଟଙ୍କାର ଚାଉଳ ପରିବା ଯଥେଷ୍ଟ ଥିଲା ।

ନୀଳଗିରିର କଂଗ୍ରେସ ନେତା ଓ ପଞ୍ଚାୟତ ସମିତିର ଚେୟାରମେନ୍ ହୋଇଥିବା ବଳରାମ ରାଜ, ବସ୍ତାର ଅକ୍ଷୟ ନାରାୟଣ ପ୍ରହରାଜ ଯେ' କି ବିଧାୟକ ମଧ୍ୟ

ହୋଇଥିଲେ ଅନେକ ସମୟରେ କଂଗ୍ରେସ୍ ଅଫିସ୍‌କୁ ଆସୁଥିଲେ । ମୋତିଗଞ୍ଜର ଲୁଗା ଦୋକାନୀ ମାଲିରାମ୍ ସାହା, ନୂଆବଜାର ଆମ ଘର ପାଖରେ ରହୁଥିବା ଜ୍ୱାଳା ପ୍ରସାଦ ସରାଓଗୀ ପ୍ରମୁଖ ଦରକାରବେଳେ କଂଗ୍ରେସ୍ ଅଫିସ୍‌କୁ କିଛି କିଛି ଆର୍ଥିକ ସହାୟତା ପ୍ରଦାନ କରୁଥିଲେ ।

ସେ ବେଳର ସାମ୍ବାଦିକ ରେମୁଣା ଅଞ୍ଚଳର ଜୟନ୍ତି କୁମାର ଘୋଷ, ମୋତିଗଞ୍ଜ ଅଞ୍ଚଳର ଅନିରୁଦ୍ଧ ନନ୍ଦ ପ୍ରମୁଖ ମଧ୍ୟ କଂଗ୍ରେସ ଅଫିସ୍‌କୁ ନିୟମିତ ଭାବରେ ଆସୁଥିଲେ ।

ଜିଲ୍ଲାରେ ୩୦/୪୦ଟି ଚାଉଳକଳ ଥିଲା । ସେମାନେ ମଧ୍ୟ କଂଗ୍ରେସ୍‌କୁ ଚଳାଇବାପାଇଁ କିଛି କିଛି ସାହାଯ୍ୟ କରୁଥିଲେ ।

କଂଗ୍ରେସ୍ ଅଫିସ୍‌କୁ ଲାଗିକରିଥିବା କିଛି ଜାଗା ମଧ୍ୟ ସେ ସମୟରେ ଜିଲ୍ଲା କଂଗ୍ରେସ୍ ନାଆଁରେ କିଣା ଯାଇଥିଲା ।



# ସୋର : ଅତିପ୍ରିୟ ମୋର

ସୋରରୁ ବିଧାନସଭାକୁ ପ୍ରାର୍ଥୀ ହେବାର ନିଶା କ୍ରମଶଃ ମୋତେ ଘାରୁଥାଏ । ସେ ସମୟରେ ସୋରରୁ ବିଧାୟକ ଥିବା କରୁଣାକର ପାଣିଗ୍ରାହୀଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଭଲ ରହୁନଥାଏ । ଯଦିଓ ମୁଁ ବାଲେଶ୍ୱରରେ ରହୁଥିଲି, କିନ୍ତୁ ପ୍ରତି ସପ୍ତାହରେ ଥରେ ଦି'ଥର ସୋର ଆସୁଥିଲି । ପିଲାଦିନେ ରାଧାନାଥ ଗ୍ରନ୍ଥାବଳୀରେ ସୋରର ବର୍ଣ୍ଣନା ମୁଁ ପଢ଼ିଥିଲି । ସେ ଲେଖିଛନ୍ତି –

"ରଣବିଶାରଦ ଶୂରଙ୍କର ଭୂମି ସୋର କଥିତ
କମଳାଳଙ୍କୃତ ସର ରାଜେ ଯହିଁ ସ୍ମରଣାତୀତ;
ସୋରବାସୀଙ୍କର ଦୂରିତ ବାରଣ-ମଙ୍ଗଳଝଣ୍ଡା
ରୂପେ ଚମକଇ ଯହିଁ ଉଗ୍ରଚଣ୍ଡୀ ଖେଳାଇ ଖଣ୍ଡା;
ମହମାନ ପୃଷ୍ଠେ ଶୋଭଇ ମଙ୍ଗଳପୁର ରୁଚିର
ପୃଷ୍ଠେ ଶୋଭେ ଯା'ର ଅଭ୍ରଂକଷ ଦେବ ଗିରି ପ୍ରାଚୀର,
ତମୋମୟ ଶିଳାଖଣି ସ୍ଥିତ ଯହିଁ ଶଇଳପଦେ
ମୁଖର ଅରଣ୍ୟ ଯହିଁ ଶିଳା ଶିଳ୍ପୀ ଶାଣ ଶବଦେ;
ପାଟଣା ମଣ୍ଡଳ ସରାଗେ ମଣ୍ଡନ୍ତି ଯହିଁ ଶିଖରୀ
ନୃମୁଣ୍ଡ ମାଳିନୀ ଉଗ୍ରଚଣ୍ଡୀ ଦେବୀ ମଣ୍ଡଳେଶ୍ୱରୀ

ସରହାର ଯାର ଟଙ୍କୁ ଝରୁଅଛି ପବିତ୍ର ଧାର
କାଁଶବାଁସ ନାମେ ସୋର କଣ୍ଠେ ଗଜ-ମୁକ୍ତାହାର,
ଯା ରୁଚିର ତୀରେ ସ୍ଫୁରି ପରିମଳ ମୟ ମଳୟ
ପୁଷ୍ପିତ ପଳାଶେ ସିନ୍ଦୂରିତ କରେ ଆଶା ବଳୟ.....
ଇତ୍ୟାଦି ଇତ୍ୟାଦି..... (ଉଷା)

ଏହି ବର୍ଣ୍ଣନାରୁ ସୋର ଓ ତାର ଆଖପାଖ ଅଞ୍ଚଳର ମହତ୍ତ୍ୱ ବୁଝାପଡ଼େ ।

ସୋର ଏକ ସୁଗମ୍ୟ ନିର୍ବାଚନ ମଣ୍ଡଳୀ । ପଶ୍ଚିମରେ ନୀଳଗିରି ଦେବଗିରି ପର୍ବତମାଳା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ କାଁଶବାଁଶ ନଦୀ, ଉତ୍ତରରେ ଖନ୍ତାପଡ଼ାସ୍ଥ ଦାଣ୍ଡକାଳୀ ଠାକୁରାଣୀ । ଏହି ନିର୍ବାଚନ ମଣ୍ଡଳୀଟି ଏକ ସମକୋଣୀ ଅଞ୍ଚଳ । ଏହି ନିର୍ବାଚନ ମଣ୍ଡଳୀରୁ ସ୍ୱାଧୀନତାପରର ପ୍ରଥମ ବିଧାୟକ ହେଉଛନ୍ତି ନୀଳମଣି ରାଉତରାୟ । ପରେ ୧୯୫୨ ମସିହାରେ ଧାମନଗର ନିର୍ବାଚନ ମଣ୍ଡଳୀରୁ ଜୟଲାଭ କରି ସେ ହୋଇଥିଲେ ଉପମନ୍ତ୍ରୀ । ସେ ତାଙ୍କ ଆତ୍ମଜୀବନୀ ସ୍ମୃତି ଓ ଅନୁଭୂତି" ପୁସ୍ତକରେ ଲେଖିଛନ୍ତି ଯେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସେ ଥିଲେ କନିଷ୍ଠତମ ଉପମନ୍ତ୍ରୀ ।

୧୯୫୨ ମସିହାରେ ନନ୍ଦ କିଶୋର ଦାସ ସୋର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାର ବାଚସ୍ପତି ହୋଇଥିଲେ । ସେହି ବିଧାନସଭାର ଉପବାଚସ୍ପତି ହୋଇଥିଲେ ଭଦ୍ରକରୁ ନିର୍ବାଚିତ ମୌଲବି ମହମ୍ମଦ ହନିଫ୍ ।

୧୯୫୭ ମସିହା ନିର୍ବାଚନରେ ସୋରରୁ କଂଗ୍ରେସ୍ ପ୍ରାର୍ଥୀ ହୋଇଥିଲେ ହରେକୃଷ୍ଣ ମହତାବ ଓ ତାଙ୍କର ପ୍ରତିଦ୍ୱନ୍ଦୀଥିଲେ ଓକିଲ ବାସୁଦେବ ନାୟକ । ଏହି ନିର୍ବାଚନ ପୂର୍ବରୁ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେଇଥିଲେ ଓ ମହତାବବାବୁ ମୁଖ୍ୟମନ୍ତ୍ରୀ ହୋଇଥିଲେ ଓ ସୋରରୁ ଜିତିବାପରେ ପୁନର୍ବାର ମୁଖ୍ୟମନ୍ତ୍ରୀ ଆସନ ଅଳଂକୃତ କରିଥିଲେ । ଏହି ମନ୍ତ୍ରିମଣ୍ଡଳରେ ନୀଳମଣିବାବୁ କେବିନେଟ୍ ମନ୍ତ୍ରୀ ହୋଇଥିଲେ। ନୀଳଗିରି ନିର୍ବାଚନ ମଣ୍ଡଳୀରୁ ନୀଳାମ୍ବର ଦାସ ଜୟଯୁକ୍ତ ହୋଇଥିଲେ । ୧୯୬୧ ମସିହା ନିର୍ବାଚନରେ ସୋରରୁ ଜୟଯୁକ୍ତ ହେଲେ କରୁଣାକର ପାଣିଗ୍ରାହୀ । ତାଙ୍କ ସମୟରେ ସୋର ଅଞ୍ଚଳର ଯେଉଁ ବିଶିଷ୍ଟ କଂଗ୍ରେସ କର୍ମୀମାନେ ଥିଲେ ସେମାନେ ହେଲେ ଭୋଳାନାଥ ଦାଶ, ବୃନ୍ଦାବନ ଦାଶ, ଶଚୀନ୍ଦ୍ରନାଥ ତ୍ରିପାଠୀ, ଗଜେନ୍ଦ୍ର ମାଝୀ, ପ୍ରାଣବଂଧୁ ପଣ୍ଡା, ଜାନକୀ ବଲ୍ଲଭ ଦାସ, ଅନନ୍ତ ପ୍ରସାଦ ପଣ୍ଡା, ବାସୁଦେବ ମହାନ୍ତି ପ୍ରମୁଖ । ମୁଁ ସେତେବେଳେ ବିଧାୟକ ନଥିଲେ ମଧ୍ୟ ଏମାନଙ୍କ ସହିତ ମୋର ଭଲ ସଂପର୍କ ଥିଲା ।

୧୯୫୭ ମସିହାରେ ମେଦିନୀପୁର ଅଞ୍ଚଳରୁ ମାଣତ୍ରୀ ଗ୍ରାମକୁ ବୋହୂ ହୋଇ ଆସିଥିଲେ ଶକୁନ୍ତଳା ପଣ୍ଡା । ସମାଜ ସେବା ହିଁ ଥିଲା ତାଙ୍କର ଆଦର୍ଶ । ସେ କଂଗ୍ରେସ ଦଳରେ ସାମିଲ୍ ହୋଇ କଂଗ୍ରେସ୍ କାମ କରୁଥିଲେ। ଆଉ ଜଣେ

ମହିଳା ଯେ' କି ସୋର ଅଞ୍ଚଳରେ ବିବାହ କରିଥିଲେ, ଯାହାଙ୍କର ନାମ ନିର୍ମଳପ୍ରଭା ମହାପାତ୍ର ସେ ଓ ମୋ ଖୁଡ଼ୀଶାଶୁଙ୍କର ସାନଭଉଣୀ ଲକ୍ଷ୍ମୀପ୍ରିୟା ପଣ୍ଡା ମଧ୍ୟ କଂଗ୍ରେସ୍‌ର କାମ କରୁଥିଲେ। ସୋର ବଜାରର ଦୁଇଜଣ ବ୍ୟବସାୟୀ କେଶବଲାଲ୍ ଟି. ଭୋରା, ହଜାରୀଲାଲ୍ ଖଣ୍ଡେଲ୍‌ୱାଲ୍ ଓ କବିରାଜ ନିରାକାର ପଣ୍ଡା ମଧ୍ୟ କଂଗ୍ରେସ ଦଳ ସହିତ ସୁସଂପର୍କ ରଖିଥିଲେ ।

ପରବର୍ତ୍ତୀ କାଳରେ ମୁଁ ମନ୍ତ୍ରୀ ଥିବାବେଳେ ସୋର ବଜାର ଓ ଚାରିପାଖର କିଛି ଗାଆଁକୁ ନେଇ ଏନ୍.ଏ.ସି (ବିଜ୍ଞାପିତ ଅଞ୍ଚଳ) କରାଯାଇଥିଲା । ତା ୨୨.୬.୧୯୭୫ ରିଖ ଦିନ ତତ୍କାଳୀନ ରାଜ୍ୟପାଳ ଆକ୍‌ବର ଅଲୀ ଖାଁ ଏହାକୁ ଉଦ୍‌ଘାଟନ କରିଥିଲେ। ସୋରରେ ବହୁ ବିଭାଗର ଆଞ୍ଚଳିକ ଅଫିସ୍‌ମାନ ପ୍ରତିଷ୍ଠା କରାଯାଇଥିଲା ।



# ୧୯୬୪- ଭୁବନେଶ୍ୱରରେ କଂଗ୍ରେସ୍ ଅଧିବେଶନ

୧୯୬୪ ମସିହାରେ ଭୁବନେଶ୍ୱରଠାରେ କଂଗ୍ରେସ୍‌ର ସର୍ବଭାରତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେ ଅଧିବେଶନର ଚମତ୍କାରିତା ଏବେ ବି ମୋ ମାନସ ପଟରେ ଜୀବନ୍ତ ହୋଇ ରହିଛି ।

ସ୍ୱାଧୀନତା ଆନ୍ଦୋଳନରେ ସବୁକୁ ତୁଚ୍ଛକରି ନିଜ ଜୀବନକୁ ଉତ୍ସର୍ଗ କରିଥିବା ଉତ୍କଳମଣି ଗୋପବନ୍ଧୁଙ୍କ ନାମରେ ନାମିତ ହୋଇଥିଲା । ଅଧିବେଶନସ୍ଥଳ ଯାହାର ନାମ ରଖାଯାଇଥିଲା ଗୋପବନ୍ଧୁ ନଗର । ସଭାମଣ୍ଡପଟି ଖୁବ୍ ଆକର୍ଷଣୀୟ ଥିଲା । ଅଧିବେଶନ ପାଇଁ ଭାରତୀୟ ଡାକତାର ବିଭାଗ ଗୋପବନ୍ଧୁଙ୍କ ସ୍ମୃତିର ପ୍ରଚଳନ କରିଥିଲେ ଏକ ଡାକଟିକେଟ ।

ବାଲେଶ୍ୱରରୁ ମୋ ସହିତ ଅନେକ କଂଗ୍ରେସକର୍ମୀ ଏହି ଅଧିବେଶନକୁ ଯାଇଥିଲେ । ଭାରତର ବିଭିନ୍ନ ପ୍ରାନ୍ତରୁ ହଜାର ହଜାର କଂଗ୍ରେସକର୍ମୀ ଏହି ଅଧିବେଶନରେ ଯୋଗ ଦେଇଥିଲେ । ସେମାନଙ୍କ ରହିବା ଓ ଖାଇବାର ବ୍ୟବସ୍ଥା ମଧ୍ୟ ସେହି ପଡ଼ିଆରେ କରାଯାଇଥିଲା । ଆମିଷ ଓ ନିରାମିଷ ଖାଦ୍ୟ ଦୁଇଟି ପୃଥକ ତମ୍ବୁରେ ଓ ଓଡ଼ିଶା ଲୋକଙ୍କ ପାଇଁ ଏକ ଅଲଗା ତମ୍ବୁ ତଳେ କରାଯାଇଥିଲା । ଖାଇବା ପାଇଁ କୁପନ୍‌ର ବ୍ୟବସ୍ଥା ହୋଇଥିଲା ।

ଆଗ୍ରହର ସହିତ ଆମେ ଯାଇ ବସିଥାଉ । ସଭାପତି କାମରାଜ ନାଦର ଓ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କୁ ଅପେକ୍ଷା । ଯଥା ସମୟରେ ସେମାନେ, କଂଗ୍ରେସର ଅନ୍ୟ ବରିଷ୍ଠ ନେତାମାନେ ଓ ବିଜୁ ପଟ୍ଟନାୟକ ଆସି ପହଞ୍ଚିଲେ ଓ ସଭାମଣ୍ଡପ ଉପରକୁ ଗଲେ । ପଣ୍ଡିତ ନେହେରୁଙ୍କୁ ପୂର୍ବରୁ ମୁଁ କେବେ ଦେଖି ନଥିଲି । ତାଙ୍କ ସହିତ ଇନ୍ଦିରା ଗାନ୍ଧି ମଧ୍ୟ ଆସିଥିଲେ । ସେମାନେ ମଣ୍ଡପ ଉପରକୁ ଯିବାପରେ ଚାରିଆଡୁ ତାଳି ବୃଷ୍ଟି । ପଣ୍ଡିତ ନେହେରୁ ଆତ୍ମବିଭୋର

ହୋଇ ଚାରିଆଡ଼କୁ ଚାହିଁ ତାଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ବସିଗଲେ । କିନ୍ତୁ ହାୟ ! କିଛି ସମୟ ପରେ ସେ ଅସୁସ୍ଥ ଅନୁଭବ କରିବାରୁ ଇନ୍ଦିରା ଗାନ୍ଧି ଓ ବିଜୁପଟ୍ଟନାୟକ ତାଙ୍କୁ ମଞ୍ଚ ଉପରୁ ତଳକୁ ଆଣି ରାଜଭବନକୁ ନେଇ ଯାଇଥିଲେ ।

ପଣ୍ଡିତ ନେହେରୁ ଆଉ ଅଧିବେଶନରେ ଯୋଗଦେଇ ନ ପାରି ଗୋଟିଏ ଦିନ ରାଜଭବନରେ ରହି ପରଦିନ ଦିଲ୍ଲୀ ଯାତ୍ରା କରିଥିଲେ । ତାଙ୍କର ଏହି ଭୁବନେଶ୍ୱର ଗସ୍ତ ଥିଲା ତାଙ୍କ ଜୀବନର ଶେଷ ଗସ୍ତ । ତା ୨୭.୫.୧୯୬୪ ରିଖ ଦିନ ସେ ଏହି ସଂସାରରୁ ଚିରଦିନ ପାଇଁ ବିଦାୟ ନେଲେ ।

ଭୁବନେଶ୍ୱର କଂଗ୍ରେସ ଅଧିବେଶନ ଆଦର୍ଶ ଦୃଷ୍ଟିରୁ ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ଅଧିବେଶନ ସଂପର୍କରେ ବିଶିଷ୍ଟ ଗ୍ରନ୍ଥକାର ହର୍ଷବର୍ଦ୍ଧନ ମାଲବ୍ୟ ଲେଖିଛନ୍ତି -

"The Bhubaneswar Resolution on Democracy and Socialism clearly laid down that Indian planning should be conciously so directed that it leads to creation of a socialsit society. It called for elimination of privileges, disparities, and exploitation. It warned against concentration of wealth and means of production in a few hards. It called upon a ceiling on income and property in private hands, for worker's participation in management. Completion of entire programme of card reforms within two years".... ଇତ୍ୟାଦି ।

ସମାଜବାଦୀ ଢାଞ୍ଚାର ସୃଷ୍ଟି ଏବଂ ସେଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମର ପରିକଳ୍ପନା ଏହି ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ହିଁ ହୋଇଥିଲା ।

ଏହି ଅଧିବେଶନ ମୋର ରାଜନୈତିକ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଥିଲା । ରାଜନୀତିଜ୍ଞମାନଙ୍କର ଜୀବନ ଦରିଦ୍ର ଜନତାର ସେବାପାଇଁ ଉତ୍ସର୍ଗୀକୃତ ହେବା ଉଚିତ ଓ ସେମାନେ ଦେଶର ଓ ରାଜ୍ୟର ଅନଗ୍ରସରତା ଦୂରକରିବା, ନୂତନ ପିଢ଼ିର ମଣିଷଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ଓ ସମସ୍ତଙ୍କ ପାଇଁ ଆଦର୍ଶ ସ୍ଥାନୀୟ ହେବା ଉଚିତ ।

ଏହାପରେ ମୁଁ ମନପ୍ରାଣ ଦେଇ କଂଗ୍ରେସର ଘୋଷିତ ପନ୍ଥାରେ କାମ କଲି ।

୧୯୬୫ ମସିହା ଜୁନ୍‌ମାସରେ ନିଖିଳ ଭାରତ କଂଗ୍ରେସ କମିଟୀର ସଭାପତି କାମରାଜ ନାଦର ଓଡ଼ିଶା ଗସ୍ତରେ ଆସି ପ୍ରାୟ ୭ ଦିନ ଓଡ଼ିଶାରେ ରହିଥିଲେ

ଓ ଓଡ଼ିଶାର ବିଭିନ୍ନ ଜିଲ୍ଲାକୁ ଯାଇଥିଲେ । ବାଲେଶ୍ୱରକୁ ମଧ୍ୟ ଗୋଟିଏ ଦିନ ଆସିଥିଲେ। ଦିନବେଳା ସଭା ସାରି ସଂଧ୍ୟାରେ ଜିଲ୍ଲା ସଂଗଠନ ବିଷୟରେ ସେ ହନିଫବାବୁ ଓ ମୋ ସହିତ ବିସ୍ତୃତ ଆଲୋଚନା କରିଥିଲେ। ତାଙ୍କ ସହିତ ବିଜୁବାବୁ ମଧ୍ୟ ଆସିଥିଲେ । ଉଭୟ ବାଲେଶ୍ୱର ସର୍କିଟ୍ ହାଉସ୍‌ରେ ରାତ୍ରିଯାପନ କରିଥିଲେ।

ପୁରୀ ଜିଲ୍ଲାର କୁହୁଡ଼ିଠାରେ ଅନୁଷ୍ଠିତ ରାଜନୈତିକ ସମ୍ମିଳନୀରେ ସେ ଯୋଗ ଦେଇଥିଲେ ।



# ୧୯୬୭ ନିର୍ବାଚନ

ଓଡ଼ିଶାର ୧୯୬୧ ମସିହାରେ ଗଠିତ କଂଗ୍ରେସ ସରକାର ବହୁ ଉଠାଣି ଉଜାଣି ରାସ୍ତାରେ ଗତିକରି ୧୯୬୭ ମସିହାରେ ନିର୍ବାଚନର ସମ୍ମୁଖୀନ ହୋଇଥିଲା । କଂଗ୍ରେସ୍‌ର ମୁଖ୍ୟ ବିରୋଧୀ ଥିଲା ହରେକୃଷ୍ଣ ମହତାବଙ୍କର ଜନକଂଗ୍ରେସ ଦଳ ଓ ପାଟଣା ମହାରାଜା ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କର ସ୍ୱତନ୍ତ୍ର ଦଳ । ସୋର ନିର୍ବାଚନ ମଣ୍ଡଳୀରୁ ମୁଁ ହେଲି କଂଗ୍ରେସ ପ୍ରାର୍ଥୀ । ମୋ ପ୍ରାର୍ଥିତ୍ୱକୁ ମହତାବଙ୍କ ସହିତ ସଂପର୍କ ରଖିଥିବା କିଛି କଂଗ୍ରେସ୍ ଲୋକ ସମର୍ଥନ କଲେ ନାହିଁ । ଅତୀତରେ ମୁଁ, ରାଜେନ୍ଦ୍ର ପ୍ରସାଦ ଦାଶ ଓ ହର ପ୍ରସାଦ ମହାପାତ୍ର ଓକିଲ ଭାବରେ ଖୁବ୍ ଘନିଷ୍ଠ ଥିଲୁ । କିନ୍ତୁ ଏହି ନିର୍ବାଚନରେ ଆମେ ତିନିଜଣ ତିନୋଟି ଦଳରୁ ପ୍ରାର୍ଥୀ ହେଲୁ । ମୁଁ କଂଗ୍ରେସ, ଗଜେନ୍ଦ୍ର ଦାସ କମ୍ୟୁନିଷ୍ଟ ଓ ହର ପ୍ରସାଦ ମହାପାତ୍ର ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ।

ଏହି ନିର୍ବାଚନରେ ଓଡ଼ିଶା ସମେତ ଭାରତବର୍ଷରେ କଂଗ୍ରେସର ବିପର୍ଯ୍ୟୟ ହେଲା । ଲୋକମାନେ କଂଗ୍ରେସକୁ ଗ୍ରହଣ କଲେ ନାହିଁ । ବାଲେଶ୍ୱର ଜିଲ୍ଲାରେ କେବଳ ବସ୍ତା ଆସନ ବ୍ୟତୀତ ଅନ୍ୟସବୁ ଆସନରେ କଂଗ୍ରେସର ପରାଜୟ ଘଟିଲା । ବସ୍ତାରୁ ଜିତିଥିଲେ ଚିନ୍ତାମଣି ଜେନା । ସୋରରୁ ମୁଁ ପରାଜିତ ହୋଇଥିଲି । ବାସୁଦେବପୁରରେ ନୀଳମଣିବାବୁଙ୍କୁ ହରାଇ ହରେକୃଷ୍ଣ ମହତାବ ବିଜୟ ଲାଭ କରିଥିଲେ । ମହତାବ୍ ବାବୁ ଭୁବନେଶ୍ୱର ଆସନରୁ ମଧ୍ୟ ଜିତିଥିଲେ । ସେ ଏହି ଆସନରୁ ଇସ୍ତଫା ଦେଲେ । ପୁନଃ ନିର୍ବାଚନରେ ତାଙ୍କ ପତ୍ନୀ ସୁଭଦ୍ରା ମହତାବ ପ୍ରତିଦ୍ୱନ୍ଦିତା କରି ଜୟଯୁକ୍ତ ହୋଇଥିଲେ । ଭଦ୍ରକ ଆସନରୁ ଜିଲ୍ଲା କଂଗ୍ରେସ ସଭାପତି ମହମ୍ମଦ ହନିଫ୍‌ଙ୍କୁ ହରାଇ ନିତ୍ୟାନନ୍ଦ ମହାପାତ୍ର ଜୟଲାଭ କରିଥିଲେ । ଏହି ନିର୍ବାଚନରେ କଂଗ୍ରେସ୍ ମାତ୍ର ୩୧ଟି ସ୍ଥାନରେ ବିଜୟ ଲାଭ କରିଥିଲା ।

ବିଜୁବାବୁ ମଧ୍ୟ ଏହି ନିର୍ବାଚନରେ ପରାଜିତ ହୋଇଥିଲେ। ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସ୍ୱତନ୍ତ୍ରଦଳ ୪୯ଟି ସ୍ଥାନ, ମହତାବ୍ ବାବୁଙ୍କ ଜନକଂଗ୍ରେସଦଳ ୨୬ଟି ସ୍ଥାନ ପାଇଥିଲା । ପ୍ରଜା ସୋସାଲିଷ୍ଟ ଦଳ ୨୧ଟି ଆସନ ଦଖଲ କରିପାରିଥିଲା । ବାକି ୧୩ଟି ସ୍ଥାନ ଦଖଲ କରିଥିଲେ କମ୍ୟୁନିଷ୍ଟ, ସଂଯୁକ୍ତ ସୋସାଲିଷ୍ଟ ଓ ସ୍ୱାଧୀନ ପ୍ରାର୍ଥୀମାନେ । ଶୁଣିବାକୁ ମିଳୁଥିଲା ସାମ୍ୟବାଦ ଚିନ୍ତାଥିବା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ମଧ୍ୟ ମହତାବଙ୍କୁ ସାହାଯ୍ୟ କରିଥିଲେ । କିନ୍ତୁ ମହତାବଙ୍କର ସେ ଆଶା ପୂରଣ ହୋଇ ପାରିଲା ନାହିଁ । ସ୍ୱତନ୍ତ୍ର ଦଳ ଜନକଂଗ୍ରେସ ଦଳଠାରୁ ଅଧିକ ଆସନ ଲାଭ କରିଥିବାରୁ ସେ ଦଳର ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେଲେ ।

ସୋର ଆସନରୁ ଜିତିଥିଲେ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ହରପ୍ରସାଦ ମହାପାତ୍ର । ସିଂହଦେଓଙ୍କ ମନ୍ତ୍ରିମଣ୍ଡଳରେ ସେ ସ୍ଥାନ ପାଇଥିଲେ । ଅନ୍ୟ ମନ୍ତ୍ରୀମାନେ ହେଲେ ପବିତ୍ରମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ, ବନମାଳୀ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଏନ୍.ରାମ ଶେଷାୟା, ଶାନ୍ତନୁ କୁମାର ଦାସ, ଦୟାନିଧି ନାୟକ, ମୁରାରି ପ୍ରସାଦ ମିଶ୍ର, କେବିନେଟ୍ ମନ୍ତ୍ରୀ ଏବଂ ହିମାଂଶୁ ଶେଖର ପାଢ଼ୀ, ମନମୋହନ ଟୁଡୁ, ଅନନ୍ତ ନାରାୟଣ ସିଂହଦେଓ, ବୃନ୍ଦାବନ ତ୍ରିପାଠୀ, କାର୍ତ୍ତିକ ମାଝି, ଗଙ୍ଗାଧର ପ୍ରଧାନ ଓ ଗୋବିନ୍ଦ ମୁଣ୍ଡା ଉପମନ୍ତ୍ରୀ । ସେତେବେଳେ ରାଷ୍ଟ୍ରମନ୍ତ୍ରୀ ହେବାର ବ୍ୟବସ୍ଥା ନଥିଲା ।

ସେତେବେଳେ ପ୍ରଦେଶ କଂଗ୍ରେସ୍ କମିଟୀର ସଭାପତି ଥିଲେ ବିଜୟ କୁମାର ପାଣି । କଂଗ୍ରେସ୍‌ର ଏହି ବିପର୍ଯ୍ୟୟ ଯୋଗୁଁ ସେ ଆଉ ସଭାପତି ଦାୟିତ୍ୱ ନେଇ ପାରିବେ ନାହିଁ ବୋଲି କହିଥିଲେ ଏବଂ ତାଙ୍କର ଇସ୍ତଫାପତ୍ର ସେତେବେଳେ ପ୍ରଦେଶ କଂଗ୍ରେସ୍ କମିଟୀର ସଂପାଦକ ଥିବା ବିଜୟକୃଷ୍ଣ ଦେଙ୍କ ପାଖକୁ ପଠାଇଥିଲେ । ବିଜୁବାବୁ ସେତେବେଳେ କଲିକତାରେ ଥାନ୍ତି । ବିଜୟ କୁମାର ପାଣିଙ୍କ ଇସ୍ତଫା କଟକର ସ୍ୱରାଜ ଆଶ୍ରମରେ ଅନୁଷ୍ଠିତ ବୈଠକରେ ଗୃହୀତ ହୋଇଥିଲା । ନୀଳମଣି ରାଉତରାୟ ସଭାପତି ନିଯୁକ୍ତ ହୋଇଥିଲେ ।

ନିର୍ବାଚନରେ ବାଲେଶ୍ୱର ଜିଲ୍ଲାରେ କଂଗ୍ରେସର ଶୋଚନୀୟ ପରାଜୟ ବିଷୟରେ ଆଲୋଚନା କରିବା ପାଇଁ ଜିଲ୍ଲା କଂଗ୍ରେସ୍ ଅଫିସ୍‌ରେ ଏକ ବୈଠକ ଡକାଯାଇଥିଲା । ମହମ୍ମଦ ହନିଫ୍ ଜିଲ୍ଲା ସଭାପତି ପଦରୁ ଇସ୍ତଫା ଦେବାପାଇଁ

ଇଚ୍ଛା ପ୍ରକାଶ କରିଥିଲେ । ଅବସ୍ଥା ଏପରି ଥିଲା ଯେ, କେହି ଏହାର ବିରୋଧ କରିନଥିଲେ । ବୈଠକ ପରେ ମଧ୍ୟାହ୍ନ ଭୋଜନ କରି ସମସ୍ତେ ଚାଲିଯିବାପରେ ହନିଫ୍‌ବାବୁ, ମୁଁ ଓ ସଂପାଦକ ରତ୍ନାକର ମହାନ୍ତି ଅଫିସ୍‌ରେ ବସି ଏ ବିଷୟ ଆଲୋଚନାକଲୁ । ମୁଁ ମଧ୍ୟ ସାଧାରଣ ସଂପାଦକ ପଦରୁ ଇସ୍ତଫା ଦେବି ବୋଲି କହିଲି । ସିଦ୍ଧାନ୍ତ ହେଲା ପରଦିନ ଆମେ ତିନିଜଣ ଭୁବନେଶ୍ୱର ଯାଇ ବିଜୁବାବୁଙ୍କୁ ଇସ୍ତଫାପତ୍ର ଦେଇ ଆସିବୁ ।

ପରଦିନ ଗଲୁ । ପ୍ରାୟ ଦିନ ଏଗାରଟା ବେଳେ ଉଡ଼ାଜାହାଜ ପଡ଼ିଆ ପାଖରେ ଥିବା ବିଜୁବାବୁଙ୍କ ଘର "ନବୀନ ନବାସ" ରେ ପହଞ୍ଚିଲୁ । ବିଜୁବାବୁ ଉପର ତାଲାରେ ଥିଲେ । ତାଙ୍କ ଖାନ୍‌ସମା ଖଇରାତି ଯାଇ ଖବର ଦେବାରୁ ସେ ତଳକୁ ଆସିଲେ । ପଚାରିଲେ – "କୁଆଡ଼େ ସବୁ ଆସିଲ ?"

ହନିଫବାବୁ କିଛି ନକହି ଆମ ତିନିଜଣଙ୍କ ଇସ୍ତଫାପତ୍ର ତାଙ୍କ ହାତକୁ ବଢ଼ାଇ ଦେଲେ । ତାଙ୍କୁ ପଢ଼ି ବିଜୁବାବୁ କହିଲେ - "ତମେ ସବୁ ଜଣେ ଜଣେ ଲାଲ୍‌ବାହଦୁର ଶାସ୍ତ୍ରୀ ହେଇଗଲ ନା ? ଥରେ କୋଉଠି ରେଲ୍ ଦୁର୍ଘଟଣା ଘଟିଥିଲା । ସେତେବେଳେ ରେଲ୍ ମନ୍ତ୍ରୀ ଥିବା ଲାଲ୍‌ବାହାଦୁର ଇସ୍ତଫା ଦେଲେ । ଯାଅ, ଇସ୍ତଫା ଫିସ୍ତଫା କିଛି ନିଆଯିବ ନାହିଁ ।

ହନିଫ ବାବୁଙ୍କର ଜିଦ୍ ସେ ସଭାପତି ରହିବେ ନାହିଁ । ତାଙ୍କ ଜିଦ୍ ଦେଖି ବିଜୁବାବୁ ରାଗିଯାଇ କହିଲେ - "ଖାଲି କଣ ତମରି ଜିଲ୍ଲାରେ କଂଗ୍ରେସ୍ ହାରିଚି ? ସାରା ଓଡ଼ିଶାରେ, ସାରା ଭାରତବର୍ଷରେ କଂଗ୍ରେସ୍ ହାରିଚି । କାହିଁ କେହି ତ କୋଉଠି ଇସ୍ତଫା ଦେଉ ନାହାନ୍ତି ।"

ହନିଫ୍ ବାବୁ କହିଲେ - "କିଏ ଇସ୍ତଫା ଦଉଚି ନ ଦଉଚି, ସେ କଥା ଆମେ ଜାଣିନୁ । ଆମେ ଆମ ନିଷ୍ପତ୍ତି ବଦଳେଇବୁନି ।"

ବିଜୁବାବୁ ଆହୁରି ଚଢ଼ାଗଳାରେ କହିଲେ – "ଠିକ୍ ଅଛି, ତମ ଇସ୍ତଫା ଗ୍ରହଣ କରି ନିଆଯିବ ।"

ଏ କଥା ଶୁଣି ଆମେ ତିନିଜଣ ତାଙ୍କୁ ନମସ୍କାର ଜଣେଇ ଆସିଲୁ । ଠିକ୍ ଦ୍ୱାରବନ୍ଧ ପାଖରେ ପହଞ୍ଚିବାବେଳେ ବିଜୁବାବୁ ବଡ଼ପାଟିରେ ମୋତେ ଡାକିଲେ – " ଏ ଯଦୁ ।"

ମୁଁ ଫେରିପଡ଼ି ତାଙ୍କୁ ଚାହିଁଲି । କହିଲେ - "ଶୁଣ୍ ।"

ହନିଫ୍ ବାବୁ, ରତ୍ନାକର ଦରଜା ବାହାରକୁ ଚାଲି ଆସିଲେ । ମୁଁ ପୁଣି ବିଜୁବାବୁଙ୍କ ପାଖକୁ ଗଲି । ସେ ମୋ ପିଠି ଥାପଡ଼େଇ କହିଲେ -

"Thank you for your cowrage. କାଲିଠୁ ତୁ ହବୁ ବାଲେଶ୍ୱର ଜିଲ୍ଲା କଂଗ୍ରେସର ସଭାପତି ।"

ସତକୁ ସତ ତାହା ହିଁ ହେଲା । ମୁଁ ହେଲି ବାଲେଶ୍ୱର ଜିଲ୍ଲା କଂଗ୍ରେସର ସଭାପତି ।

ସେତେବେଳେ ବାଲେଶ୍ୱରର ଶ୍ୟାମସୁନ୍ଦର ମହାପାତ୍ର ପଶ୍ଚିମ ବଙ୍ଗର ଦାମୋଦର ଭେଲି କର୍ପୋରେସନ୍‌ର ଲୋକ ସଂପର୍କ ଅଫିସର୍ ଥିଲେ। ଦିନେ ଅନିରୁଦ୍ଧ ନନ୍ଦ ଆସି ମୋତେ କହିଲେ - "ଯଦୁବାବୁ,କାଲି ନୀଳମଣି ବାବୁଙ୍କ ପାଖକୁ କଟକ ଯିବା ।"

ମୁଁ କାରଣ ପଚାରିବାରୁ ସେ କହିଲେ - "ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ଚାକିରିରୁ ବରଖାସ୍ତ କରିଦିଆଯାଉଛି । ନୀଳମଣି ବାବୁଙ୍କ ଦ୍ୱାରା ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀଙ୍କୁ କହିବା ତାଙ୍କୁ ବରଖାସ୍ତ କରାନଯାଉ । ସେ ଇସ୍ତଫା ଦେଇ ଚାଲି ଆସିବେ ଏବଂ କଂଗ୍ରେସରେ ମିଶିବେ ।

ସେତେବେଳେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଥିଲେ ପ୍ରଫୁଲ୍ଲ ଚନ୍ଦ୍ର ସେନ୍ । ମୁଁ ଓ ଅନିରୁଦ୍ଧ ବାବୁ ନୀଳମଣି ବାବୁଙ୍କୁ କଟକ ଚଣ୍ଡୀ ମନ୍ଦିର ନିକଟସ୍ଥ ତାଙ୍କ ଘରେ ଯାଇ ଏକଥା କହିଲୁ । ସେ ଆମରି ସାମ୍‌ନାରେ ପ୍ରଫୁଲ୍ଲଚନ୍ଦ୍ର ସେନ୍‌ଙ୍କୁ ଫୋନ୍ କଲେ । ନୀଳମଣି ବାବୁଙ୍କ ବଙ୍ଗଳାରେ କଥାହେବା ପ୍ରଥମ କରି ମୁଁ ଶୁଣିଲି । ତାଙ୍କ ବଙ୍ଗଳା କଥାରେ ପ୍ରାୟ ୨୦ ଭାଗ କଥା ଥିଲା ଓଡ଼ିଆ । ସେ ଯାହା ହେଉ ପଶ୍ଚିମବଙ୍ଗ ସରକାର ନୀଳମଣିବାବୁଙ୍କ କଥା ରକ୍ଷାକରି ଶ୍ୟାମବାବୁଙ୍କୁ ଚାକିରିରୁ ବହିଷ୍କାର କଲେ ନାହିଁ । ସେ ଇସ୍ତଫା ଦେଇ ଚାଲି ଆସିଲେ । ମୁଁ ଜାଣିବାକୁ ପାଇଥିଲି ଯେ - ଦାମୋଦର ଭେଲି କର୍ପୋରେସନ୍‌ର ଯେଉଁ ଅତିଥିଶାଳା ଅଛି ତାହା ପାଇଁ ବିଛଣାଚଦର, ଗଦି, ତଉଲିଆ, ପର୍ଦ୍ଦା ଓ ଅନ୍ୟାନ୍ୟ ଉପକରଣ କିଣିବାରେ ଦୁର୍ନୀତି ହୋଇଥିବା ଯୋଗୁ, ସେଥିପାଇଁ ଶ୍ୟାମ ବାବୁଙ୍କୁ ଦାୟୀ କରାଯାଇ ଚାକିରିରୁ ବାହାର କରିଦିଆଯାଇଥିଲା । ଏହା ମୋର ଶୁଣିବାର କଥା, କେତେଦୂର ସତ୍ୟ ତାହା ମୁଁ କହିପାରିବି ନାହିଁ । ଶ୍ୟାମ ବାବୁଙ୍କୁ ମୁଁ ବାଲେଶ୍ୱର ଜିଲ୍ଲା କଂଗ୍ରେସ୍ କମିଟୀର ସାଧାରଣ ସଂପାଦକ କରିଥିଲି ।

୧୯୬୭ ନିର୍ବାଚନ ବେଳକୁ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଜାତନ୍ତ୍ର ସଂପାଦନା ଦାୟିତ୍ୱରୁ ଅବ୍ୟାହତି ନେଇ ସାରିଥିଲେ । ସେ ଏହି ନିର୍ବାଚନରେ ଧର୍ମଶାଳା ବିଧାନସଭା ନିର୍ବାଚନ ମଣ୍ଡଳିରୁ ସ୍ୱାଧୀନ ପ୍ରାର୍ଥୀ ଭାବେ ପ୍ରତିଦ୍ୱନ୍ଦିତା କରି ପରାଜିତ ହୋଇଥିଲେ ଓ ଅମାନତ ମଧ୍ୟ ହରାଇଥିଲେ ।

୧୯୬୭ରେ ଓଡ଼ିଶା ନିର୍ବାଚନ ପରେ ପଶ୍ଚିମବଙ୍ଗରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ସେତେବେଳେ ସେଠାରେ ମନ୍ତ୍ରୀ ଥିବା ଆଭା ମାଇତିଙ୍କ ସହ ନୀଳମଣି ବାବୁଙ୍କର ଭଲ ସଂପର୍କ ଥିଲା । ତାଙ୍କରି ଅନୁରୋଧରେ ସେଠାକାର ଦାନ୍ତୁନ, କାନ୍ଥି ପ୍ରଭୃତି ଅଞ୍ଚଳ ଯେଉଁଠି ବହୁ ଓଡ଼ିଆ ବସବାସ କରନ୍ତି, ସେ ଅଞ୍ଚଳକୁ ନିର୍ବାଚନ ପ୍ରଚାର ପାଇଁ ନୀଳମଣିବାବୁ ଯାଇଥିଲେ। ସେ ବାଲେଶ୍ୱର ଯାଇ, ସେଠାରେ ରହି, ବାଲେଶ୍ୱରରୁ ମୋତେ ଓ ଅନିରୁଦ୍ଧ ନନ୍ଦଙ୍କୁ ସାଙ୍ଗରେ ନେଇ ଯାଉଥିଲେ। କାନ୍ଥିଠାରୁ ପାଞ୍ଚ କିଲୋମିଟର ଦୂରରେ ହେଉଥିବା ଗୋଟାଏ ସଭାକୁ ଆମେ ଯାଉଥାଉ । କାନ୍ଥି-ଦୀଘା ରାସ୍ତାରୁ ଆମ ଗାଡ଼ି ସଭାସ୍ଥଳ ଆଡ଼କୁ ଯେତେବେଳେ ମୁହାଁଇଲା, ସେତେବେଳେ ବିରୋଧୀ ଦଳର ଗୋଟାଏ ପ୍ରଚାର ଗାଡ଼ି ଆମ ଆଗେ ଆଗେ ଚାଲିଲା । ସେ ଗାଡ଼ିରୁ ମାଇକ୍‌ରେ ଶୁଭୁଥାଏ –

"ଆଜ୍‌କେର ସଭାୟ ବକ୍ତାକାରା
ଓଡ଼ିଶାନେ ହେଁରେଛେନ୍ ଯାରା..."

ଅବଶ୍ୟ କିଛିବାଟ ପରେ କଂଗ୍ରେସର ପ୍ରଚାର ଗାଡ଼ି ଆସି ପହଞ୍ଚିଗଲା ଓ ଆମ ଆଗେ ଆଗେ ଚାଲିଲା । ଆମେ ଭଲରେ ଭଲରେ ଯାଇ ସଭାସ୍ଥଳରେ ପହଞ୍ଚିଲୁ । ପ୍ରଥମେ ମୋତେ ଭାଷଣ ଦେବାକୁ କୁହାଗଲା । ମୁଁ ଭଲ ବଙ୍ଗଳା କହିପାରୁଥିଲି, କିନ୍ତୁ ସେଠି କେଉଁ ଭାଷାରେ ଭାଷଣ ଦେବି ଏ କଥା ବଙ୍ଗଳା ଭାଷାରେ ଲୋକମାନଙ୍କୁ ପଚାରିଲି । ସମସ୍ତେ କହିଲେ- "ଓଡ଼ିଆ ତେ ବଲୁନ୍ ।"

ମୁଁ ଓଡ଼ିଆରେ ଭାଷଣ ଦେଲି । ନୀଳମଣି ବାବୁ ମଧ୍ୟ ଓଡ଼ିଆରେ ଭାଷଣ ଦେଲେ । ସେଦିନ ଆଉ ଦୁଇଟି ସଭାରେ ଭାଷଣ ଦେଲୁ । ଫେରିବା ଦିନ ଦାନ୍ତୁନ୍‌ରେ ଦୁଇଟି ସଭାକରି ଫେରିଲୁ । ଦାନ୍ତୁନରେ ମଧ୍ୟ ଜଣେ ଓଡ଼ିଆ ବଂଶଜ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରୁଥିଲେ। ଆଭା ମାଇତିଙ୍କ ନିର୍ବାଚନମଣ୍ଡଳୀରେ ମଧ୍ୟ ତାଙ୍କ ସହ କେତୋଟି ସଭାରେ ଯୋଗ ଦେଇଥିଲୁ ।



# ବିଜୁ ପଟ୍ଟନାୟକ

ଯୁବାବସ୍ଥାରେ ବିଜୁବାବୁ ଜଣେ ଦୁର୍ଦ୍ଧର୍ଷ ଯୁବକ ଥିଲେ। ବିମାନ ଚାଳକ ବିଜୁବାବୁଙ୍କର ଇଣ୍ଡୋନେସିଆର ସଶସ୍ତ୍ର ମୁକ୍ତି ସଂଗ୍ରାମ ବେଳର ଦୁଃସାହସିକ କାର୍ଯ୍ୟ ତାଙ୍କୁ ତାଙ୍କର ସାହସିକତା ପାଇଁ ଚିରଦିନ ଅମର କରି ରଖିବ ।

ସ୍ୱାଧୀନ ଭାରତବର୍ଷର ବୀରପୁତ୍ର ସେତେବେଳେ ଇଣ୍ଡୋନେସିଆର ବିପ୍ଳବୀ ନେତା ଡକ୍ଟର ହାଟା, ଡକ୍ଟର ସେରିୟାର୍ ପ୍ରଭୃତିଙ୍କୁ ନିଜେ ଉଡ଼ାଜାହାଜ ଚଳାଇ ଉଦ୍ଧାର କରି ଆଣିଥିଲେ । ଏହାର ବହୁଦିନ ପରେ ସ୍ୱାଧୀନ ଇଣ୍ଡୋନେସିଆ ସରକାର ବିଜୁବାବୁଙ୍କୁ "ଭୂମିପୁତ୍ର" ସମ୍ମାନରେ ସମ୍ମାନିତ କରିଥିଲେ ।

ବିଜୁବାବୁଙ୍କର ଏହି ଦୁଃସାହସିକ କାର୍ଯ୍ୟ ପାଇଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ବିଜୁବାବୁଙ୍କ ଉପରେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ କାରଣ ତାଙ୍କରି ଜାଣତରେ ବିଜୁବାବୁ ଏ କାର୍ଯ୍ୟ କରିଥିଲେ । ବିଜୁବାବୁ ବିବାହ କରିଥିଲେ ପଞ୍ଜାବୀ ମହିଳା ଜ୍ଞାନ ପଟ୍ଟନାୟକଙ୍କୁ । ନବୀନ ନିବାସରେ ମୁଁ ଜ୍ଞାନ ପଟ୍ଟନାୟକଙ୍କୁ ଦେଖିଛି । ସେ ଜଣେ ସମ୍ଭ୍ରାନ୍ତ ମହିଳା । ତାଙ୍କର ବଡ଼ ପୁଅ ପ୍ରେମ ପଟ୍ଟନାୟକ ଦିଲ୍ଲୀରେ ରହନ୍ତି । ସାନପୁଅ ନବୀନ ପଟ୍ଟନାୟକ ବିଦେଶରେ ରହୁଥିଲେ - ସେଠୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ଝିଅ ଗୀତା ପଟ୍ଟନାୟକ (ବିବାହ ପରେ ଗୀତା ମେହେଟ୍ଟା) ଆମେରିକାର ବାସିନୀ । ଇଂରାଜୀ ଗଳ୍ପ ଉପନ୍ୟାସ ଲେଖାରେ ତାଙ୍କର ସୁନାମ ରହିଛି ।

ନେହେରୁ ପରିବାର ସହିତ ବିଜୁବାବୁଙ୍କର ଖୁବ୍ ଭଲ ସଂପର୍କ ଥିଲା । ଏପରିକି ସେ ପରିବାରର ଜଣେ ସଦସ୍ୟ ବୋଲି ତାଙ୍କୁ ବିଚାର କରାଯାଉଥିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା, ସେହି ନେହେରୁ ପରିବାର ବିଶେଷ କରି ଶ୍ରୀମତୀ ଇନ୍ଦିରାଗାନ୍ଧି ଯାହାଙ୍କ ସହିତ ବିଜୁବାବୁଙ୍କର ନିବିଡ଼ ସଂପର୍କଥିଲା, ତାଙ୍କରି ଇଙ୍ଗିତରେ ବିଜୁବାବୁଙ୍କୁ କ୍ଷମତାର ବଳୟରୁ ବାହାର କରି ଦିଆଯାଇଥିଲା ।

ବିଜୁ ପଟ୍ଟନାୟକ ଯେଉଁ ନନ୍ଦିନୀ ଶତପଥୀଙ୍କୁ ରାଜ୍ୟସଭାକୁ ପଠାଇଥିଲେ, ସେ ମଧ୍ୟ ଇନ୍ଦିରାଗାନ୍ଧିଙ୍କ ଇଚ୍ଛା ପୂରଣ କରିବାପାଇଁ ବିଜୁବାବୁଙ୍କ ବିରୁଦ୍ଧରେ ଯିବାକୁ ପଛାଇ ନଥିଲେ ।

୧୯୬୯ ମସିହା ବେଳକୁ କଂଗ୍ରେସ ଦଳ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା । ଇନ୍ଦିରା ଗାନ୍ଧିଙ୍କ ପରିଚାଳିତ କଂଗ୍ରେସ ଥିଲା ଶାସକ କଂଗ୍ରେସ ଓ ନିଜଲିଙ୍ଗାପାଙ୍କ ପରିଚାଳିତ କଂଗ୍ରେସ ଥିଲା ସଂଗଠନ କଂଗ୍ରେସ । ୧୯୬୯ ମସିହା ଡିସେମ୍ବର ମାସରେ ବମ୍ବେଠାରେ ଶାସକ କଂଗ୍ରେସର ଅଧିବେଶନ ବସିଥିଲା । ସେତିକିବେଳେ ସଂଗଠନ କଂଗ୍ରେସର ଅଧିବେଶନ ମଧ୍ୟ ଗୁଜୁରାଟର ଅହମ୍ମଦାବାଦଠାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାରୁ ମୁଷ୍ଟିମୟ କିଛି ନେତା ଭବାନୀଚରଣ ପଟ୍ଟନାୟକ, ଦୀନବନ୍ଧୁ ସାହୁ, ପ୍ରହ୍ଲାଦଚରଣ ମଲ୍ଲିକ ପ୍ରମୁଖଙ୍କ ବ୍ୟତୀତ ଅନ୍ୟ ସମସ୍ତେ ବମ୍ବେ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ଭବାନୀ ବାବୁ ପ୍ରଭୃତି ଯାଇଥିଲେ ଅହମ୍ମଦାବାଦ କଂଗ୍ରେସକୁ ।

ବମ୍ବେ ଅଧିବେଶନ ସମୟରେ ଓଡ଼ିଶା କଂଗ୍ରେସର ସଭାପତି ଥିଲେ ନୀଳମଣି ରାଉତରାୟ କିନ୍ତୁ କର୍ମୀମାନଙ୍କର ଯିବାର ସମସ୍ତ ଖର୍ଚ୍ଚ ବିଜୁବାବୁ ବହନ କରିଥିଲେ। ଓଡ଼ିଶା ଲୋକଙ୍କ ଯିବାପାଇଁ ଦୁଇଟି ବଗିର ବ୍ୟବସ୍ଥା କରାଯାଇଥିଲା । ସେ ଦୁଇଟି ବଗି ଗୋଟାଏ ଟ୍ରେନ୍‌ରେ ଯୋଡ଼ା ଯାଇ ଖଡଗପୁର ପର୍ଯ୍ୟନ୍ତ ଯାଇଥିଲା । କଲିକତାରୁ ଗୋଟାଏ ଟ୍ରେନ୍ ଆସିଥିଲା । ପଶ୍ଚିମବଙ୍ଗଳାର ଲୋକଙ୍କୁ ନେଇ । ମୁଁ ଥିଲି ଓଡ଼ିଶାରୁ ଯାଉଥିବା ବଗିର ଦାୟିତ୍ୱରେ ଓ ପ୍ରିୟରଂଜନ ଦାସ ମୁନ୍‌ସୀ ଥିଲେ ପଶ୍ଚିମ ବଙ୍ଗଳାର ବଗିମାନଙ୍କ ଦାୟିତ୍ୱରେ । ଡିସେମ୍ବର ମାସ ୨୭ ତାରିଖ ଦିନ ଗୋଟାଏ ବେଳେ ଟ୍ରେନ୍ ଯାଇ ପହଞ୍ଚିଲା ୱାର୍ଦ୍ଧା ଷ୍ଟେସନରେ । ଟ୍ରେନ୍‌ରୁ ଲୋକ ଧାଇଁଲେ ଷ୍ଟେସନ୍ କେଟେରିଂକୁ ଖାଇବା ପାଇଁ । ଏତେ ଲୋକଙ୍କ ପାଇଁ ଖାଇବା କୋଉଠୁ ମିଳିବ ? ଧସ୍ତା ଧସ୍ତି- ହୋ ହଲ୍ଲା ପୁଣି ଆରମ୍ଭ ହୋଇଗଲା ବଙ୍ଗାଳୀ ଓଡ଼ିଆ ଆକ୍ରମଣ ପ୍ରତି ଆକ୍ରମଣ । ଢେଲା ମରାମରି ବି ଆରମ୍ଭ ହୋଇଗଲା । ଢେଲା ମାଡ଼ରେ ଆମ ସହିତ ଯାଉଥିବା ବାଲେଶ୍ୱରର ଓକିଲ ବାସୁଦେବ ନାୟକଙ୍କ ମୁଣ୍ଡ ଫାଟିଗଲା । ଶେଷରେ ମୁଁ ଓ ପ୍ରିୟରଂଜନ ଦାସ ମୁନ୍‌ସୀ ଷ୍ଟେସନମାଷ୍ଟରଙ୍କ ଅଫିସ୍‌କି ଯାଇ ସେଇଠୁ ଟ୍ରେନ୍ ଟାଇମ୍ ଘୋଷିତ ହେଉଥିବା ମାଇକ୍‌ରେ ଉଭୟ ପକ୍ଷଙ୍କୁ ଶାନ୍ତ ରହିବା ପାଇଁ ନିବେଦନ କଲୁ । ମୁଁ କହିଲି ଓଡ଼ିଆରେ, ସେ କହିଲେ

ବଙ୍ଗଳାରେ । ଉଭୟ ପକ୍ଷ ଶାନ୍ତ ହେବା ପରେ ଗାଡ଼ି ସେଠି ଦୁଇ ଘଣ୍ଟା ଅଟକି ରହିଲା । ଲୋକମାନେ ଖାଦ୍ୟ ଅନୁସନ୍ଧାନରେ ଷ୍ଟେସନ ବାହାରକୁ ଗଲେ । ଯାହା ମିଳିଲା ସେତିକିରେ ସନ୍ତୁଷ୍ଟ ହୋଇ ଫେରିଲେ । ତାପରେ ଗାଡ଼ି ଛାଡ଼ିଲା ।

ବମ୍ବେ କଂଗ୍ରେସ ଅଧିବେଶନ ଖୁବ୍ ଜାକଜମକରେ ହୋଇଥିଲା । ବିଜୁ ବାବୁ ରହୁଥିଲେ ଆରବ ସାଗର କୂଳରେ ଥବା ତାଜ ହୋଟେଲ୍‌ରେ । ଫେରିବା ଦିନ ତାଜ୍ ହୋଟେଲ ଯାଇଥିଲି । ବାଟରେ ଲୋକମାନଙ୍କର ଖାଇବା ପାଇଁ ବିଜୁବାବୁ ହଜାରେ ଟଙ୍କା ଦେଇଥିଲେ ।

ବମ୍ବେରୁ ଫେରିବାପରେ ଶ୍ୟାମ ସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ ବଳ ତତ୍କାଳୀନ ସଭାପତି ନୀଳମଣି ରାଉତରାୟଙ୍କ ବିରୁଦ୍ଧରେ ନାନା ପ୍ରକାର ଅପପ୍ରଚାର କରିବାରୁ ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଭଙ୍ଗ ଅଭିଯୋଗ ଅଣାଯାଇ କଂଗ୍ରେସରୁ ବର୍ଷକ ପାଇଁ ବହିଷ୍କୃତ କରାଯାଇଥିଲା । ଶାସକ କଂଗ୍ରେସ ଦଳ ମଧ୍ୟରେ ଛକାପଞ୍ଝା ଟଣାଓଟରା ଫଳରେ ବିଜୁବାବୁ ୧୯୭୦ ମସିହାରେ ଶାସକ କଂଗ୍ରେସ ଦଳ ଛାଡ଼ି ଦେଇଥିଲେ । ଶାସକ କଂଗ୍ରେସ ଅଥବା ସଂଗଠନ କଂଗ୍ରେସ କିଏ ପ୍ରକୃତ କଂଗ୍ରେସ ଏହା ନିର୍ବାଚନ କଂଗ୍ରେସଙ୍କ ବିଚରାଧୀନ ଥିଲା । ତେଣୁ ବିଜୁ ପଟ୍ଟନାୟକ ସୃଷ୍ଟି କଲେ ଉତ୍କଳ କଂଗ୍ରେସ । ବହୁ କଂଗ୍ରେସ ନେତା ଉତ୍କଳ କଂଗ୍ରେସରେ ଯୋଗଦେଲେ ।

ପରବର୍ତ୍ତୀ କାଳରେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରମନ୍ତ୍ରୀ ଭାବେ ଦାୟିତ୍ୱ ନିର୍ବାହ କରିଥିଲେ। ସେ ଥିଲେ ଓଡ଼ିଶା ରାଜ୍ୟର ବରପୁତ୍ର ।



# ସାହିତ୍ୟରେ ପ୍ରତିଷ୍ଠା

ନାନାପ୍ରକାର ଜଂଜାଳ ଭିତରେ ଲେଖିବାଟା ସୃଜନଶୀଳ ମନର ଏକ ନିର୍ଯ୍ୟାସ । ମୋର କର୍ମବ୍ୟସ୍ତତା କେବେହେଲେ ମୋତେ ଲେଖାରୁ ନିବୃତ୍ତ କରିନାହିଁ । ବିଭିନ୍ନ ସାହିତ୍ୟ ସଂସ୍ଥା ସହିତ ସଂପୃକ୍ତ ରହିବା ଓ ସାହିତ୍ୟ ସଭାକୁ ଯିବା ମୋର ଏକ ଅଭ୍ୟାସ ।

ମୋ ଲେଖକ ଜୀବନ ବିଷୟରେ ଆକାଶବାଣୀ, ଦୂରଦର୍ଶନ, ଇଟିଭି ପ୍ରଭୃତି ମୋର ସାକ୍ଷାତକାର ନେଇ ପ୍ରଚାର କରିଛନ୍ତି । ବହୁ ପତ୍ରିକାରେ ମଧ୍ୟ ମୋର ସାକ୍ଷାତ୍‌କାର ପ୍ରକାଶ ପାଇଛି ।

୨୦୦୪ ମସିହାରେ ସାହିତ୍ୟିକ ତପନ ପଟ୍ଟନାୟକ ଭଦ୍ରକରୁ ପ୍ରକାଶ ପାଉଥିବା "ଚିହ୍ନାମୁହଁ" ସାହିତ୍ୟ ପ୍ରକାଶ ପାଇଁ ମୋର ଏକ ସାକ୍ଷାତକାର ନେଇଥିଲା । ମୋ ପୁଅ ସାହିତ୍ୟିକ ଅଜିତ୍‌ର ତପନ ହେଉଛି ଘନିଷ୍ଠ ବଂଧୁ । ତପନର ବାପା ସାହିତ୍ୟିକ ପଦ୍ମଚରଣ ପଟ୍ଟନାୟକ ଥିଲେ ମୋର ପରମ ବଂଧୁ । ପଦ୍ମଚରଣ ବାବୁ ୧୯୫୮ ମସିହାରେ ବାଲୁଗାଁରୁ "ଗୁପ୍ତଚର" ନାମକ ଏକ ଗୋଏନ୍ଦା ଉପନ୍ୟାସ ପତ୍ରିକା ପ୍ରକାଶ କରୁଥିଲେ। ପ୍ରତ୍ୟେକ ମାସରେ ଖଣ୍ଡିଏ ଖଣ୍ଡିଏ ଗୋଏନ୍ଦା ଉପନ୍ୟାସ ବହି ପ୍ରକାଶ ପାଉଥିଲା । ମୋର ଗୋଟିଏ ଗୋଏନ୍ଦା ଉପନ୍ୟାସ "ବିଭୀଷିକା" ଏଥିରେ ପ୍ରକାଶ ପାଇଥିଲା । "ଚିହ୍ନା ମୁହଁ"ରେ ପ୍ରକାଶ ପାଇଥିବା ସାକ୍ଷାତକାର୍‌ରେ ମୋ ବିଷୟରେ ଟୀପ୍ପଣି ଦେଇଛନ୍ତି ପତ୍ରିକାର ସମ୍ପାଦକ ଅଧ୍ୟାପକ ନୀହାର ରଂଜନ କର । ପାଠକ ପାଠିକାମାନଙ୍କର ଅବଗତି ନିମନ୍ତେ ତାହା ମୁଁ ଏଠାରେ ପ୍ରଦାନ କରୁଛି ।

"ଏକଦା ଓଡ଼ିଶା ରାଜନୀତିରେ ଶିଖର ସ୍ଥାନରେ ଅବସ୍ଥାନ କରିଥିବା ପୂର୍ବତନ ଶିକ୍ଷା ଓ ସଂସ୍କୃତି ମନ୍ତ୍ରୀ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ର ଓଡ଼ିଆ ସାହିତ୍ୟାକାଶରେ

ମଧ୍ୟ ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ । ଜଣେ ସଫଳ ରାଜନେତା ଭାବରେ ଓଡ଼ିଆମାନଙ୍କଠାରେ ସେ ଯେତିକି ପରିଚିତ, ଜଣେ ସଫଳ ସାହିତ୍ୟିକ ଭାବରେ ମଧ୍ୟ ସେତିକି ପରିଚିତ । ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ପରିମାଣ ଓ ଗୁଣାତ୍ମକ ଉଭୟ ଦିଗରେ ସମୃଦ୍ଧ କରିଛନ୍ତି । ଶ୍ରୀଯୁକ୍ତ ମହାପାତ୍ର ଛାତ୍ରକାଳରୁ କବିବର ରାଧାନାଥ ରାୟଙ୍କ ପ୍ରତିଭାରେ ଅନୁପ୍ରାଣିତ ହୋଇ ସାହିତ୍ୟ ଜଗତକୁ ପ୍ରବେଶ କରିଛନ୍ତି ଜଣେ କବିଭାବରେ ।

...

ନିଜକୁ କବିତାର ବଳୟ ମଧ୍ୟରେ ବାନ୍ଧି ରଖିନପାରି ସାହିତ୍ୟର ବିଭିନ୍ନ ବିଭାଗରେ ପ୍ରବେଶ କରି ସୃଷ୍ଟି କରିଛନ୍ତି ୬୬ ଖଣ୍ଡ ପୁସ୍ତକ ।

ତାଙ୍କର ଗଳ୍ପ "ଟାଇଗର" ଋଷୀୟ ଭାଷାରେ ଅନୂଦିତ ହୋଇ ସେଠାରୁ ପ୍ରକାଶିତ ଭାରତବର୍ଷର ଶ୍ରେଷ୍ଠ ଗଳ୍ପ ପୁସ୍ତକରେ ସ୍ଥାନିତ ହୋଇଛି । ତାଙ୍କର ଗଳ୍ପ "ପୁନର୍ଜନ୍ମ" ହିନ୍ଦୀରେ ଅନୁବାଦିତ ହୋଇ ଆଇ.ସି.ଏସ୍.ଇ ପାଠ୍ୟ ପୁସ୍ତକରେ ସ୍ଥାନ ପାଇଥିବାବେଳେ, "ସୂର୍ଯ୍ୟମନ୍ଦିର "ନାଟକ ଓଡ଼ିଶାର ବିଶ୍ୱବିଦ୍ୟାଳୟରେ ଓ ତାହାର ହିନ୍ଦୀ ଅନୁବାଦ ମଗଧ ବିଶ୍ୱବିଦ୍ୟାଳୟରେ ପାଠ୍ୟ ପୁସ୍ତକରେ ଅନ୍ତର୍ଭୁକ୍ତ ହୋଇ ପାରିଛି ।"

(ଚିହ୍ନା ମୁହଁ - ୨ ବର୍ଷ ୧ମ ସଂଖ୍ୟା ୨୦୦୪)

ଏହି ସାକ୍ଷାତ୍‌କାରରେ ତପନର ଏକ ପ୍ରଶ୍ନ ଓ ମୋର ଉତ୍ତରର ଗୋଟିଏ ଅଂଶ ଥିଲା ଏହିପରି –

ପ୍ରଶ୍ନ - କବି ଯଦୁନାଥ କବିତାରୁ ଲେଖା ଆରମ୍ଭ କରି ପରବର୍ତ୍ତୀ ସମୟରେ ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ଶିଶୁ ସାହିତ୍ୟିକ, ଗୀତିକାର, ସମାଲୋଚକ, ଅନୁବାଦକ ହେଲେ କେମିତି ? ଏ ସବୁ କ୍ଷେତ୍ରରେ ଆପଣ ସଫଳତା ହାସଲ କରିଛନ୍ତି । ସେ ବିଷୟରେ ଆପଣ କିଛି କହିବେ କି ?

ମୋର ଉତ୍ତର - ବହୁ ସାକ୍ଷାତକାରରେ ଏ ପ୍ରଶ୍ନ ମୋତେ ପଚରାଯାଇଛି । ବିଭିନ୍ନ ସମସ୍ୟାକୁ ନେଇ ସାହିତ୍ୟ ସୃଷ୍ଟି କରୁଥିବାବେଳେ ଅନୁଭବ କଲି ସମସ୍ୟା କୈନ୍ଦ୍ରିକ ସାହିତ୍ୟର  ମାଧ୍ୟମ କେବଳ କବିତା ହୋଇ ନପାରେ । ସମସ୍ୟା ଚିତ୍ରଣ ଓ ସ୍ଥଳ ବିଶେଷରେ ତାହାର ସମାଧାନର ଚିତ୍ର ନାଟକ, ଉପନ୍ୟାସ ଓ ଗଳ୍ପ

ମାଧ୍ୟମରେ ଅଧିକ ପଠନ- ପ୍ରିୟତା ହାସଲ କରିପାରିବ । ମୋର ଗ୍ରାମ୍ୟ ନଦୀର ତୀରେ, ସନ୍ତାନ-ସେତୁ, ଏ ଦେହ ଦେବାଳୟ, ଆଦ୍ୟ ମଧ୍ୟ ପ୍ରାନ୍ତ ପ୍ରଭୃତି ଉପନ୍ୟାସ ଯେତିକି ପଠନ-ପ୍ରିୟତା, ହାସଲ କରିଛି, ଠିକ୍ ସେହିଭଳି ଭାବରେ ସୂର୍ଯ୍ୟମନ୍ଦିର, ଭୁଲିହୁଏନା, ଅଥବା ଅନ୍ଧାର, ବାନ୍ଦୀ ବେଗମ୍ ବାନ୍ଦୀ ବେଗମ ବାଦଶା, ରାତ୍ରି ଗୋ ତୁମେ କଥା କୁହ ପ୍ରଭୃତି ନାଟକ ଦର୍ଶନ-ପ୍ରିୟତା ଲାଭ କରିଛି ।

"ଭୁଲି ହୁଏନା" ନାଟକ ସେ ବେଳର ତିନିଟି ପେସାଦାର ରଙ୍ଗମଞ୍ଚ ଶ୍ରୀମା, ଜନତା, କଳାଶ୍ରୀରେ ଅଭିନୀତ ହୋଇ ଚଳଚ୍ଚିତ୍ରରେ ରୂପାୟିତ ହୋଇଛି । ମୋ ଲେଖା ଭଜନ "ପ୍ରଭୁ ତୁମେ ପ୍ରଭାତର ପ୍ରଥମ କିରଣ..." ପ୍ରସିଦ୍ଧ ସଂଗୀତଜ୍ଞ ଶ୍ରୀ ଅର୍ଜୁନି ଚରଣ ସାମଲଙ୍କ କଣ୍ଠରୁ ବହୁବାର କଟକ ଆକାଶବାଣୀରୁ ପ୍ରଚାରିତ ହୋଇ ଶ୍ରୋତା ଶ୍ରୋତୀମାନଙ୍କୁ ଆନନ୍ଦ ଦେଇଛି । ତେଣୁ ସାହିତ୍ୟର ସବୁ ବିଭାଗରେ ଲେଖନୀ ଚଳାଇ ମୁଁ ଆତ୍ମତୃପ୍ତି ଲାଭ କରିଛି ଓ ଅନ୍ୟମାନଙ୍କୁ ଆନନ୍ଦ ଦେଇ ପାରିଛି ।

ବାଲେଶ୍ୱରରୁ ପ୍ରକାଶ ପାଉଥିବା ଦୈନିକ ସମ୍ବାଦପତ୍ର କାଳାନ୍ତର ପ୍ରକାଶନ ତରଫରୁ ପ୍ରକାଶ ପାଇଥିବା ପୁସ୍ତକ "ଅଭିନ୍ନ ଦିଗନ୍ତ ଓ ଭିନ୍ନ ବ୍ୟକ୍ତିତ୍ୱ" ରେ ୮୫ ଜଣ ସାହିତ୍ୟ ସ୍ରଷ୍ଟାଙ୍କ ଜୀବନୀ ସମ୍ବଳିତ ପ୍ରବନ୍ଧମାନ ରହିଛି । ପ୍ରଥମ ପ୍ରବନ୍ଧଟି ମୋରି ଜୀବନୀ ଓ ସାହିତ୍ୟ ସୃଷ୍ଟି ଉପରେ ଲେଖା । ପ୍ରବନ୍ଧଟିର ଶେଷ ପାରାଗ୍ରାଫ୍‌ରେ ଜୀବନୀ ଓ ସାମଗ୍ରିକ ସାରସ୍ୱତ ମୂଲ୍ୟାୟନ ଉପରେ ବହୁ ଗବେଷକ ଗବେଷଣା କରି ସାରିଲେଣି । ଗତ ୭ ବର୍ଷ ତଳେ "ସାହିତ୍ୟ-ସାଧକ ଯଦୁନାଥ ଦାଶ ମହାପାତ୍ର - ଏକ ସାମଗ୍ରିକ ମୂଲ୍ୟାୟନ" ଶୀର୍ଷକ ଗବେଷଣା ଶେଷକରି ବାଲେଶ୍ୱର କଲେଜର ଅଧ୍ୟାପିକା ତଥା ବର୍ତ୍ତମାନର ଅଧକ୍ଷା ମାଳବିକା ନାୟକ ପି.ଏଚ୍.ଡ଼ି ପାଇ ସାରିଛନ୍ତି ।"

ଏହି ପୁସ୍ତକଟି ୧୯୯୯ ଜୁନମାସ ୧୯ ତାରିଖରେ ପ୍ରକାଶ ପାଇଥିଲା ଓ ଏହାର ସଂପାଦନା ମଣ୍ଡଳୀରେ ଥିଲେ ଡଃ ରାଧାରଞ୍ଜନ ପଟ୍ଟନାୟକ, ଡଃ ମାଧବିକା ନାୟକ, ସର୍ବଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାଲିକ, ଅଶୋକ ମହାନ୍ତି, ନୃସିଂହନାଥ ସିଂହ, ପୂର୍ଣ୍ଣଚନ୍ଦ୍ର ସେଠୀ, ବିଭୂତି ଭୂଷଣ ମଲ୍ଲିକ ଓ ଭାଗବତ ଲେଙ୍କା । ପ୍ରକାଶିକା ଥିଲେ

ଶ୍ରୀମତୀ ସାଗରିକା ମହାପାତ୍ର ଓ ସଂଯୋଜକ ଥିଲେ ଶ୍ରୀ ଶୁଭ୍ରାଂଶୁ କୁମାର ନାୟକ ।

ପୂଜ୍ୟପୂଜା ମଞ୍ଚ ବାଲେଶ୍ୱର ତରଫରୁ ଜୁନ୍ ୨୦୦୪ରେ ବାଲେଶ୍ୱର ଜିଲ୍ଲା ପ୍ରତିଭା ସଂକଳନର ପ୍ରଥମ ଭାଗ ପ୍ରକାଶିତ ହୋଇଛି । ସେଥିରେ ମୋ ସାହିତ୍ୟକୃତି ସଂପର୍କରେ କେତେକ କଥା ମଧ୍ୟ ଉଲ୍ଲେଖ କରାଯାଇଛି ।

ଓଡ଼ିଶାର ବହୁ ପ୍ରତିଷ୍ଠିତ ଅଧ୍ୟାପକ, ସାହିତ୍ୟ ସମାଲୋଚକ ଓଡ଼ିଆ ସାହିତ୍ୟର ଇତିହାସ ସଂପର୍କରେ ବହୁ ଗ୍ରନ୍ଥ ରଚନା କରିଛନ୍ତି । ସେ ସବୁ ବହିରେ ସାହିତ୍ୟର ବିଭିନ୍ନ ବିଭାଗରେ ମୁଁ ଲେଖିଥିବା ପୁସ୍ତକମାନଙ୍କର ନାମ ଓ କିଛି ଆଲୋଚନା ମଧ୍ୟ ପ୍ରକାଶ ପାଇଛି ।



# ପେସାଦାର ରଂଗମଂଚ ଓ ମୁଁ

ଦିନ ଥିଲା ଯେତେବେଳେ ଓଡ଼ିଶାର ପେସାଦାର ରଂଗମଂଚ ଓଡ଼ିଶା ଥିଏଟର୍ସ, ଅନ୍ନପୂର୍ଣ୍ଣା 'ଏ' ଓ 'ବି' ଗ୍ରୁପ୍, ଜନତା ଥିଏଟର୍ସ, କଳାଶ୍ରୀ ଥିଏଟର୍ସ ସପ୍ତାହର ସାତଟିଯାକ ଦିନରେ ନାଟକ ମଂଚସ୍ଥ କରୁଥିଲେ ଓ ପ୍ରେକ୍ଷାଳୟ ଦର୍ଶକ-ଦର୍ଶିକାମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହେଉଥିଲା । କଲିକତାରେ ଥିବା ରଂଗମଂଚମାନେ ଏପରିକି ବମ୍ବେଠାରେ ପୃଥ୍ୱୀରାଜ କପୁରଙ୍କ ପ୍ରସିଦ୍ଧ 'ପୃଥ୍ୱୀ ଥିଏଟର୍ସ' ମଧ୍ୟ ସପ୍ତାହର ସମସ୍ତ ଦିନରେ ନାଟକ ପ୍ରଦର୍ଶନ କରୁ ନଥିଲେ ।

ଅନ୍ନପୂର୍ଣ୍ଣ 'ଏ' ଗ୍ରୁପ୍‌ର ସ୍ଥାୟୀ ରଂଗମଂଚ ପୁରୀ ବଡ଼ଦାଣ୍ଡରେ ଥିଲା । ସେଠି କେବଳ ବର୍ଷା ମାସରେ ନାଟକ ପ୍ରଦର୍ଶନ ହେଉଥିଲା । ଅନ୍ୟ ଦିନମାନଙ୍କରେ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ଅସ୍ଥାୟୀ ରଂଗମଂଚ ତିଆରି କରି ନାଟକ ଦେଖାଉଥିଲେ ।

୧୯୬୨ ମସିହାର କଥା । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ବାଲେଶ୍ୱର ସହରର ମୋତିଗଞ୍ଜଠାରେ ନାଟକ ପ୍ରଦର୍ଶନ କରୁଥିଲେ । ଏହି ନାଟ୍ୟାନୁଷ୍ଠାନର ସଭାପତି ଥିଲେ କୃଷ୍ଣମୋହନ ରଥ, ମୁଖ୍ୟପରିଚାଳକ ବାଉରିବନ୍ଧୁ ମହାନ୍ତି ଓ ପରିଚାଳକ ଥିଲେ ବାଲୁକେଶ୍ୱର ରଥ । ବାଲୁବାବୁ ମୋ ଶ୍ୱଶୁରଙ୍କ ଦ୍ୱିତୀୟା ପତ୍ନୀଙ୍କୁ ଧରମଭଉଣୀ ବନେଇଥାନ୍ତି । ପ୍ରତ୍ୟେକ ନାଟକ ଦେଖିବାକୁ ମୁଁ ଓ ମୋ ସ୍ତ୍ରୀ ଯାଉଥିଲୁ । ଟିକେଟ୍ କରିବା ଦରକାର ପଡୁ ନଥିଲା । ମୁଁ ଯାଇ ବାଉରିବନ୍ଧୁବାବୁଙ୍କ ସହ କିଛି ସମୟ ବସି ଗପସପ ହେଇ ତା'ପରେ ପ୍ରେକ୍ଷାଳୟକୁ ଯାଇ ନାଟକ ଦେଖେ ।

ଦିନେ ବାଉରିବନ୍ଧୁବାବୁ କହିଲେ- "ଆପଣ ତ ଲେଖାଲେଖି କରନ୍ତି, ଆମ ପାଇଁ ଗୋଟେ ନାଟକ ଲେଖନ୍ତୁ ।"

ତାଙ୍କ କଥାଟା ମୋ ମନକୁ ପାଇଲା । କାରଣ ଯା ପୂର୍ବରୁ ମୁଁ ଖଣ୍ଡିଏ ଏକାଙ୍କିକା 'ପଥଭିକାରୀ' ଓ ଗୋଟିଏ କିଶୋର ନାଟକ 'ପରଶମଣି' ଲେଖିଥିଲି ।

ଏ ଦୁଇଟି ଯଥାକ୍ରମେ ୧୯୫୮ ଓ ୧୯୫୯ରେ ସାହିତ୍ୟ ଜଗତ ଦ୍ୱାରା ପ୍ରକାଶ ପାଇଥିଲା । ମୁଁ ରାଜି ହେଇଗଲି ତାଙ୍କ ପାଇଁ ଖଣ୍ଡିଏ ନାଟକ ଲେଖିବାକୁ ।

ମୁଁ ତାଙ୍କ ପାଇଁ 'ସୂର୍ଯ୍ୟମନ୍ଦିର' ନାଟକ ଲେଖିଲି ଏବଂ ତାହା ପୁରୀସ୍ଥିତ ମଞ୍ଚରେ ହିଁ ମଞ୍ଚସ୍ଥ ହେଲା ୧୯।୮।୧୯୬୨ ସନ୍ଧ୍ୟାରେ । ନାଟକର ଉପଦେଷ୍ଟା ଥିଲେ କାର୍ତ୍ତିକ କୁମାର ଘୋଷ ଓ ନିର୍ଦ୍ଦେଶକ ଥିଲେ ଦୁର୍ଲଭ ଚନ୍ଦ୍ର ସିଂହ । ପ୍ରଥମ ରଜନୀରେ ମୁଁ ଉପସ୍ଥିତ ଥିଲି । ବାଲେଶ୍ୱର କଲେଜରେ ମୋର ଅଧ୍ୟାପକ ଥିବା ଏବଂ ସେତେବେଳେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟାପକ ଥିବା ରାଜକିଶୋର ରାୟ ସେଦିନ ଉପସ୍ଥିତ ଥିଲେ । ନାଟକ ଶେଷ ହେବା ପରେ ତାଙ୍କ କଣ୍ଠରୁ ନିର୍ଗତ ହେଉଥିଲା ମୋ' ପାଇଁ ଉଚ୍ଛ୍ୱସିତ ପ୍ରଶଂସା ଓ ଆଶୀର୍ବାଦ ।

ଥିଏଟର୍ କର୍ତ୍ତୃପକ୍ଷ ପ୍ରତ୍ୟେକ ଦିନ ନାଟକର ବିଜ୍ଞାପନ ଖବରକାଗଜରେ ଦେଉଥିଲେ । ହଠାତ୍ ଦିନେ କଟକ 'ଗ୍ରନ୍ଥମନ୍ଦିର'ର ସ୍ୱତ୍ତ୍ୱାଧିକାରୀ ଅଭିରାମ ମହାପାତ୍ରଙ୍କଠାରୁ ପୋଷ୍ଟକାର୍ଡରେ ଖଣ୍ଡେ ଚିଠି ପାଇଲି । ଏ ନାଟକକୁ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ସେ ଆଗ୍ରହୀ ।

'ଗ୍ରନ୍ଥମନ୍ଦିର' କଟକରେ ଏକ ଲବ୍ଧ ପ୍ରତିଷ୍ଠ ପ୍ରକାଶନ ସଂସ୍ଥା । ପାଣ୍ଡୁଲିପି ନେଇ ତାଙ୍କୁ ଦେଲି । ବହିଛପା ଆରମ୍ଭ ହେଲା । ଭାବିଲି ରାଜକିଶୋର ରାୟଙ୍କୁ କହିବି ମୁଖବନ୍ଧ ଲେଖିବା ପାଇଁ । ବହିର ମୁଦ୍ରିତ ପୃଷ୍ଠାଗୁଡ଼ିକ ନେଇ ତାଙ୍କୁ ଦେଲି । ସେ ଆନନ୍ଦରେ ବିଭୋର ହୋଇଗଲେ । କହିଲେ, ସେ ତାହା ଲେଖି 'ଗ୍ରନ୍ଥମନ୍ଦିର' ଠିକଣାରେ ପଠାଇଦେବେ ।

ଚାରି ପାଞ୍ଚଦିନ ମଧ୍ୟରେ 'ସାମାନ୍ୟ କଥନ' ଶିରୋନାମାରେ ସେ ଲେଖାଟିକୁ ପଠାଇଦେଲେ । ସେ 'ସୂର୍ଯ୍ୟମନ୍ଦିର' ନାଟକର ଉତ୍କର୍ଷତା ପ୍ରତିପାଦନ କରି ଯାହା ସବୁ ଲେଖିଛନ୍ତି ତାହାହିଁ ହେଲା ଭବିଷ୍ୟତ ପାଇଁ ମୋର ପ୍ରେରଣା ।

ଏହି ସାମାନ୍ୟକଥନର ପ୍ରତ୍ୟେକ ପଂକ୍ତିରେ ରହିଛି ନାଟକର ପ୍ରଶସ୍ତି । ସେଥିରୁ କେତୋଟି ପଂକ୍ତି ଉଦ୍ଧାର କରିବାର ଲୋଭ ମୁଁ ସମ୍ବରଣ କରିପାରୁ ନାହିଁ । ସେ ଲେଖିଛନ୍ତି :

"ମୁଁ ଦେଖିଲି ନାଟକ ସହିତ କାବ୍ୟର ଯୁଗପତ୍ ସମ୍ମିଶ୍ରଣରେ କଳ୍ପନାର ଚରମକୁ ସ୍ପର୍ଶ କରାଯାଇଛି । ଯେଉଁ ବିଷୟ ଜ୍ଞାତ, ସେଠି ଚରମ ମୁହୂର୍ତ୍ତ ବା ଉତ୍କଂଠାର ରସସ୍ନିଗ୍ଧ ପରିବେଶର ଉଜ୍ଜ୍ୱଳତା ରହେ ନାହିଁ । ତେଣୁ ଏହାର

ଉପସଂହାରରେ ଯେ ସହସା ଚମକପ୍ରଦ ଗୋଟାଏ ଅନୁଭୂତି ଆସିବ, ତାହା ସମ୍ଭବ ନୁହେଁ । ତଥାପି ଦିବ୍ୟଭାବର ପୁନରାବୃତ୍ତି ମର୍ମସ୍ଥଳକୁ ଆଘାତ ଦିଏ । ଧରମାର ଆତ୍ମୋତ୍ସର୍ଗ ଅପେକ୍ଷା 'ସୂର୍ଯ୍ୟମନ୍ଦିର' ନାଟକରେ ଯେ ଦିବ୍ୟଭାବ ମୋର ନିରୀକ୍ଷାକୁ ଆସିଲା ତାହା ହେଉଛି ତା'ର ପ୍ରିୟ କଳାକାରର ଧ୍ୟାନ, ଜୀବନ ଓ ପ୍ରତିଭାକୁ ମୃତ୍ୟୁଞ୍ଜୟ କରିବା ଆଶାରେ ମାଳିନୀର ଆତ୍ମଦାନ ଓ ସେ ଆତ୍ମଦାନ ଘଟିଛି ଯେତେବେଳେ କୋଣାର୍କର ଶିଳାରେ ଫୁଟିଉଠିଛି ଶତଭଙ୍ଗୀ ଶତପ୍ରସାଧନରେ ଆଦିନାରୀର ବହୁ ବିଚିତ୍ର ରୂପାୟନ ।

ଯଦୁନାଥ ଧର୍ମାର ଜୀବନୋତ୍ସର୍ଗକୁ ନାଟକର ଚରମ ମୁହୂର୍ତ୍ତ ବୋଲି ଗ୍ରହଣ କରିନାହାଁନ୍ତି, କି ତାକୁ ଦୀପ୍ୟମାନ କରିନାହାଁନ୍ତି । ମନେହେଉଥାଏ ଝପ୍ କରି ଅନନ୍ତ ବାରିଧି ଭିତରକୁ ଧର୍ମା ଲମ୍ଫ ଦେଇ ଅଦୃଶ୍ୟ ହୋଇଯାଇଛି ଏବଂ ତା' ସଂଗେ ସଂଗେ ଦୃଶ୍ୟମାନ ହୋଇଉଠୁଛି ବିଷଳିପ୍ତ ପ୍ରତିଭାମୟୀ ପ୍ରେରଣାଦାୟୀ ଏକ ନାରୀର ସମାଧିକ୍ଷେତ୍ର । ସେଠି ଯଦୁନାଥ ଆତ୍ମବିଭୋର ହୋଇ ଗାଇଛନ୍ତି- "ଜବାକୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ..." ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର କୁଶଳୀ ଅଭିନେତା ଅଭିନେତ୍ରୀମାନେ ଏ ନାଟକର ସାର୍ଥକ ପରିବେଷଣ କରିଛନ୍ତି । ଚଳନ୍ତି ପଥରେ ସାମାଜିକ ନାଟକର ପରିବେଷଣରୁ ଅମଡ଼ା ମାଡ଼ିଯାଇ ଯଦୁନାଥ ଯେ' ଓଡ଼ିଆ ଗରିମାର ସ୍ୱରୂପ ଖଞ୍ଜିଦେଲେ, ଏଇ ସାର୍ଥକ ନାଟକରେ ସେଥିପାଇଁ ମୁଁ ତାଙ୍କୁ କଲ୍ୟାଣ କରୁଛି । ମୋର କାମନା, ତାଙ୍କର ଲେଖନୀ ଆହୁରି ମଧୁକ୍ଷରା ହେଉ ।"

ଶ୍ରୀ ରାଜକିଶୋର ରାୟ

ପୁରୀ

୧୫।୧୨।୧୯୬୨

ପରବର୍ତ୍ତୀ ସମୟରେ ଏହି ନାଟକ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ସ୍ନାତକରେ ପାଠ୍ୟପୁସ୍ତକ ହୋଇଥିଲା । ଏହାର ହିନ୍ଦୀ ଅନୁବାଦ କରିଛନ୍ତି ଡଃ ଶଙ୍କରଲାଲ୍ ପୁରୋହିତ ଓ ଏହାକୁ ପ୍ରକାଶ କରିଛନ୍ତି ଦିଲ୍ଲୀର ପ୍ରକାଶନ ସଂସ୍ଥା 'ନେସ୍‌ନାଲ୍ ପବ୍ଲିଶିଂ ହାଉସ୍, ନୂଆଦିଲ୍ଲୀ' । ଏହା ମଗଧ ଓ ବେରାର ବିଶ୍ୱବିଦ୍ୟାଳୟରେ ଏମ୍.ଏ. ଶ୍ରେଣୀରେ ପାଠ୍ୟପୁସ୍ତକ ଥିଲା ।

ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ମୋର ଆଉ ଗୋଟିଏ ନାଟକ 'ସେତୁବନ୍ଧ' ମଞ୍ଚସ୍ଥ କରିଥିଲେ ୧୯୬୯ ମସିହାରେ । ଏହି ନାଟକ ଲେଖିବା ପାଇଁ ସେତେବେଳେ ଭୁବନେଶ୍ୱରରେ ଅବସ୍ଥାପିତ ଭାରତ ସରକାରଙ୍କ କ୍ଷେତ୍ରପ୍ରଚାର ସଂସ୍ଥାର ରିଜିଓନାଲ୍ ଡାଇରେକ୍ଟର ବିଶ୍ୱନାଥ ରଥଙ୍କ ଇଚ୍ଛା ଓ ଅନୁରୋଧ ମୋତେ ଆଗ୍ରହୀ କରାଇଥିଲା । ସେ କଳାଶ୍ରୀ ଥିଏଟର୍‌ରେ ମୋ 'ଭୁଲିହୁଏନା' ନାଟକ ଦେଖିଥିଲେ ଓ ମୋ' ଆଗରେ ତା'ର ଉଚ୍ଚ ପ୍ରଶଂସା କରିଥିଲେ । ଗାନ୍ଧି ଦର୍ଶନ ଉପରେ ନାଟକଟିଏ ଲେଖି ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ ଦ୍ୱାରା ମଞ୍ଚସ୍ଥ କରାଇଲେ ସେ ତାହାକୁ ତାଙ୍କ କ୍ଷେତ୍ର ପ୍ରଚାର ସଂସ୍ଥାର ଅନୁମୋଦନ କରାଇଦେବେ ଓ ପ୍ରତିରାତ୍ରିର ପ୍ରଦର୍ଶନ ପାଇଁ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌କୁ କ୍ଷେତ୍ରପ୍ରଚାର ସଂସ୍ଥା ପାଞ୍ଚଶହ ଟଙ୍କା କରି ଦେବ । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଭ୍ରାମ୍ୟମାଣ ମଂଚ କରି ଏ ନାଟକକୁ ବହୁ ସ୍ଥାନରେ ପ୍ରଦର୍ଶନ କରିଥିଲେ ।

୧୯୬୫ ମସିହାରେ ଜନତା ରଂଗମଂଚରେ କେତେଜଣ ବିଶିଷ୍ଟ କଳାକାର 'ଜନତା'ରୁ ବାହାରିଆସି 'ଶ୍ରୀମା ଥିଏଟର୍' ଆରମ୍ଭ କରିଥିଲେ । ବିଖ୍ୟାତ ଅଭିନେତା ଓ ନିର୍ଦ୍ଦେଶକ ଭୋଳାନାଥ ଦାସ, ମଞ୍ଚ ଓ ଚଳଚ୍ଚିତ୍ରର ହାସ୍ୟରସ ଅଭିନେତା ଶରତ ମହାନ୍ତିଙ୍କ ଅନୁରୋଧରେ ଲେଖିଥିଲି ନାଟକ 'ଭୁଲିହୁଏନା' । ୧୫।୮।୧୯୬୫ ସ୍ୱାଧୀନତା ଦିବସରେ ରଂଗମଂଚରେ ଏହାକୁ ଉଦ୍‌ଘାଟନ କରିଥିଲେ ସେତେବେଳର ସାଂସ୍କୃତିକ ବିଭାଗର ଉପମନ୍ତ୍ରୀ ସନ୍ତୋଷ କୁମାର ସାହୁ ।

କଟକସ୍ଥିତ 'କଳାଶ୍ରୀ' ଥିଏଟର ମଧ୍ୟ ଏହାକୁ ମଞ୍ଚସ୍ଥ କରିଥିଲେ ୧୯୬୬ ମସିହାରେ । ଏହାକୁ ଉଦ୍‌ଘାଟନ କରିଥିଲେ ସେ'ବେଳର ସ୍ୱରାଷ୍ଟ୍ରମନ୍ତ୍ରୀ ନୀଳମଣି ରାଉତରାୟ । ମୁଖ୍ୟଅତିଥି ଥିଲେ ଲୋକସଂପର୍କ ନିର୍ଦ୍ଦେଶକ ଶଶିଭୂଷଣ ମିଶ୍ର । 'ଜନତା' ରଂଗମଂଚରେ ଏହା ମଧ୍ୟ ଅନେକ ରାତି ଅଭିନୀତ ହୋଇଥିଲା ।

'କଳାଶ୍ରୀ' ଥିଏଟରେ ୧୯୭୦ ମସିହାରେ ମୋର 'କ୍ଷମା କରିବେ କି' ନାଟକ ମଞ୍ଚସ୍ଥ କରିଥିଲେ । ସେହି ୧୯୭୦ ମସିହାରେ ମୋର ଆଉ ଏକ ନାଟକ 'ରାତ୍ରିଗୋ ତୁମେ କଥା କୁହ' ଜନତା ରଂଗମଂଚରେ ଅଭିନୀତ ହୋଇଥିଲା ।

ସେତେବେଳେ ବାଲେଶ୍ୱରରେ ରହୁଥିବା ବର୍ମା ସେଲ୍‌ର ସେଲ୍‌ସ ଅଫିସର୍, ମୋର ସହପାଠୀ ଓ ଘନିଷ୍ଠ ବନ୍ଧୁ ମନମୋହନ ରାୟ ମୋତେ ବହୁତ ସାହାଯ୍ୟ କରିଥିଲେ । 'କଳାଶ୍ରୀ' ଥିଏଟର ବାଲେଶ୍ୱରରେ ନାଟକ ପ୍ରଦର୍ଶନ କରୁଥିଲେ ୧୯୭୦ ମସିହାରେ । ଏହି ନାଟକର ରିହରସାଲ୍ ବେ[illegible] ମନମୋହନ ପ୍ରତିଦିନ

ମୋତେ ତାଙ୍କ ଗାଡ଼ିରେ ନେଇ ଘଣ୍ଟା ଘଣ୍ଟା ବସିରହି ରିହର୍ସାଲ୍ ଦେଖୁଥିଲେ ଓ ନାଟକ ବିଷୟରେ ମୂଲ୍ୟବାନ ପରାମର୍ଶ ଦେଉଥିଲେ ।

ଠିକ୍ ସେହିଭଳି ୧୯୭୦ ମସିହାରେ 'ଜନତା' ରଂଗମଂଚର କେମ୍ପ୍ ଖନ୍ନାପଡ଼ାରେ ପଡ଼ିଥିବାବେଳେ 'ରାତ୍ରିଗୋ ତୁମେ କଥାକୁହ' ନାଟକ ସେମାନେ ମଞ୍ଚସ୍ଥ କରିଥିଲେ । ସେ ନାଟକର ରିହର୍ସାଲ୍‌ବେଳେ ମଧ୍ୟ ମନମୋହନ ଗାଡ଼ିରେ ସେ ଓ ମୁଁ ଖନ୍ନାପଡ଼ା ଯାଉଥିଲୁ । ମନମୋହନ ଥିଲେ ମୋର ଅକୃତ୍ରିମ ବନ୍ଧୁ । ଏହି ଦୁଇଟି ନାଟକ ମୁଁ ତାଙ୍କୁ ହିଁ ଉତ୍ସର୍ଗ କରିଥିଲି ।



# ଅଥବା ଅନ୍ଧାର

ମୋର ଆହୁରି କିଛି ନାଟକ ଅଛି ଯାହା ପେସାଦାର ରଂଗମଂଚରେ ଅଭିନୀତ ହୋଇନାହିଁ, ତନ୍ମଧ୍ୟରୁ 'ଅଥବା ଅନ୍ଧାର' ଅନ୍ୟତମ । ଏହି ନାଟକ ପାଇଁ ମୁଁ ୧୯୭୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସମ୍ମାନ ଲାଭ କରିଥିଲି । ମୋର ସମଗ୍ର ନାଟ୍ୟସାହିତ୍ୟ ପାଇଁ ମୁଁ ୧୯୮୪ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ଶ୍ରେଷ୍ଠ ନାଟ୍ୟକାର ଭାବେ ସମ୍ମାନିତ ହୋଇଥିଲି ।

ଏହି ନାଟକକୁ ଭୁବନେଶ୍ୱରର 'ଶ୍ରୀ' ନାଟ୍ୟସଂସ୍ଥା ୧୯୭୪ ମସିହା ଏପ୍ରିଲ୍ ମାସ ୨୨ ଓ ୨୩ ତାରିଖରେ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ପରିବେଷଣ କରିଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଓ ବିରୋଧୀ ଦଳ ନେତା ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ନାଟକ ଦେଖିବା ପାଇଁ ରବୀନ୍ଦ୍ର ମଣ୍ଡପରେ ଉପସ୍ଥିତ ଥିଲେ । ସେ ଦୁହିଁଙ୍କ ମଝିରେ ମୁଁ ବସିଥିଲି । ମଝିରେ ମଝିରେ ମୋତେ ଚାହିଁ ପ୍ରଶଂସାସୂଚକ ହସ ହସୁଥିଲେ । ଏହି ନାଟକର ପରିଚାଳନା କରିଥିଲେ ଅସୀମ ବସୁ, ଉପଦେଷ୍ଟା ଥିଲେ ଅନଂତ ମହାପାତ୍ର, ବ୍ୟବସ୍ଥାପନା କରିଥିଲେ ବିଶିଷ୍ଟ ନାଟ୍ୟକାର ବନ୍ଧୁ ବିଜୟ ମିଶ୍ର ଓ ସଙ୍ଗୀତର ଦାୟିତ୍ୱରେ ଥିଲେ ଶାନ୍ତନୁ ମହାପାତ୍ର । ପ୍ରକାଶିତ ପୁସ୍ତକର ମୁଖବନ୍ଧ 'ସାଂପ୍ରତିକ ନାଟକ ଅଥବା ଅନ୍ଧାର' ଲେଖିଛନ୍ତି ବିଜୟ ମିଶ୍ର । ସେ ଗୋଟାଏ ଜାଗାରେ ଲେଖିଛନ୍ତି :-

'ଅଥବା ଅନ୍ଧାର' ଏକ ଆଶ୍ଚର୍ଯ୍ୟ ସୃଷ୍ଟି ନ ହୋଇପାରେ । କିନ୍ତୁ ଗୋଟାଏ ଗିମିକ୍ ବା ଷ୍ଟଣ୍ଟ୍ ନୁହେଁ । ଏହା ବରଂ ନାଟ୍ୟକାରଙ୍କର ଏକ ନୂତନ ଉପଲବ୍ଧିର ଫସଲ ।"

ଆଉ ଏକ ନାଟକ 'ଅଶାନ୍ତ ଦ୍ରୌପଦୀ' ଅନ୍ୟ ଏକ ନାଟକ 'ବାନ୍ଦୀ ବେଗମ୍ ବାଦ୍‌ଶାହ' ଓ 'କଂସ' 'ଅଥବାଅନ୍ଧାର' ପରେ ଲେଖିଥିଲି । ସେତେବେଳକୁ ପେସାଦାର ରଂଗମଂଚ ଆଉ ନଥିଲା ।

'ଅଶାନ୍ତ ଦ୍ରୌପଦୀ' ନାଟକ ଓ କିଛି ଏକାଙ୍କିକା କଟକ ଆକାଶବାଣୀରୁ ପ୍ରଚାରିତ ହୋଇଥିଲା ।

'ପଥଭିକାରୀ' ଏକାଙ୍କ ନାଟକ, 'ପରଶମଣି' କିଶୋର ନାଟକ ଓ 'ସଂଗ୍ରାମ' ନାଟକ ମଧ୍ୟ ମୋରି ଲେଖା । 'ସଂଗ୍ରାମ' କଲିକତାର ଏକ ନାଟ୍ୟସଂସ୍ଥା ଦ୍ୱାରା ଅଭିନୀତ ହୋଇଥିଲା । 'ନୂଆ କିଛି ନୁହେଁ' ମଧ୍ୟ ମୋର ଅନ୍ୟ ଏକ ନାଟକ ।



# ମୋ ସାହିତ୍ୟ - ଆଉ କିଛି କଥନ

ପଚାଶ ଦଶକର ଅପରାର୍ଦ୍ଧ ଏବଂ ସମଗ୍ର ଷାଠିଏ ଦଶକରେ ମୁଁ ନାନା ଭାବରେ ବ୍ୟସ୍ତ ଥାଇ ମଧ୍ୟ ନିରବଛିନ୍ନ ଭାବରେ ଲେଖନୀ ଚାଳନା କରୁଥିଲି ।

ସେତେବେଳେ କଟକରୁ ବଂଶୀଧର ଭୂୟାଁ ଜନସାହିତ୍ୟ ପ୍ରକାଶନ ତରଫରୁ ପ୍ରତ୍ୟେକ ମାସରେ ଖଣ୍ଡିଏ ଲେଖାଏଁ ଉପନ୍ୟାସ ପ୍ରକାଶ କରୁଥିଲେ । ସେଥିରେ ମୋର ଚାରିଟି ଉପନ୍ୟାସ  ପ୍ରେମର ପ୍ରଥମ ସମ୍ବୋଧନ, ପ୍ରଳୟ ପୟୋଧି ଜଳେ, ମୃତବନ୍ଦରର ଇତିକଥା ଓ ଟିକିଏ ଭୁଲ୍ ପାଇଁ ପ୍ରକାଶ ପାଇଥିଲା । ସେହଭଳି ବାଲୁଗାଁରୁ ପଦ୍ମଚରଣ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶ ପାଉଥିବା 'ଗୁପ୍ତଚର' ଗୋଇନ୍ଦା ଉପନ୍ୟାସ ସିରିଜ୍‌ରେ ମୋର 'ବିଭୀଷିକା' ଉପନ୍ୟାସ ପ୍ରକାଶ ପାଇଥିଲା । ଏହି ସମୟରେ ମୁଁ ଲେଖିଥିବା ଓ ପ୍ରକାଶ ପାଇଥିବା ପୁସ୍ତକମାନଙ୍କ ମଧ୍ୟରେ ଥିଲା ମୋର ଦୀର୍ଘତମ ଉପନ୍ୟାସ 'ଗ୍ରାମ୍ୟନଦୀର ତୀରେ' । ଏହାକୁ ପ୍ରକାଶ କରିଥିଲେ କଟକର 'ଗ୍ରନ୍ଥମନ୍ଦିର' ୧୯୬୬ ମସିହାରେ ।

ଏହାର ବିଷୟବସ୍ତୁ : ସୋର ନିର୍ବାଚନ ମଣ୍ଡଳୀର ଦକ୍ଷିଣ ସୀମାରେ ପ୍ରବାହିତ କ୍ଷୁଦ୍ରନଦୀ କାଂଶବାଂଶ । କଲିକତାରୁ ଲମ୍ବି ଆସିଥିବା ଜଗନ୍ନାଥ ସଡ଼କ (ଯାହା ବର୍ତ୍ତମାନ ଜାତୀୟ ରାଜପଥ)ର ଏହି ନଦୀର ପୋଲ ପାଖରେ ଚୈତ୍ରମାସ କୃଷ୍ଣ ଚତୁର୍ଦ୍ଦଶୀରେ ଆଖପାଖ ଗାଆଁର ଅନେକ ଲୋକ ଆସି ଏଠାରେ ବାରୁଣୀ ସ୍ନାନ କରନ୍ତି । ମୁଁ ହାଇସ୍କୁଲରେ ପଢୁଥିବାବେଳେ ଥରେ ଆମେ କିଛି ପିଲା ଏଠାରେ ବାରୁଣୀ ସ୍ନାନ କରିଥିଲୁ । ଜାତୀୟ ରାଜପଥ ହେବା ପରେ ସେଇ ପୁରୁଣା ପୋଲର ଟିକିଏ ଉପରକୁ ନଦୀ ଉପରେ ନୂତନ ପୋଲ ନିର୍ମିତ ହୋଇଛି । ବର୍ତ୍ତମାନ ପ୍ରାୟ ଅକାମି ହୋଇଯାଇଛି ।

ନଦୀଟି କ୍ଷୁଦ୍ର ହେଲେହେଁ ବନ୍ୟା ସମୟରେ ଭାରି ଭୟଙ୍କର ହୋଇଉଠେ । ସ୍ଥାନେ ସ୍ଥାନେ ନଦୀବନ୍ଧ ଭାଂଗିଯାଏ । ସେତେବେଳେ ନଦୀ ପାଖରେ ଥିବା

ଗାଆଁ ଭିତରକୁ ବନ୍ୟାଜଳ ପଶିଯାଇ ଅନେକ ଘର ଭାଂଗିଯାଏ । ବେଳେବେଳେ ଜାତୀୟ ରାଜପଥ ଭାଂଗିଯିବା ଯୋଗୁ ଯାନବାହନ ଚଳାଚଳ ମଧ୍ୟ ବନ୍ଦ ହୋଇଯାଏ । ଏହିଭଳି ଏକ ବନ୍ୟା ବେଳେ ମୁଁ ଜାତୀୟ ରାଜପଥରୁ ନଦୀବନ୍ଧ ଉପରେ ଚାଲି ଚାଲି କିଛି ଗାଆଁକୁ ଯାଇ ଲୋକମାନଙ୍କର ଅବସ୍ଥା ଦେଖିଥିଲି । ଏହାକୁ ଭିତ୍ତି କରି ଏହି ଉପନ୍ୟାସ ଲେଖିଥିଲି ।

ଉପନ୍ୟାସର ଆରମ୍ଭରେ ଏହି ନଦୀର ବନ୍ୟା ବିଷୟରେ ଉଲ୍ଲେଖ ଅଛି । ଏହି ନଦୀକୂଳର ଏକ ଗାଆଁର କନ୍ୟା । ମଣିକୁନ୍ତଳା ହେଉଛି ଏହି ଉପନ୍ୟାସର ନାୟିକା । ମଣିକୁନ୍ତଳାର ଜୀବନ ଦୀପ ଲିଭିଯିବା ପରେ ତା'ର ଚିତା ମଧ୍ୟ ଜଳିଉଠିଛି ଏଇ ନଦୀର ତୀରରେ ।

ମଣିକୁନ୍ତଳାର ମୃତ୍ୟୁ ପରେ ତା' ବିଛଣା ତଳୁ ତା' ହାତଲେଖା ଦୁଇଖଣ୍ଡି ଚିଠି ମିଳିଥିଲା । ସେହି ଦୁଇଟି ଚିଠି ମଧ୍ୟରୁ ଗୋଟିଏ ଚିଠିରେ ଯାହା ଲେଖାଅଛି ବୋଲି ମୁଁ ଲେଖିଛି, ତାହା ମୁଁ ଏଠାରେ ଉଲ୍ଲେଖ କରୁଛି । ସେ ଲେଖିଛି :

"ମୋର ଜୀବନକାଳ ମଧ୍ୟରେ ସବୁଠୁ ମୁଁ ବେଶୀ ଭଲ ପାଇଥିଲି ଗାଆଁ ପାଖରେ ବହିଯାଇଥିବା ଏଇ କାଂଶବାଂଶ ନଦୀକୁ । ଏହାରି ତୀରରେ ଜନ୍ମ ନେଇ ମୁଁ ମଣିଷ ହେଇଚି । ମୋ କର୍ମମୟ ଜୀବନରେ ମୁଁ ନାଚିଚି କୁଦିଚି କାନ୍ଦିଚି ଏଇ ନଦୀର ତଟରେ । ଏଇ ନଦୀର ଆକର୍ଷଣ ମୋ ପାଖରେ ଥିଲା ସବୁଠୁ ପ୍ରିୟ । ମୋର ମୃତ୍ୟୁ ପରେ ମୋର ଶରୀରଟାକୁ ଏଇ ନଦୀ ତଟରେ ଯୋଡ଼ା ବର ଅଶ୍ୱତ୍ଥ ଗଛ ତଳେ ସମାଧି ଦେଇଦେବ ଆଉ ସେଇ ସମାଧି ଉପରେ ଲେଖିଦେବ- ଏଇ ସମାଧି ତଳେ ଯାହାର ମର ଶରୀର ପୋଡ଼ି ପାଉଁଶ ହେଇଯାଇଚି ସେଇ ମଣିକୁନ୍ତଳା ଏଇ ଗ୍ରାମ୍ୟନଦୀ କାଂଶବାଂଶକୁ ପ୍ରାଣ ଦେଇ ଭଲ ପାଇଥିଲା । ସେ ଚାହିଁଥିଲା ତା'ର ମୃତ୍ୟୁ ପରେ ତା'ର ପାର୍ଥିବ ଦେହ ଏଇ ନଦୀ ତୀରରେ ପାଉଁଶ ହେଇ ଏଇ ଗାଆଁର ମାଟି ସହିତ ମିଶିଯାଉ । ତା'ର ଏଇ ଇଚ୍ଛା ପୂର୍ଣ୍ଣ ହେଇଥିବା ଯୋଗୁଁ ସ୍ୱର୍ଗରେ ତା'ର ଆତ୍ମା ଶାନ୍ତି ପାଇଛି ।"

ମୁଁ ଲେଖିଥିବା ଷୋଳଖଣ୍ଡ ଉପନ୍ୟାସ ମଧ୍ୟରେ ଏହି ଉପନ୍ୟାସଟିକୁ ଲେଖି ମୁଁ ଯେତିକି ଆତ୍ମତୃପ୍ତି ଲାଭ କରିଛି ତାହାର ପଟ୍ଟାନ୍ତର ନାହିଁ ।



# ୧୯୭୧ ମସିହା ବିଧାନସଭା ନିର୍ବାଚନ

୧୯୬୭ ମସିହାରେ ପ୍ରତିଷ୍ଠିତ ହୋଇଥିବା ସ୍ୱତନ୍ତ୍ର ଜନକଂଗ୍ରେସ ସରକାରର ପତନ ୧୯୭୧ ମସିହା ଜାନୁଆରୀ ମାସ ୯ ତାରିଖରେ ହୋଇଥିଲା । ହରେକୃଷ୍ଣ ମହତାବ ଓ ପବିତ୍ରମୋହନ ପ୍ରଧାନଙ୍କ ମଧ୍ୟରେ ମନାନ୍ତର ହିଁ ଏହି ପତନର ମୁଖ୍ୟ କାରଣ ଥିଲା । ଜାନୁଆରୀ ମାସ ଏଗାର ତାରିଖ ଦିନ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା କିନ୍ତୁ ମହାମାନ୍ୟ ରାଷ୍ଟ୍ରପତି ବିଧାନସଭାକୁ ଭାଂଗି ନଥିଲେ । ନୀଳମଣି ରାଉତରାୟ ଥିଲେ ନବଗଠିତ ଉତ୍କଳ କଂଗ୍ରେସ ଦଳର ସଭାପତି । ମୁଁ ଥିଲି ବାଲେଶ୍ୱର ଜିଲ୍ଲା ଉତ୍କଳ କଂଗ୍ରେସର ସଭାପତି ।

ନୀଳମଣିବାବୁ ବିଧାନସଭାକୁ ଭାଂଗି ଆସନ୍ନ ଲୋକସଭା ନିର୍ବାଚନ ସହିତ ଓଡ଼ିଶା ବିଧାନସଭାର ନିର୍ବାଚନ କରାଇବା ପାଇଁ ଦାବୀ କରିଥିଲେ । ସେହି ଜାନୁଆରୀ ମାସ ୨୩ ତାରିଖ ଦିନ ଓଡ଼ିଶା ବିଧାନସଭାକୁ ଭାଂଗି ଦିଆଯାଇଥିଲା । ମାର୍ଚ୍ଚ ମାସ ୫ ତାରିଖରେ ହେବାକୁ ଥିବା ଲୋକସଭା ନିର୍ବାଚନ ସହିତ ବିଧାନସଭା ନିର୍ବାଚନ କରାଯିବ ବୋଲି କେନ୍ଦ୍ର ନିର୍ବାଚନ କମିସନ୍ ଘୋଷଣା କରିଥିଲେ । ଫେବୃଆରୀ ମାସ ୨ ତାରିଖ ଦିନ ଉତ୍କଳ କଂଗ୍ରେସର ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଉକ୍ତ ବୈଠକରେ ସ୍ଥିର କରାଯାଇଥିଲା ଯେ ସମସ୍ତ ଲୋକସଭା ଓ ବିଧାନସଭା ଆସନରେ ଉତ୍କଳ କଂଗ୍ରେସ ତରଫରୁ ପ୍ରାର୍ଥୀ ଦିଆଯିବ । ସେତେବେଳେ ଓଡ଼ିଶାରେ ଲୋକସଭାର ଆସନ ୨୦ ଓ ବିଧାନସଭାର ଆସନ ୧୪୦ ଥିଲା । ସୋର ନିର୍ବାଚନ ମଣ୍ଡଳୀ ସୋର ଓ ବାହାନଗା ପଞ୍ଚାୟତ ସମିତି ଏବଂ ଖଇରା ପଞ୍ଚାୟତ ସମିତିର ୫ଟି ପଞ୍ଚାୟତକୁ ନେଇ ଗଠିତ ହୋଇଥିଲା । ସେହିସବୁ ପଞ୍ଚାୟତମାନଙ୍କରେ ଥିବା ଅନେକ ଗାଆଁ ପୂର୍ବରୁ ଆମ ଜମିଦାରୀ ଭିତରେ ଥିଲା ।

୧୯୭୧ ମସିହା ମାର୍ଚ୍ଚ ମାସ ୪ ତାରିଖରେ ସୋରରୁ କଂଗ୍ରେସ ଦଳର ବିଧାୟକ ଥିବା କରୁଣାକର ପାଣିଗ୍ରାହୀଙ୍କର ପରଲୋକ ମୋତେ ମଧ୍ୟ ଖୁବ୍ ବ୍ୟଥିତ କରିଥିଲା । ସେ ତାଙ୍କ ନିଜ ଗାଆଁ ମହାରାଜପୁର ଛାଡ଼ି ବାଲେଶ୍ୱର ସହରରେ ଘର କରି ରହୁଥିଲେ । ତାଙ୍କର ଦୁଇଟି ପୁଅ । ବଡ଼ପୁଅ ବିଜୟ ତାଙ୍କ ସହିତ ଘରେ ରହୁଥିଲେ । ସାନପୁଅ ବିନୟ ବିଦ୍ୟୁତ୍ ଇଂଜିନିୟର, ସରକାରୀ ଚାକିରିରେ ନିଯୁକ୍ତ ଥିଲେ ।

ହରେକୃଷ୍ଣ ମହତାବ ସେତେବେଳକୁ କଂଗ୍ରେସ ଦଳରେ ସାମିଲ୍ ହୋଇସାରିଥିଲେ । ସେତେବେଳେ ମହତାବ ଚାହୁଁଥିଲେ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସରେ ସାମିଲ ହୋଇଯାଉ । ମାତ୍ର ଏ ପ୍ରସ୍ତାବକୁ ଉତ୍କଳ କଂଗ୍ରେସ ଗ୍ରହଣ କରି ନଥିଲା ।

ନିର୍ବାଚନରେ ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଚାରିଟି ବିଧାନସଭା ନିର୍ବାଚନ ମଣ୍ଡଳୀ ଓ ଗୋଟିଏ ଲୋକସଭା ଆସନରୁ ଓ ଅନ୍ୟତମ ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର କଟକ ବିଧାନସଭା ଓ ଲୋକସଭା ଉଭୟ ଆସନରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ନୀଳମଣି ରାଉତରାୟ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ବାସୁଦେବପୁରରୁ । ମୁଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲି ସୋର ନିର୍ବାଚନ ମଣ୍ଡଳୀରୁ । ମୋର ଅନ୍ୟତମ ଘନିଷ୍ଠ ବନ୍ଧୁ ୧୯୬୭ ମସିହାରେ ବସ୍ତାରୁ କଂଗ୍ରେସ ଦଳର ବିଧାୟକ ହୋଇଥିବା ଚିନ୍ତାମଣି ଜେନା ସେହି ବସ୍ତା ନିର୍ବାଚନ ମଣ୍ଡଳୀରୁ ଉତ୍କଳ କଂଗ୍ରେସରୁ ପ୍ରାର୍ଥୀ ହେଲେ ।

ବାହାନଗା ପଞ୍ଚାୟତ ସମିତିର ତାଳକୁରୁଣିଆଠାରେ ଏକ ବିରାଟ ପଡ଼ିଆ ଅଛି । ସେହି ପଡ଼ିଆରେ ମୋ' ପାଇଁ ଏକ ନିର୍ବାଚନସଭା ଅନୁଷ୍ଠିତ ହୋଇଥିଲା । ବିଜୁ ପଟ୍ଟନାୟକ ଏକ ହେଲିକେପ୍ଟରରେ ଆସି ସେହି ପଡ଼ିଆରେ ଅବତରଣ କରି ମୋତେ ଜିତାଇବା ପାଇଁ ସୋରର ଭୋଟରମାନଙ୍କୁ ନିବେଦନ କରିଥିଲେ । ହେଲିକପ୍ଟର ଓ ବିଜୁ ପଟ୍ଟନାୟକଙ୍କୁ ଦେଖିବା ପାଇଁ ହଜାର ହଜାର ପୁରୁଷ-ସ୍ତ୍ରୀ ସେଦିନ ସଭାରେ ଉପସ୍ଥିତ ଥିଲେ । ସେଦିନର ସେହି ସଭା ହିଁ ମୋତେ ଜିତେଇ ଦେଇଥିଲା । ବସ୍ତାରୁ ଚିନ୍ତାମଣି ଜେନା, ବାସୁଦେବପୁରରୁ ନୀଳମଣି ରାଉତରାୟ ମଧ୍ୟ ଜିତିଥିଲେ ।

ଉତ୍କଳ କଂଗ୍ରେସ ପାଇଁ ସବୁଠାରୁ ଦୁଃଖଦ ଘଟଣା ଥିଲା ବିଜୁବାବୁ ଓ ବୀରେନ୍‌ବାବୁ ପ୍ରତିଦ୍ୱନ୍ଦ୍ୱିତା କରିଥିବା ସବୁଯାକ ନିର୍ବାଚନ ମଣ୍ଡଳୀରୁ ପରାଜିତ

ହୋଇଥିଲେ । କେବଳ ବିଜୁବାବୁ ଓ ବୀରେନ୍‌ବାବୁ ନୁହନ୍ତି ଅନ୍ୟ ଦଳର କେତେକ ତୁଙ୍ଗ ନେତା ମଧ୍ୟ ପରାଜିତ ହୋଇଥିଲେ । ସଦାଶିବ ତ୍ରିପାଠୀ, ପବିତ୍ର ମୋହନ ପ୍ରଧାନ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିଜୟ କୁମାର ପାଣି, ଦୀନବନ୍ଧୁ ସାହୁ, ଲୋକନାଥ ଚୌଧୁରୀ ପ୍ରମୁଖ ପରାଜିତ ହୋଇଥିଲେ । ଉତ୍କଳ କଂଗ୍ରେସ ୩୨, ସ୍ୱତନ୍ତ୍ର ଦଳ ୩୬, ଶାସକ କଂଗ୍ରେସ ୫୧, ଝାଡ଼ଖଣ୍ଡ ଦଳ ୪, କମ୍ୟୁନିଷ୍ଟ ଦଳ ୪, ପି.ଏସ୍.ପି. ୪ଟି ସ୍ଥାନ ଦଖଲ କରିଥିଲେ । ଅବଶିଷ୍ଟ ଆସନ ସି.ପି.ଆଇ.(ଏମ୍), ସଂଗଠନ କଂଗ୍ରେସ ଓ ସ୍ୱାଧୀନ ସଭ୍ୟମାନେ ପାଇଥିଲେ ।

ନିର୍ବାଚନ ଫଳ ଘୋଷଣା ପରେ ଉତ୍କଳ କଂଗ୍ରେସ ସଭାପତି ନୀଳମଣିବାବୁ ସାମ୍ବାଦିକମାନଙ୍କୁ କହିଥିଲେ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ପ୍ରସ୍ତୁତ । ମାତ୍ର ଶାସକ କଂଗ୍ରେସ ଚାହୁଁଥିଲା ତାଙ୍କ ସହିତ ଉତ୍କଳ କଂଗ୍ରେସର ମିଶ୍ରଣ । ତାହା କିନ୍ତୁ ସମ୍ଭବପର ନଥିଲା । ତେଣୁ ସ୍ୱତନ୍ତ୍ର ଦଳ ଓ ଉତ୍କଳ କଂଗ୍ରେସ ଦଳ ଏବଂ ଝାଡ଼ଖଣ୍ଡ ଦଳର ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଯିବାର ନିଷ୍ପତ୍ତି ହେଲା । ବୟୋଜ୍ୟେଷ୍ଠ ନେତା ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ଗଠନ କରାଗଲା ମନ୍ତ୍ରିମଣ୍ଡଳ । ତା୩।୪।୧୯୭୧ରିଖ ଦିନ ସେ ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେଲେ । ଏହି ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କୁ ଛାଡ଼ି ଆଉ ୧୩ ଜଣ କେବିନେଟ୍ ମନ୍ତ୍ରୀ ରହିଲେ । ସେମାନେ ହେଲେ ରାଜେନ୍ଦ୍ର ନାରାୟଣ ସିଂହଦେଓ, ନୀଳମଣି ରାଉତରାୟ, ପ୍ରହ୍ଲାଦ ମଲ୍ଲିକ, ପ୍ରତାପଚନ୍ଦ୍ର ମହାନ୍ତି, ବୃନ୍ଦାବନ ନାୟକ, ନଟବର ପ୍ରଧାନ, ଅନନ୍ତ ନାରାୟଣ ସିଂହଦେଓ, ଅଇଁଠୁ ସାହୁ, ଦୟାନିଧି ନାୟକ, ରାମକୃଷ୍ଣ ପଟ୍ଟନାୟକ, ଶରତ କୁମାର କର, ଗଙ୍ଗାଧର ପ୍ରଧାନ ଓ ସିଦ୍ଧିଲାଲ୍ ମୁର୍ମୁ । ଏପ୍ରିଲ୍ ମାସ ୧୨ ତାରିଖରେ ବାଚସ୍ପତି ନିର୍ବାଚନ ହେଲା । ପୂର୍ବ ବିଧାନସଭାରେ ବାଚସ୍ପତି ରହିଥିବା ନନ୍ଦକିଶୋର ମିଶ୍ର ବାଚସ୍ପତି ନିର୍ବାଚିତ ହେଲେ । ମେ' ମାସ ୬ ତାରିଖରେ ଉପବାଚସ୍ପତି ନିର୍ବାଚନରେ ନାରାୟଣ ବୀରବର ସାମନ୍ତ୍ ନିର୍ବାଚିତ ହୋଇଥିଲେ ।



# ବିଶ୍ୱନାଥ ଦାଶଙ୍କ ମୁଖ୍ୟମନ୍ତ୍ରିତ୍ୱ

ବିଶ୍ୱନାଥ ଦାଶଙ୍କର କର୍ମନିଷ୍ଠା, ସରଳ ଜୀବନଯାପନ ପ୍ରଣାଳୀ ଓ ସତ୍ୟବାଦିତା ସମସ୍ତଙ୍କୁ ଆକୃଷ୍ଟ କରୁଥିଲା । ମୁଁ ତ ତାଙ୍କର ସରଳତା ଦେଖି ବିସ୍ମିତ ହେଉଥିଲି । ସେ ପାଞ୍ଚବର୍ଷ ପାଇଁ ଉତ୍ତରପ୍ରଦେଶ ଭଳି ବିରାଟ ପ୍ରଦେଶର ରାଜ୍ୟପାଳ ଥିଲେ । ୧୯୩୭ ମସିହାରେ ସେ ମଧ୍ୟ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲେ ।

୧୯୭୧ ମସିହାରେ ତାଙ୍କରି ମୁଖ୍ୟମନ୍ତ୍ରିତ୍ୱ କାଳରେ ଭୟଙ୍କର ବାତ୍ୟା ଓ ବନ୍ୟା ଫଳରେ କଟକ, ବାଲେଶ୍ୱର, ମୟୁରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ ଓ ପୁରୀ ଜିଲ୍ଲାରେ ପ୍ରଭୂତ କ୍ଷୟକ୍ଷତି ହୋଇଥିଲା । ହଜାର ହଜାର ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ । କାଂଶବାଂଶ ନଦୀରେ ମଧ୍ୟ ପ୍ରବଳ ବନ୍ୟା ଆସି ଅନେକ ଗାଆଁରେ ବିଭୀଷିକା ସୃଷ୍ଟି କରିଥିଲା । ପାଣି ଘେରରେ ଥିବା ଗାଆଁମାନଙ୍କୁ କେଉଁଠି ଡଙ୍ଗାରେ ବା କେଉଁଠି ଚାଲି ଚାଲି ଯାଇ ଲୋକଙ୍କର ଦୁର୍ଦ୍ଦଶା ଦେଖିଥିଲି । ସେମାନଙ୍କ ପାଇଁ ରନ୍ଧାଖାଦ୍ୟ ପୁଡ଼ିଆ, ପାଣି ଓ ଔଷଧର ବ୍ୟବସ୍ଥା କରାଯାଇଥିଲା ।

ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ଆକାଶମାର୍ଗରୁ ବନ୍ୟାଞ୍ଚଳ ପରିଦର୍ଶନ କରିଥିଲେ । ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶ ମଧ୍ୟ ତାଙ୍କ ସହ ଥିଲେ । ଚାନ୍ଦବାଲିଠାରେ ପ୍ରଧାନମନ୍ତ୍ରୀଙ୍କର ଏକ ସଭା ହୋଇଥିଲା । ଉକ୍ତ ସଭାରେ ମୁଁ ମଧ୍ୟ ଉପସ୍ଥିତ ଥିଲି ।

୧୯୭୧ ମସିହାରେ ୫ଟି ବିଧାନସଭା ଓ ଗୋଟିଏ ଲୋକସଭା ଆସନରେ ଉପନିର୍ବାଚନ ହୋଇଥିଲା । ବିଶ୍ୱନାଥବାବୁ ବିଧାନସଭାର ସଭ୍ୟ ନ ଥାଇ ମୁଖ୍ୟମନ୍ତ୍ରୀ ହୋଇଥିଲେ । ଆଇନ୍ ଅନୁସାରେ ଛ'ମାସ ଭିତରେ ତାଙ୍କୁ ବିଧାନସଭାକୁ ନିର୍ବାଚିତ ହୋଇଯିବାର କଥା । ଶ୍ୟାମସୁନ୍ଦର ମହାପାତ୍ର ରାଉରକେଲାରୁ ବିଧାନସଭାକୁ ଓ ବାଲେଶ୍ୱରରୁ ଲୋକସଭାକୁ କଂଗ୍ରେସ ଟିକେଟ୍‌ରେ ନିର୍ବାଚିତ ହୋଇ ରାଉରକେଲା

ଆସନରୁ ଇସ୍ତଫା ଦେଇଥିଲେ । ବିଶ୍ୱନାଥବାବୁ ଏହିଠାରୁ ସ୍ୱାଧୀନ ପ୍ରାର୍ଥୀ ହେଲେ । କଂଗ୍ରେସ ତରଫରୁ ତାଙ୍କ ବିରୁଦ୍ଧରେ ପ୍ରାର୍ଥୀ ହେଲେ ବିନାୟକ ଆଚାର୍ଯ୍ୟ । ମୁଁ ରାଉରକେଲା ଯାଇ ବିଶ୍ୱନାଥବାବୁଙ୍କ ପାଇଁ ପ୍ରଚାର କରିଥିଲି । ବିଶ୍ୱନାଥବାବୁ ଜିତିଥିଲେ ।

ଏହି ଉପନିର୍ବାଚନରେ କୌଣସି ସ୍ଥାନରୁ କଂଗ୍ରେସ ଜିତିପାରି ନଥିଲା । ବିଜୁବାବୁ ରାଜନଗରରୁ ବିଧାନସଭାକୁ ଜିତିଥିଲେ । ମୟୂରଭଞ୍ଜ ଲୋକସଭା ଆସନରୁ ଚନ୍ଦ୍ରମୋହନ ସିଂହ, ବିଧାନସଭାକୁ ଭଦ୍ରକରୁ ବଳରାମ ସାହୁ, ନୟାଗଡ଼ରୁ ଅଚ୍ୟୁତାନନ୍ଦ ମହାନ୍ତି, ଲୋକସଭାରୁ ରଘୁନାଥ ପ୍ରହରାଜ ଜିତିଥିଲେ । ଭଦ୍ରକରୁ ଜିତିଥିବା ବଳରାମ ସାହୁ ଭଦ୍ରକ କଲେଜର ପୂର୍ବତନ ଅଧ୍ୟକ୍ଷ ଥିଲେ । ତାଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା 'ଗଳ୍ପଘର' ନାମକ ଏକ ଗଳ୍ପ ପତ୍ରିକା । ଉକ୍ତ ପତ୍ରିକାରେ ମୋ ଲିଖିତ ଗଳ୍ପ ମଧ୍ୟ ପ୍ରକାଶ ପାଇଥିଲା । ବଳରାମ ବାବୁଙ୍କ ବିରୁଦ୍ଧରେ ଶାସକ କଂଗ୍ରେସ ଦଳର ପ୍ରଫୁଲ୍ଲ କୁମାର ସାମଲ । ଭଦ୍ରକ ନିର୍ବାଚନ ମଣ୍ଡଳୀର ପ୍ରାୟ ଏକ ତୃତୀୟାଂଶ ଭୋଟର୍ ଥିଲେ ମୁସଲମାନ ସଂପ୍ରଦାୟର । ସେମାନଙ୍କୁ କରଗତ କରିବା ପାଇଁ ପୂର୍ବତନ ରାଷ୍ଟ୍ରପତି ଶାସକ କଂଗ୍ରେସ ଦଳର ନେତା ଫକୀରୁଦ୍ଦିନ ଅଲ୍ଲୀ ଅହମ୍ମଦ ନିର୍ବାଚନ ପ୍ରଚାରରେ ଭଦ୍ରକ ଆସିଥିଲେ । ପ୍ରଫୁଲ୍ଲ କୁମାର ସାମଲ ଭଦ୍ରକ କଲେଜରେ ବଳରାମବାବୁଙ୍କ ଛାତ୍ର ଥିଲେ । ତେଣୁ ନିର୍ବାଚନ ପ୍ରଚାରରେ ବ୍ୟକ୍ତିଗତ ଆକ୍ଷେପ ନଥିଲା । ମାତ୍ର ବଳରାମବାବୁ ଓ ଦଳର ସୌଭାଗ୍ୟ ଯେ ଏକହଜାର ଆଠଶହ ଭୋଟରେ ଜିତିଯାଇଥିଲେ ।



# ଅର୍ଥ ଓ ସଂସ୍କୃତି ଉପମନ୍ତ୍ରୀ

କିଛିଦିନ ପରେ ହଠାତ୍ ଚିଠି ପାଇଲି ଆସନ୍ତାକାଲି ରାଜଭବନକୁ ଯାଇ ଉପମନ୍ତ୍ରୀ ପାଇଁ ମୋତେ ଶପଥ ନେବାକୁ ହେବ । ଉପମନ୍ତ୍ରୀ... କଥାଟା କେମିତି ମୋତେ ଖଟ୍‌କା ଲାଗିଲା । ଚିଠିଟାକୁ ନେଇ ଚାଲିଲି ନବୀନ ନିବାସ । ଖାନ୍‌ସମା ଖଇରାଡି ହାତରେ ବିଜୁବାବୁଙ୍କୁ ଖବର ଦେଲି । ସେ ଉପରତାଲାରୁ ତଳକୁ ଆସି ମୋତେ ପଚାରିଲେ-

"ଯଦୁ; କୁଆଡ଼େ ?"

ରାଜଭବନରୁ ଆସିଥିବା ଚିଠିଟା ମୁଁ ତାଙ୍କ ହାତକୁ ବଢ଼ାଇ ଦେଇ କହିଲି- "ମୁଁ ଡେପୁଟୀ ମିନିଷ୍ଟର ହେବି ନାହିଁ ।"

ସେ ମୋ ମୁହଁକୁ ଚାହିଁ କହିଲେ- "କ'ଣ କେବିନେଟ୍ ମନ୍ତ୍ରୀ ହବୁ ? ତମ ବାଲେଶ୍ୱର ଜିଲ୍ଲାରୁ ନୀଳମଣି କେବିନେଟ୍ ମନ୍ତ୍ରୀ ଅଛି । କେଡ଼େ ଜିଲ୍ଲାଟେ ତମର ଯେ ସେଠୁ ଦି'ଜଣ କେବିନେଟ୍ ମନ୍ତ୍ରୀ କରିବି ? ଯଦି କେବିନେଟ୍ ମନ୍ତ୍ରୀ ହବୁ ନୀଳମଣିକି କହ, ସେ ରିଜାଇନ୍ କରିଦେଉ ।"

ତାହା ସମ୍ଭବ ନଥିଲା ।

ସେ ପୁଣି କହିଲେ- "ତୁ ଅର୍ଥ ବିଭାଗର ଡେପୁଟୀ ମିନିଷ୍ଟର ହେବୁ । ଅର୍ଥବିଭାଗ ତ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶ ହାତରେ ଅଛି । ବୁଢା କ'ଣ ବୁଝୁଛି ? ଅର୍ଥ ବିଭାଗ କଥା ତୁ ପୂରା ବୁଝିବୁ । ତୁ ପରା ଜଣେ ଲେଖକ, ସଂସ୍କୃତି ବିଭାଗ ଦାୟିତ୍ୱ ବି ତୋତେ ଦିଆଯିବ ।"

ମୁଁ ତାଙ୍କ ପାଖରୁ ଚାଲିଆସିଲି । ମନ ବୁଝୁ ନଥାଏ । ସେଠୁ ସିଧା ସଚିବାଳୟ ଗଲି । ଆମ ଗାଆଁଠୁ କିଛି ଦୂରରେ ଥିବା ମଙ୍ଗଳପୁର ଗାଆଁର ଯଦୁନାଥ ଦାସ ସେତେବେଳେ ରାଜସ୍ୱ ବିଭାଗର ଅର୍ଥ ପରାମର୍ଶଦାତା (ଏଫ୍.ଏ.) ଥାଆନ୍ତି । ସେ

ନୀଳମଣି ରାଉତରାୟଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ମୁଁ ତାଙ୍କୁ ବଡ଼ଭାଇ ଭଳି ସମ୍ମାନ ଦିଏ । ଗତ ନିର୍ବାଚନ ଦିନ ସେ ଓ ତାଙ୍କ ସ୍ତ୍ରୀ ନିଜ ଫିଏଟ୍ ଗାଡ଼ିରେ ଯାଇ ମଙ୍ଗଳପୁର ବୁଥ୍‌ରେ ମୋତେ ଭୋଟ୍ ଦେଇଥିଲେ । ମୁଁ ତାଙ୍କରି ପାଖରେ ପହଂଚି ଉପମନ୍ତ୍ରୀ ହେବାର ଚିଠିଟା ତାଙ୍କୁ ଦେଲି । ସେ ଦେଖି ତାକୁ ପଢ଼ିବା ପରେ ମୁଁ କହିଲି- "ଉପମନ୍ତ୍ରୀ ମୁଁ ହେବି ନାହିଁ । ରାମକୃଷ୍ଣ ପଟ୍ଟନାୟକ, ଶରତ କୁମାର କର ଯଦି କେବିନେଟ୍ ମନ୍ତ୍ରୀ ହେଲେ, ମୁଁ କାହିଁକି ଉପମନ୍ତ୍ରୀ ହେବି ? ତେଣୁ ଭାବିଛି ଆଜି ପୁରୀ ପଳେଇଯିବି, କାଲି ଶପଥ ଗ୍ରହଣ ପରେ ଫେରିବି ।"

ସେ ସିଧାସଳଖ ମୋ ମୁହଁକୁ ଚାହିଁ ରହିଲେ । ତା'ପରେ କହିଲେ- "ପ୍ରଥମ ଥର ନିର୍ବାଚନ ଜିତିଛ । ଯାହା ମିଳୁଛି, ତାକୁ ମନା କରିବା ଉଚିତ ନୁହେଁ । ରାଜନୀତିରେ ଥରେ ଗୋଟେ ସୁଯୋଗ ହାତଛଡ଼ା ହୋଇଗଲେ ଆଉ ଆସି ନପାରେ ।"

ମୁଁ କିଛି ନ କହି ଚୁପ୍ ହୋଇ ବସିଥାଏ, ସେ କହିଚାଲିଥାନ୍ତି । ଶେଷରେ ସେ କହିଲେ- "ଆଜି ପୁରୀ ନ ଯାଇ କାଲି ଶପଥ ନେବା ପରେ ପୁରୀ ଯାଇ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କଲେ ଭଲ ହେବ ।"

ତାଙ୍କଠୁ ଫେରିଲି । ବସାରେ ଟୁଆଁନନା ଥାଆନ୍ତି । ତାଙ୍କର ବି ଇଚ୍ଛା ମୁଁ ଉପମନ୍ତ୍ରୀ ହୁଏ ।

ଭାବନାର ଢେଉ ଭାରି ଅସ୍ଥିର । ଯେନତେନ ପ୍ରକାରେଣ ରାତିଟା କଟେଇ ପରଦିନ ସକାଳ ନ'ଟା ସୁଦ୍ଧା ପ୍ରସ୍ତୁତ ହୋଇଗଲି ରାଜଭବନକୁ ଯିବାକୁ ।

ଉପମନ୍ତ୍ରୀ ଭାବରେ ଆମେ ୧୨ ଜଣ ଶପଥ ନେଲୁ । ମୋ ସହିତ ଯେଉଁ ୧୧ ଜଣ ଶପଥ ନେଲେ ସେମାନେ ହେଲେ- ଘାସିରାମ ମାଝୀ, ଭାନୁଗଙ୍ଗ ତ୍ରିଭୁବନ ଦେବ, ଡମ୍ବରୁ ମାଝୀ, ସହରାଇ ଓରାମ୍, ବୀରଭଦ୍ର ସିଂହ, ଦେବରାଜ ସାହୁ, ଶରତ କୁମାର ଦେବ, ଗୋବିନ୍ଦ ଚନ୍ଦ୍ର ସେଠ୍, ପ୍ରଫୁଲ୍ଲ କୁମାର ଦାଶ, ରବି ସିଂହ ମାଝୀ ଓ ରାମଚନ୍ଦ୍ର ପ୍ରହରାଜ ।

ସେହିଦିନ ସଚିବାଳୟରେ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶଙ୍କୁ ଯାଇ ଦେଖାକଲି । ସେ ସଂଗେ ସଂଗେ ସଚିବାଳୟର କେୟାରଟେକରଙ୍କୁ ଡାକି କହିଦେଲେ ସେ ବସୁଥିବା ତାଲାରେ ତାଙ୍କରି ଅଫିସ୍ ପାଖରେ ମୋ' ପାଇଁ ଅଫିସ୍ ଘର ବ୍ୟବସ୍ଥା କରିଦେବାକୁ । ତାଙ୍କ ଅଫିସ୍ ପାଖରେ ମୋ ଅଫିସ୍ ହେଲା । ଅର୍ଥ ଓ ସଂସ୍କୃତି ବିଭାଗର ଦାୟିତ୍ୱରେ ମୁଁ ରହିଲି ।

ସଚିବାଳୟରୁ ଫେରିବା ପରେ ନବୀନ ନିବାସ ଯାଇ ବିଜୁବାବୁଙ୍କୁ ଦେଖାକଲି ।

ସେ ମୋତେ ପଚାରିଲେ- ତୋ'ର ଗାଡ଼ି ଅଛି ?

ମୁଁ କହିଲି- ନା ।

ସେ ସଂଗେ ସଂଗେ ଉପରକୁ ଯାଇ ବିଡ଼ାଏ ଟଙ୍କା ଆଣି ମୋତେ ଦେଇ କହିଲେ- "ଦଶହଜାର ଟଙ୍କା ନେ । ଅବଶିଷ୍ଟ ଟଙ୍କା ସରକାରରୁ ଋଣ ନେଇ ଗାଡ଼ି କିଣିବୁ ।"

ତା'ପରେ ସରକାରରୁ ଋଣ ନେଇ ଗୋଟିଏ ଏମ୍ବାସେଡର ଗାଡ଼ି କିଣିଲି ।

ଅର୍ଥ ବିଭାଗର ସଚିବ ଥିଲେ ବାଇଜଲ୍ ସାହେବ ଓ ଅତିରିକ୍ତ ଶାସନ ସଚିବ ଥିଲେ ଆର୍.ଏନ୍. ଦାସ । ବଦଳି ଋତୁ ବେଳେ ଆର୍.ଏନ୍. ଦାସ ଆସି ମୋତେ କହିଲେ- "ସାର୍, ଅର୍ଥ ବିଭାଗର ବଦଳିର ମାନେ inviting objections । ଯେଉଁମାନଙ୍କୁ ବଦଳି କରାଯିବ, ସେମାନଙ୍କ ଭିତରୁ ଅନେକ କାହାରି ନା କାହାରି ମାଧ୍ୟମରେ ବଦଳି କରିବା ପାଇଁ ଚାପ ପକାଇବେ ।"

ମୁଁ କହିଲି- "ତା'ହେଲେ ଏ ବର୍ଷ କାହାରିକୁ ବଦଳି କରିବା ନାହିଁ ?"

ସେ କହିଲେ- "ନାଇଁ ସାର୍; ମୁଁ ସେକଥା କହୁ ନାହିଁ । ଯେଉଁମାନେ ତିନି ଚାରି ବର୍ଷ ରହିଲେଣି, ତାଙ୍କୁ ତ ବଦଳି କରିବାକୁ ପଡ଼ିବ ।"

ମୁଁ କହିଲି- "ତାହାହେଲେ... ?"

ସେ କହିଲେ- "ସାର୍; ଗୋଟାଏ କାମ କରିବା । ମୁଁ ୩/୪ ଦିନ ଭିତରେ ବଦଳି ଫାଇଲ୍ ପ୍ରସ୍ତୁତ କରି ପଠାଇ ଦେଉଛି । ଆପଣ ଦସ୍ତଖତ କରି ମୁଖ୍ୟମନ୍ତ୍ରୀଙ୍କୁ ଦେଇଦେବେ । ତା'ପରଦିନ ଆପଣ ଆଉ ମୁଁ ଦିଲ୍ଲୀ ଚାଲିଯିବା । ୩/୪ ଦିନ ରହି ଫେରିବା । ଯେଉଁ ମନ୍ତ୍ରୀ, ବିଧାୟକ ବା ଦଳୀୟ ନେତା କାହାରି ବଦଳି ବନ୍ଦ କରିବା ପାଇଁ ଚାହୁଁଥିବେ, ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ଯାଇ ଏକଥା କହି ନପାରନ୍ତି । ଆମେ ଦିଲ୍ଲୀରୁ ଫେରିବା ବେଳକୁ ମୁଖ୍ୟମନ୍ତ୍ରୀ ଫାଇଲ୍ ଦସ୍ତଖତ କରିଦେଇଥିବେ । ଆଉ ଅଦଳବଦଳ କରିବାର ପ୍ରଶ୍ନ ଉଠିବ ନାହିଁ ।"

ସେଇୟା କଲୁ । ଫାଇଲ୍ ଆସିଲା । ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫାଇଲ୍ ପଠାଇ ଦେଲି । ପରଦିନ ରବିବାବୁ ଓ ମୁଁ ଦିଲ୍ଲୀ ଗଲୁ । ଦିଲ୍ଲୀରେ ୩/୪ ଦିନ ରହି ଫେରିଲୁ । ରବିବାବୁ ଆସି ମୋତେ କହିଲେ- "ମୁଖ୍ୟମନ୍ତ୍ରୀଙ୍କ ଠାରୁ ଫାଇଲ୍ ଫେରିନାହିଁ ।"

ରବିବାବୁଙ୍କୁ ମୋ ଅଫିସ୍ ଘରେ ବସେଇଦେଇ, ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲି । ମୁଖ୍ୟମନ୍ତ୍ରୀ ସୋଫା ଉପରେ ଶୋଇ ଖବରକାଗଜ ପଢୁଥାନ୍ତି । ମୋତେ ଦେଖି ପଚାରିଲେ- "କୁଆଡ଼େ ଆସିଲ ବାପା ?"

ମୁଁ କହିଲି- "ବଦଳି ଫାଇଲ୍‌ଟା ଆପଣଙ୍କ ପାଖକୁ ପଠେଇଥିଲି । କ'ଣ ହେଲା ସେ ଫାଇଲ୍ ?"

ସେ କହିଲେ- "ଫାଇଲ୍ ହେଇ ମୋ ଟେବୁଲ୍ ଉପରେ ଅଛି । ନେଇଆସ ।"

ମୁଁ ଫାଇଲ୍‌ଟା ଆଣି ଦେଖିଲି, ମୁଖ୍ୟମନ୍ତ୍ରୀ ଦସ୍ତଖତ କରିନାହାନ୍ତି ।

କହିଲି- "ଆପଣ ଦସ୍ତଖତ କରିନାହାନ୍ତି ।"

ସେ ଉଠିପଡ଼ି ଫାଇଲ୍‌ଟାକୁ ମୋ ହାତରୁ ନେଇ ଦେଖିଲେ ଓ କହିଲେ- "ଟିକିଏ ଅସୁବିଧା ଅଛି ବାପା !"

ମୁଁ ପଚାରିଲି- "କ'ଣ ଅସୁବିଧା ?"

କହିଲେ- "ରାଉରକେଲାରୁ ଯେଉଁ ସି.ଟି.ଓ. (ବାଣିଜ୍ୟକର ଅଧିକାରୀ)ଙ୍କୁ ବଦଳି କରିଛ, ଆର୍.ଏନ୍. ସିଂହଦେଓ କହୁଛନ୍ତି ତାଙ୍କୁ ବଦଳି ନ କରିବାକୁ । ହଁ, କଟକରୁ ଯାହାଙ୍କୁ ବଦଳି କରିଛ, ରାଧାନାଥ ରଥ କହୁଛନ୍ତି ତାଙ୍କୁ ବଦଳି ନ କରିବାକୁ । ରାଧାନାଥ ରଥ ସ୍ୱାଧୀନ ବିଧାୟକ ଥିଲେ ।

ମୁଁ ତାଙ୍କ ପାଖରୁ ଫାଇଲ୍‌ଟା ଆଣି ଦେଖିଲି । ତା'ପରେ ତାଙ୍କୁ କହିଲି- "ଦେଖନ୍ତୁ; ଗୋଟିଏ ସ୍ଥାନରେ ତିନିବର୍ଷ ରହିଥିବା ଅଫିସରମାନଙ୍କୁ ବଦଳି କରାଯାଇଛି । ଯେଉଁ ଦୁଇଜଣଙ୍କ କଥା ଆପଣ କହୁଛନ୍ତି, ସେମାନେ ଚାରିବର୍ଷରୁ ଅଧିକ ସମୟ ସେଠାରେ ରହିଛନ୍ତି । ଚାରିବର୍ଷରୁ ଅଧିକ ସମୟ ରହିଥିବା ଅଫିସରଙ୍କର ଯଦି ବଦଳି ନ ହେବ, ତିନିବର୍ଷବାଲାଙ୍କର କାହିଁକି ହେବ ? ଯଦି ଏ ଦୁଇଜଣଙ୍କର ବଦଳି ନ କରିବା, ତା'ହେଲେ ଏବର୍ଷ କାହାରି ବଦଳି କରିବାନି । ଆପଣ ଫାଇଲ୍‌ରେ ଲେଖିଦିଅନ୍ତୁ ଏବର୍ଷ କାହାରି ବଦଳି ହେବ ନାହିଁ ।"

ଫାଇଲ୍‌ଟା ତାଙ୍କ ଆଗରେ ରଖିଦେଲି । ସେ ଫାଇଲ୍‌କୁ କିଛିସମୟ ଚାହିଁ ଆମେ ପଠାଇଥିବା ପ୍ରସ୍ତାବରେ ରାଜିହେଇ ଲେଖିଦେଲେ- "As proposed by the Hon'ble Dy. Minister" ତା'ପରେ ତାଙ୍କର ଦସ୍ତଖତ ।

ମୁଁ ଫାଇଲ୍‌ଟାକୁ ହାତେ ହାତେ ନେଇଆସି ମୋ' ରୁମ୍‌ରେ ବସିଥିବା ରବିବାବୁଙ୍କୁ ଦେଇଦେଲି । ସେ ମହା ଆନନ୍ଦରେ ଫାଇଲ୍‌ଟାକୁ ନେଇ ଚାଲିଗଲେ ଓ ସେହିଦିନ ହିଁ ବଦଳି ବିଜ୍ଞପ୍ତି ଜାରି କରିଦେଲେ ।

ଆଉ ଦିନକର ଘଟଣା । ବେଳ ପ୍ରାୟ ଏଗାରଟା ହେବ । ହଠାତ୍ ସ୍ୱାସ୍ଥ୍ୟମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ଆସି ମୋ ଅଫିସ୍‌ରେ ପହଞ୍ଚିଗଲେ । ତାଙ୍କୁ ସମ୍ମାନ ଜଣାଇ ସୋଫା ଉପରେ ବସାଇଲି ଓ ତାଙ୍କ ପାଖରେ ବସି ପଚାରିଲି- "କୁଆଡ଼େ ଆସିଲେ ?"

ସେ ଖୁବ୍ ବିଷଣ୍ଣ ଦେଖାଯାଉଥାନ୍ତି । କିଛିସମୟ ପରେ ସେ କହିଲେ- "ଯଦୁବାବୁ ! ଏ ବୁଢ଼ା ପାଖରେ କାମ କରିହେବ ନାହିଁ ।"

ମୁଁ ବେଶ୍ ବୁଝିପାରିଲି ତାଙ୍କ କଥାର ବୁଢ଼ା ହେଉଛନ୍ତି ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶ ।

ପଚାରିଲି- "କାହିଁକି, କ'ଣ ହେଲା କି ?"

କହିଲେ- "ମିଛଟାରେ ମୋ' ନାଁରେ ଦୁର୍ନୀତି ଅଭିଯୋଗ ଆଣୁଛି । ମୋତେ ମନ୍ତ୍ରିମଣ୍ଡଳରୁ ବିଦା କରିବାର ଚକ୍ରାନ୍ତ କରୁଛି ।

ବିଶ୍ୱନାଥବାବୁ ଓ ରାମକୃଷ୍ଣବାବୁ ଉଭୟ ଗଞ୍ଜାମ ଜିଲ୍ଲାର ଲୋକ [illegible]ଲି ଜିଲ୍ଲାର ନୁହଁନ୍ତି, ଉଭୟଙ୍କର ଘର ମଧ୍ୟ [illegible]ପାଖ ଅଞ୍ଚଳରେ [illegible] ଉଭୟଙ୍କ ମଧ୍ୟରେ ସଂପର୍କ ଭଲ ନଥିବାର ମୁଁ ଜାଣିଚି ।

ସେ ପୁଣି କହିଲେ- "ବନ୍ୟା ଓ [illegible] ପାଇଁ ତାର୍ପୋଲିନ ପ୍ରଭୃତି କିଣିବାର ଜରୁରୀ ଆବଶ୍ୟକତା ଥିବାରୁ ମୁଁ ସେସବୁକୁ ତୁରନ୍ତ କିଣେଇଥିବା ଯୋଗୁଁ ସେସବୁ କିଣାରେ ମୁଁ ଦୁର୍ନୀତି କରିଛି ବୋଲି କୁହାଯାଉଛି । ତୁମ ଅର୍ଥବିଭାଗର ଶାସନ ସଚିବ ଜେ.ଏସ୍. ବାଇଜଲ୍ ଏହି କିଣାରେ ଅନେକ ଅନିୟମିତ ହୋଇଛି ବୋଲି ଲେଖି ବୁଢ଼ା ପାଖକୁ ଫାଇଲ୍ ପଠାଇଛନ୍ତି । ଫାଇଲ୍ ତ ତୁମ ମାଧ୍ୟମରେ ଯିବ । ଭାଇ; ଟିକିଏ ଦେଖିବ ।

ମୁଁ 'ହଁ' କହିଲି । ସେ ଚାଲିଗଲେ ।

ଫାଇଲ୍ ଆସିବା ପରେ ମୁଁ ଦେଖିଲି । ଫାଇଲ୍‌ରେ ସ୍ୱାସ୍ଥ୍ୟବିଭାଗ ଓ ଅର୍ଥବିଭାଗର ଟିପ୍ପଣୀମାନ ଅନୁଧ୍ୟାନ କଲି । ଯାହାସବୁ ଅନିୟମର ସୂଚନା ଦିଆଯାଇଛି ତାହା ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ନିଶ୍ଚୟ ଯାଉଛି ।

ବିଧାନସଭାରେ ମଧ୍ୟ ବିରୋଧୀ କଂଗ୍ରେସ ଦଳର ସଦସ୍ୟମାନେ ରାମକୃଷ୍ଣବାବୁଙ୍କ ବିରୁଦ୍ଧରେ ଏହିସବୁ କିଣାକିଣି ବ୍ୟାପାରରେ ଦୁର୍ନୀତି ଅଭିଯୋଗ ଆଣିଥିଲେ ।

ଏହି କିଣା ବ୍ୟାପାରରେ ଦୁର୍ନୀତି ନିବାରଣ ବିଭାଗ ମଧ୍ୟ ତାଙ୍କ ରିପୋର୍ଟରେ ଯାହା ଲେଖିଥିଲେ ତାହାର କିଛି ଅଂଶ ଏଠାରେ ଦେଲି ।

"In view of the above, the responsibility for unreasonable tender call notice, acceptance of inferior articles at higher rates and payment of money for the same, lies entirely on the then Hon'ble Health Minister."

ମୁଁ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇଲି । କହିଲି- "ରାମକୃଷ୍ଣବାବୁଙ୍କୁ ଯଦି ଦୁର୍ନୀତିଗ୍ରସ୍ତ କହି ଆପଣ ବିଦା କରିଦିଅନ୍ତି, ତେବେ ମନ୍ତ୍ରିମଣ୍ଡଳ ଉପରେ ଆଞ୍ଚ ଆସିବ । ବାହାରେ ଯାହା ପ୍ରଚାର ହେଉଛି ତାହା ସତ୍ୟ ବୋଲି ପ୍ରମାଣିତ ହୋଇଯିବ । ସମସ୍ତେ କହିବେ ବିଶ୍ୱନାଥବାବୁଙ୍କ ମନ୍ତ୍ରିମଣ୍ଡଳ ଏକ ଦୁର୍ନୀତିଗ୍ରସ୍ତ ମନ୍ତ୍ରିମଣ୍ଡଳ । ସେ ବିଜୁବାବୁଙ୍କର ଘନିଷ୍ଠ ବ୍ୟକ୍ତି । ବିଜୁବାବୁ ଆପଣଙ୍କୁ ଆଣି ମୁଖ୍ୟମନ୍ତ୍ରୀ କରିଛନ୍ତି..."

ମୁଖ୍ୟମନ୍ତ୍ରୀ ମୋ କଥା ଶୁଣି ମୁହଁ ତଳକୁ ପୋତି କିଛି ସମୟ ବସିରହିଲେ । ତା'ପରେ ମୋ' ମୁହଁକୁ ଚାହିଁ କହିଲେ- "ତମେ ଜାଣିଚ ବାପା; ସେ ମୋ ବିରୁଦ୍ଧରେ କ'ଣ ପ୍ରଚାର କରୁଛି... ?"

ମୁଁ କହିଲି- "ସେ ଆପଣଙ୍କ ବିରୁଦ୍ଧରେ ଅପପ୍ରଚାର ନ କରିବା ପାଇଁ ନୀଳମଣିବାବୁ ମଧ୍ୟ ତାଙ୍କୁ ବୁଝେଇଛନ୍ତି । ମୁଁ ବି ତାଙ୍କୁ ବୁଝେଇଦେବି ।"

ମୁଖ୍ୟମନ୍ତ୍ରୀ ନୀରବ ରହିଲେ ।

ତା'ପରେ ସେ ଫାଇଲ୍‌ରେ ଡୋର ବନ୍ଧାହୋଇ ରହିଗଲା । ରାମକୃଷ୍ଣବାବୁ ବରତିଗଲେ ।



# କୁହୁଳାରୁ ନିଆଁ

ବିଜୁବାବୁ ରାଜନଗରରୁ ଉପନିର୍ବାଚନରେ ଜିତିବା ପରେ ରାମକୃଷ୍ଣବାବୁ ତାଙ୍କୁ ବିଶ୍ୱନାଥବାବୁଙ୍କ ବିରୁଦ୍ଧରେ କହୁଥାନ୍ତି । ବିଜୁବାବୁଙ୍କ ମନରେ ମଧ୍ୟ ମୁଖ୍ୟମନ୍ତ୍ରୀ ହେବାର ଇଚ୍ଛାଟା ଜାଗ୍ରତ ହେଉଥାଏ ।

ଏଣେ ଶାସକ କଂଗ୍ରେସ ଦଳର ନେତା ହରେକୃଷ୍ଣ ମହତାବ ବିଶ୍ୱନାଥବାବୁଙ୍କର ଘୋର ବିରୋଧୀ ଥିଲେ । ତାଙ୍କ ଦୈନିକ ଖବରକାଗଜ 'ପ୍ରଜାତନ୍ତ୍ର'ରେ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ବିଶେଷ କରି ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ନାନା ସମ୍ବାଦ ପ୍ରକାଶ ପାଉଥିଲା । ୮୪ ବର୍ଷର ବୃଦ୍ଧ ବିଶ୍ୱନାଥ ଶାସନ କରିବାକୁ ଅକ୍ଷମ । ଏପରିକି ତାଙ୍କୁ ହତ୍ୟା କରାଯିବ ବୋଲି ତାଙ୍କ ପାଖକୁ ବେନାମୀ ଚିଠି ସବୁ ଆସୁଥିଲା । ସେ ଚିଠି ମୁଁ ଦେଖୁଥିଲି ଓ ଗୃହମନ୍ତ୍ରୀ ନୀଳମଣିବାବୁଙ୍କୁ ସେ ଚିଠି ସବୁ ଅନୁସନ୍ଧାନ ପାଇଁ ଦେଇଦିଆଯାଉଥିଲା । ନୀଳମଣିବାବୁ ଗୋଇନ୍ଦା ବିଭାଗ ଦ୍ୱାରା ତଦନ୍ତ କରାଇଥିଲେ । ଚିଠିଗୁଡ଼ିକର ଲେଖକ କିଏ, ତାହା ଜଣାପଡ଼ିନଥିଲେ ମଧ୍ୟ ଏହା ମହତାବଙ୍କ ଇଙ୍ଗିତରେ ତାଙ୍କରି ଲୋକଙ୍କ ଦ୍ୱାରା ଲେଖାଯାଇଥିବ ବୋଲି ଗୋଇନ୍ଦା ବିଭାଗ ମତ ଦେଇଥିଲେ ।

ଏହି ୧୯୭୨ ମସିହା ଜାନୁଆରୀ ମାସରେ କଂଗ୍ରେସ ଓ ଅନ୍ୟ ବିରୋଧୀଦଳମାନଙ୍କର ଏକ ଶୋଭାଯାତ୍ରା ବିଧାନସଭାକୁ ଆସୁଥିବାବେଳେ ପୋଲିସ୍‌ର ଲାଠି ପ୍ରହାରରେ ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବନମାଳୀ ପଟ୍ଟନାୟକ ପ୍ରମୁଖ ଆହତ ହୋଇଥିଲେ । ସେତେବେଳକୁ କଂଗ୍ରେସ ବିଧାୟକ ଦଳର ନେତା ପଦରୁ ମହତାବବାବୁ ଇସ୍ତଫା ଦେଇସାରିଥିଲେ ଓ ନେତା ଥିଲେ ବିନାୟକ ଆଚାର୍ଯ୍ୟ । ସେମାନେ ସବୁ ୬ ନମ୍ବର ୟୁନିଟ୍‌ର ସରକାରୀ ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲେ । ମୁଖ୍ୟମନ୍ତ୍ରୀ ବିଶ୍ୱନାଥବାବୁ ଆହତ ନେତାମାନଙ୍କୁ ଦେଖିବାକୁ

ଡାକ୍ତରଖାନାକୁ ଯେତେବେଳେ ଯାଇଥିଲେ, ସେଠାରେ ଥିବା କଂଗ୍ରେସ ଲୋକେ ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଦୁର୍ବ୍ୟବହାର କରିଥିଲେ । ବିଧାନସଭା ପରିସରରେ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ କରିଥିଲେ ।

ମୁଁ ମଧ୍ୟ ଆହତ ନେତାମାନଙ୍କୁ ଦେଖିବାକୁ ଡାକ୍ତରଖାନା ଯାଇଥିଲି । ବ୍ରଜମୋହନ ମହାନ୍ତିଙ୍କ ରୋଗଶଯ୍ୟା ପାଖରେ ବସି ତାଙ୍କ ସହିତ କିଛି ସମୟ କଥାବାର୍ତ୍ତା କରିଥିଲି । ଏହିସବୁ ଘଟଣାର ବିଚାର ବିଭାଗୀୟ ତଦନ୍ତ କରାଯିବ ବୋଲି ଗୃହମନ୍ତ୍ରୀ ନୀଳମଣି ରାଉତରାୟ ବିଧାନସଭାରେ ଘୋଷଣା କରିଥିଲେ ।

ରାମକୃଷ୍ଣବାବୁ ବିଶ୍ୱନାଥବାବୁଙ୍କ ବିରୁଦ୍ଧରେ ବିଜୁବାବୁଙ୍କୁ ସବୁବେଳେ କହୁଥିଲେ ଏବଂ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ ଅବସ୍ଥା ସୁଧୁରିଯିବ ବୋଲି ତାଙ୍କ ମନରେ ଧାରଣା ଦେଉଥିଲେ । ବିଜୁବାବୁ ଭାରି ମନୁଆ ଲୋକ । ମନକୁ ଯାହା ଆସିଥାଏ, ତାହା କରିବାକୁ ସେ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରନ୍ତି । ମୁଖ୍ୟମନ୍ତ୍ରୀ ହେବାର ଯୋଗାଡ଼ରେ ସେ ଲାଗିଗଲେ । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ନୀଳମଣିବାବୁ ବିଜୁବାବୁଙ୍କର ଏକାନ୍ତ ଅନ୍ତରଙ୍ଗ ଥିଲେ । କିନ୍ତୁ ଏହି ଘଟଣାକୁ ନେଇ ସେ ଦୁହିଁଙ୍କ ଭିତରେ ଅପଡ଼ ହୋଇଯାଇଥିଲା ।

ନିର୍ବାଚନ କମିସନ୍ ଶାସକ କଂଗ୍ରେସକୁ କଂଗ୍ରେସ ଦଳର ମାନ୍ୟତା ଦେଇଥିଲେ । ପ୍ରଜା ସୋସାଲିଷ୍ଟ ଦଳର ମଧ୍ୟ କଂଗ୍ରେସ ସହିତ ମିଶ୍ରଣ ହୋଇଥିଲା । ସେ ଦଳର ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ, ରବୀନ୍ଦ୍ରମୋହନ ଦାସ, ନିଶାମଣି ଖୁଣ୍ଟିଆ ପ୍ରମୁଖଙ୍କ ନେତୃତ୍ୱରେ ପ୍ରଜା ସୋସାଲିଷ୍ଟ ଦଳର କଂଗ୍ରେସ ସହିତ ମିଶ୍ରଣ ହୋଇଥିଲା ।

ଉତ୍କଳ କଂଗ୍ରେସ ସଂଗଠନ ଓ ବିଧାୟକମାନଙ୍କର ଏକ ବୈଠକ ଜୁନ୍‌ମାସ ୯ ତାରିଖ ଦିନ ସନ୍ଧ୍ୟାରେ ଅନୁଷ୍ଠିତ ହୋଇଥିଲା । ସଭାପତିତ୍ୱ କରିଥିଲେ ବିଜୁବାବୁ । ନୀଳମଣିବାବୁ ଉତ୍କଳ କଂଗ୍ରେସର କଂଗ୍ରେସ ସହିତ ମିଶ୍ରଣ ପାଇଁ ଏକ ପ୍ରସ୍ତାବ ଆଗତ କରିଥିଲେ । ପ୍ରତାପ ଚନ୍ଦ୍ର ମହାନ୍ତି ଏହି ପ୍ରସ୍ତାବର ସମର୍ଥକ ଥିଲେ । ସେ ସମୟର ମନ୍ତ୍ରିମଣ୍ଡଳରୁ ଓହରି ଆସିବ ଉତ୍କଳ କଂଗ୍ରେସ । ସେ ପ୍ରସ୍ତାବ ଗୃହୀତ ହେବା ପରେ ଉତ୍କଳ କଂଗ୍ରେସ ବିଧାୟକ ଦଳର ନେତା ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶଙ୍କୁ ସେ ପ୍ରସ୍ତାବର ଏକ ନକଲ ଦେଇଥିଲେ । ସେ ଆଉ ଗୋଟିଏ ନକଲ ତତ୍କାଳୀନ ରାଜ୍ୟପାଳ ସର୍ଦ୍ଦାର ଯୋଗୀନ୍ଦର ସିଂହଙ୍କୁ ଦେଇଥିଲେ ।

ବିଶ୍ୱନାଥବାବୁ ପ୍ରସ୍ତାବଟି ପାଇ ନୀଳମଣିବାବୁଙ୍କୁ କହିଥିଲେ- "ଯାହା ହେଉ ଗୋଟାଏ ଜଞ୍ଜାଳରୁ ମୁଁ ତ୍ରାହି ପାଇଲି । ଭଗବାନ ତୁମର ମଙ୍ଗଳ କରନ୍ତୁ ।" ଏକଥା ନୀଳମଣିବାବୁ ତାଙ୍କ ଆତ୍ମଜୀବନୀ 'ସ୍ମୃତି ଓ ଅନୁଭୂତି' ପୁସ୍ତକରେ ଉଲ୍ଲେଖ କରିଛନ୍ତି । ସେ ଆହୁରି ମଧ୍ୟ ଉଲ୍ଲେଖ କରିଛନ୍ତି ଯେ, ରାଜ୍ୟପାଳ ଆନନ୍ଦରେ ତାଙ୍କୁ କୁଣ୍ଢାଇ ପକାଇ କହିଥିଲେ- "ଭାଇ ! ବର୍ତ୍ତମାନ ପ୍ରଶ୍ନ ହେଉଛି ନେତା ନିର୍ବାଚନ । ବିନାୟକ ଆଚାର୍ଯ୍ୟ ବର୍ତ୍ତମାନ ଦଳର ନେତା ଅଛନ୍ତି । ଉତ୍କଳ କଂଗ୍ରେସ ଶାସକ କଂଗ୍ରେସରେ ମିଶିଯିବା ପରେ କଂଗ୍ରେସ ବିଧାୟକ ଦଳର ସାନି ନେତା ନିର୍ବାଚନ ହେବା କଥା ! ତୁମେ ଓ ଆଚାର୍ଯ୍ୟ ବସି ନିଜ ଭିତରେ ସ୍ଥିର କରିନିଅ କିଏ ନେତା ହେବ ? ଆଚାର୍ଯ୍ୟ ନିଶ୍ଚୟ ତୁମେ ନେତା ହେବା କଥା କହିବେ, ଯେହେତୁ ତୁମର ଅଭିଜ୍ଞତା ବେଶୀ ।"

ନୀଳମଣିବାବୁ ପୁଣି ଲେଖିଛନ୍ତି- ସେ ଓ ବିନାୟକବାବୁ କଥା ହେଲେ ଓ ସ୍ଥିର କଲେ ଏ ଦାୟିତ୍ୱ ସେମାନେ ରାଜ୍ୟପାଳଙ୍କ ଉପରେ ଛାଡ଼ିଦେବେ ।

ବିଶ୍ୱନାଥବାବୁ ତାଙ୍କ ଇସ୍ତଫା ପତ୍ର ରାଜ୍ୟପାଳଙ୍କୁ ଦେଇଦେଲେ ଓ ରାଜ୍ୟପାଳ ତାହା ଗ୍ରହଣ କରିନେଲେ ।

ଉତ୍କଳ କଂଗ୍ରେସ ଦଳର ଶାସକ କଂଗ୍ରେସ ଦଳର ସହିତ ଯଦିଓ ମିଶ୍ରଣ ହେଲା, କିନ୍ତୁ ଉତ୍କଳ କଂଗ୍ରେସର ସମସ୍ତ ନେତାଙ୍କୁ ଶାସକ କଂଗ୍ରେସ୍ ଦଳ ଗ୍ରହଣ କଲା ନାହିଁ । ଯେଉଁମାନଙ୍କୁ ଗ୍ରହଣ କଲା ନାହିଁ ସେମାନଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ, ରାମକୃଷ୍ଣ ପଟ୍ଟନାୟକ, ଶରତ କୁମାର କର ପ୍ରମୁଖ ଥିଲେ ।

ନୀଳମଣିବାବୁ ମୁଖ୍ୟମନ୍ତ୍ରୀ ହେବା ପାଇଁ ବହୁ ଉଦ୍ୟମ କରି ମଧ୍ୟ ସଫଳ ହୋଇପାରିଲେ ନାହିଁ । ଯଦିଓ କେନ୍ଦ୍ରର କିଛି କଂଗ୍ରେସ ନେତାଙ୍କର ନୀଳମଣିବାବୁଙ୍କ ସହିତ ସୁସଂପର୍କ ଥିଲା, କିନ୍ତୁ ସେମାନେ ଏ କ୍ଷେତ୍ରରେ କିଛି କରିପାରିଲେ ନାହିଁ । ସେତେବେଳେ ପ୍ରଧାନମନ୍ତ୍ରୀ ଥିବା ଇନ୍ଦିରା ଗାନ୍ଧୀଙ୍କ ଇଚ୍ଛା ଉପରେ ସବୁକିଛି ନିର୍ଭର କରୁଥିଲା । ଦିଲ୍ଲୀରେ ପାର୍ଲିଆମେଣ୍ଟାରି ବୋର୍ଡର ଅନୁଷ୍ଠିତ ବୈଠକରେ ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ବୋଲି ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ନୀଳମଣିବାବୁ ଚୁପ୍ ରହିବାକୁ ବାଧ୍ୟ ହୋଇଥିଲେ ।



# ମୁଖ୍ୟମନ୍ତ୍ରୀ ହେଲେ ନନ୍ଦିନୀ ଦେବୀ

ଉଣେଇଶ ଶହ ଷାଠିଏ ଦଶକର କଥା । ରାଜ୍ୟସଭା ନିର୍ବାଚନ ଆସୁଥାଏ । ପ୍ରାର୍ଥିନୀ ଚୟନ ପାଇଁ କଟକସ୍ଥ ବିଜୁବାବୁଙ୍କ ଘର ଆନନ୍ଦ ଭବନରେ କଂଗ୍ରେସ ଦଳର ବୈଠକ ବସିଥାଏ । ମୁଁ ଏହି ବୈଠକରେ ଉପସ୍ଥିତ ଥିଲି । କାହାକୁ ପ୍ରାର୍ଥୀ କରାଯିବ ଏ ନେଇ ସମସ୍ତେ ମତ ଦେଉଥାନ୍ତି । ସେତେବେଳେ ରାଜ୍ୟସଭାକୁ ଯିବା ପାଇଁ ବରିଷ୍ଠ ନେତାମାନଙ୍କୁ ସୁପାରିଶ୍ କରାଯାଉଥାଏ । ସେଦିନ ମଧ୍ୟ କିଛି ବରିଷ୍ଠ ନେତାଙ୍କ ନାମ ଆଲୋଚନା ମାଧ୍ୟମକୁ ଆସୁଥାଏ । ହଠାତ୍ ବିଜୁବାବୁ କହିଲେ- "ଧେତ୍; ଆଉ କ'ଣ କେହି ନାହାନ୍ତି; ସବୁବେଳେ ଏଇ ବୁଢ଼ାହାଡ଼ାଙ୍କୁ ପଠାଯାଉଥିବ ?"

ତାଙ୍କ କଥା ଶୁଣି ସମସ୍ତେ ତଟସ୍ଥ ହେଇଗଲେ । ବିଜୁବାବୁ ଏମିତି କ'ଣ କହିଲେ ? କେହି କିଛି କହିବା ପୂର୍ବରୁ ସେ ପୁଣି କହିଲେ- "ଏଥର ଗୋଟେ ଝିଅକୁ ପଠାଯିବ ।"

ତାଙ୍କ ମୁହଁରୁ ଏହା ଶୁଣି ସମସ୍ତେ ଅବାକ୍ । ସମସ୍ତଙ୍କ ମନରେ ପ୍ରଶ୍ନ- ଝିଅଟେ ଯିବ; କିଏ ସେ ଝିଅ ?

ବିଜୁବାବୁ ତାଙ୍କ ପିଅନକୁ କହିଲେ- "ଏ, ପିଣ୍ଡା ଝରକା ଉପରେ ଯେ ଝିଅ ବସିଚି ତାକୁ ଡାକ ।"

ପିଅନ ଯାଇ ଡାକିବା ପରେ ଗୃହ ମଧ୍ୟକୁ ପ୍ରବେଶ କଲେ ନନ୍ଦିନୀ ଶତପଥୀ, ଯେ ସେତେବେଳେ କମ୍ୟୁନିଷ୍ଟ ଦଳରେ ଥିଲେ । ସେ ଝିଅ କିଏ ତାଙ୍କୁ ଅନେକ ଚିହ୍ନିପାରିଲେନି । ମୁଁ କିନ୍ତୁ ତାଙ୍କୁ ଭଲ ଭାବରେ ଜାଣିଥିଲି । ଆମେ ଏକା ସମୟରେ ରେଭେନ୍‌ସା କଲେଜରେ ପଢୁଥିଲୁ । ସେ ଅନେକ ସମୟରେ ସଂଗ୍ରାମୀ ଭୂମିକା ଗ୍ରହଣ କରୁଥିଲେ ।

ଓଡ଼ିଆ ସାହିତ୍ୟ ଜଗତର ବରିଷ୍ଠ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ସେ କନ୍ୟା । ଓଡ଼ିଶା କମ୍ୟୁନିଷ୍ଟ ଦଳର ପ୍ରବାଦପୁରୁଷ ଭଗବତୀ ଚରଣ ପାଣିଗ୍ରାହୀ ହେଉଛନ୍ତି ତାଙ୍କ କକା ।

ସେ ଆସି ବିଜୁବାବୁଙ୍କୁ ନମସ୍କାର କଲେ । ବିଜୁବାବୁ କହିଲେ ତାଙ୍କୁ- "ନନ୍ଦିନୀ; କମ୍ୟୁନିଷ୍ଟ ଦଳ ତ ଛାଡ଼ିଲୁ, ଏବେ ରାଜ୍ୟସଭାକୁ ଯିବୁ ?"

ନନ୍ଦିନୀ ଦେବୀ କୃତକୃତ୍ୟ ହୋଇ କହିଲେ- "ସାର୍, ଆପଣଙ୍କ ଦୟା ।"

ବାସ୍ ! ନନ୍ଦିନୀ ଦେବୀ ହେଲେ ରାଜ୍ୟସଭା ପ୍ରାର୍ଥିନୀ । ଜିତିବାଟା ଥିଲା ନିଶ୍ଚିତ । ସେ ରାଜ୍ୟସଭାକୁ ଗଲେ । ଅଳ୍ପଦିନ ମଧ୍ୟରେ ସେ ଇନ୍ଦିରା ଗାନ୍ଧୀଙ୍କର ପ୍ରିୟଭାଜନ ହୋଇପାରିଥିଲେ । ସେ କେନ୍ଦ୍ରରେ ଉପମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ ।

୧୯୭୨ ଜୁନ୍ ୧୪ ତାରିଖରେ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ । ତାଙ୍କ ସହିତ କେବିନେଟ୍ ମନ୍ତ୍ରୀ ଭାବରେ ଯେଉଁମାନେ ଶପଥ ଗ୍ରହଣ କରିଥିଲେ, ସେମାନେ ହେଲେ ନୀଳମଣି ରାଉତରାୟ, ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବାଙ୍କବିହାରୀ ଦାସ, ଲକ୍ଷ୍ମଣ ମଲ୍ଲିକ ଓ ଗଙ୍ଗାଧର ପ୍ରଧାନ ।

କିଛିଦିନ ପରେ ରାଷ୍ଟ୍ରମନ୍ତ୍ରୀ ଭାବରେ ଶପଥ ନେଲେ ଡଃ କୃପାସିନ୍ଧୁ ଭୋଇ, ଭାଗୀରଥି ଗମାଙ୍ଗ, ଅଚ୍ୟୁତାନନ୍ଦ ମହାନନ୍ଦ, ଗୋବିନ୍ଦ ଚନ୍ଦ୍ର ସେଠ୍, ଡମ୍ବରୁ ମାଝୀ, ସୋମନାଥ ରଥ ଓ ଉପମନ୍ତ୍ରୀ ହେଲେ ରବିସିଂ ମାଝୀ, ସହରାଇ ଓରାମ, ରାମଚନ୍ଦ୍ର ପ୍ରହରାଜ ପ୍ରମୁଖ । ମୁଁ ଏ ମନ୍ତ୍ରିମଣ୍ଡଳରୁ ବାଦ୍ ପଡ଼ିଥିଲି ।

ନନ୍ଦିନୀ ଦେବୀ ବିଧାନସଭାର ସଭ୍ୟା ନଥାଇ ମୁଖ୍ୟମନ୍ତ୍ରୀ ହେଲେ । ଆଇନ୍ ଅନୁଯାୟୀ ଛ'ମାସ ମଧ୍ୟରେ ସେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବାର କଥା । ସେତେବେଳେ କଟକରୁ ବିଧାୟକ ଥିଲେ ଭୈରବଚନ୍ଦ୍ର ମହାନ୍ତି । ନନ୍ଦିନୀ ଦେବୀଙ୍କ ପାଇଁ କଟକରୁ ପ୍ରତିଦ୍ୱନ୍ଦ୍ୱିତା କରିବା ସହଜ ହେବ ଚିନ୍ତା କରାଯାଇ ଭୈରବବାବୁଙ୍କୁ ଇସ୍ତଫା ଦେବା ପାଇଁ କୁହାଗଲା । ସେ ଇସ୍ତଫା ଦେଇଦେଲେ । ସେତେବେଳେ ନନ୍ଦିନୀଦେବୀ ରାଜ୍ୟସଭାରୁ ଇସ୍ତଫା ଦେଇ ନଥିଲେ । ଭୈରବବାବୁଙ୍କୁ କୁହାଯାଇଥିଲା, ନନ୍ଦିନୀଦେବୀ ବିଧାନସଭାକୁ ନିର୍ବାଚିତ ହେବା ପରେ ରାଜ୍ୟସଭାରୁ ଇସ୍ତଫା ଦେବେ ଏବଂ ସେ ରାଜ୍ୟସଭାକୁ ଯିବେ । ସେତେବେଳେ ମହତାବ୍‌ବାବୁ କଂଗ୍ରେସରେ ଥାଇ ମଧ୍ୟ ନନ୍ଦିନୀଦେବୀଙ୍କର ଘୋର ବିରୋଧୀ ଥିଲେ ।

ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ବିରୋଧୀ ଦଳ ପକ୍ଷରୁ ପ୍ରାର୍ଥୀ ଥିଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, 'ଜନଶକ୍ତି' ସମ୍ବାଦପତ୍ରର ମାଲିକ କଟକ ସହରର ଦରିଦ୍ରବନ୍ଧୁ ବୀରେନ୍ ମିତ୍ର । ମହତାବବାବୁ କଂଗ୍ରେସରେ ଥାଇ ମଧ୍ୟ ବୀରେନ୍‌ବାବୁଙ୍କୁ ଜିତାଇବା ପାଇଁ ପ୍ରଚ୍ଛନ୍ନ ଭାବରେ କାମ କରୁଥିଲେ । ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳରେ ଥାଇ ବି ନୀଳମଣିବାବୁ ଚାହୁଁଥିଲେ ବୀରେନ୍‌ବାବୁ ଜିତନ୍ତୁ । ନୀଳମଣିବାବୁ ତାଙ୍କ ଆତ୍ମଜୀବନୀରେ ଏ କଥା ସ୍ୱୀକାର କରିଛନ୍ତି ଏବଂ ଆହୁରି ମଧ୍ୟ କହିଛନ୍ତି ଯେ, ବୀରେନ୍‌ବାବୁଙ୍କୁ ନିର୍ବାଚନ ଖର୍ଚ୍ଚ ବାବଦକୁ ସେ ଏକଲକ୍ଷ ଟଙ୍କା ତାଙ୍କୁ ଦେଇଛନ୍ତି ।

ନୀଳମଣିବାବୁଙ୍କ ଧର୍ମପତ୍ନୀ ନଳିନୀଦେବୀ ସେତେବେଳେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ବମ୍ବେରେ ଚିକିତ୍ସାଧୀନ ଥାଆନ୍ତି । ନୀଳମଣିବାବୁ କଂଗ୍ରେସର ପ୍ରଚାର ପାଇଁ ନ ରହି ରୋଗାକ୍ରାନ୍ତ ସ୍ତ୍ରୀଙ୍କ ପାଖକୁ ବମ୍ବେ ଚାଲିଯାଇଥିଲେ ।

ଏହି ନିର୍ବାଚନରେ ନନ୍ଦିନୀଦେବୀଙ୍କୁ ଜିତାଇବା ପାଇଁ ମୁଁ ପୂର୍ଣ୍ଣ ପ୍ରାଣରେ ଲାଗି ପଡ଼ିଥିଲି । ବହୁ ସଭାରେ ଉପସ୍ଥିତ ରହି ଭାଷଣ ଦେଉଥିଲି । କଟକ ସହରର ରାସ୍ତାଘାଟର ଉନ୍ନତି, ପାଣିର ସୁବିଧା, ସବୁଆଡ଼େ ବିଜୁଳିବତିର ବ୍ୟବସ୍ଥା, ଏମିତି ଅନେକ ଅନେକ ପ୍ରତିଶ୍ରୁତି ସାଙ୍ଗକୁ ମୁଖ୍ୟମନ୍ତ୍ରୀ ହୋଇଥିବା କଟକ ସହରର ଝିଅକୁ ଜିତେଇଦେବା କଟକ ସହରର ବାସିନ୍ଦାମାନଙ୍କର ପ୍ରଥମ କର୍ତ୍ତବ୍ୟ ବୋଲି ଭାଷଣରେ ଆମେ କହୁଥିଲୁ ।

ରେଭେନ୍‌ସା କଲେଜ ଛକର ଏକ ସଭାରେ ମୁଁ କହିଥିଲି କଲେଜ ଆଡ଼କୁ ହାତ ଦେଖାଇ- ଏଇ କଲେଜରେ ମୁଁ ଓ ମୁଖ୍ୟମନ୍ତ୍ରୀ ପାଠ ପଢ଼ିଛୁ । ଏ କଲେଜ ହେଉଛି ଆମ ଓଡ଼ିଶାର ଗୌରବ । ଏହି ଗୌରବକୁ ଅକ୍ଷୁଣ୍ଣ ରଖିବୁ ଇତ୍ୟାଦି ।

ସମବେତ ଜନତା ଓ ଛାତ୍ରଛାତ୍ରୀମାନଙ୍କର ତାଳିଧ୍ୱନିରେ ସଭାସ୍ଥଳ ପ୍ରକମ୍ପିତ ହୋଇଥିଲା ଏବଂ ସଭା ଶେଷ ହେବା ବେଳକୁ ସବୁରି କଣ୍ଠରୁ ଧ୍ୱନିତ ହେଉଥିଲା- "ଜୟ ନନ୍ଦିନୀ ଶତପଥୀଙ୍କର ଜୟ ।"

ଏହି ନିର୍ବାଚନରେ ନନ୍ଦିନୀଦେବୀ ଜୟଲାଭ କଲେ ।

ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ ପୁରୀ ଜିଲ୍ଲାର ବ୍ରଜମୋହନ ମହାନ୍ତି । ନିର୍ବାଚନରେ ମହତାବବାବୁ ଦଳବିରୋଧୀ କାର୍ଯ୍ୟରେ ଲିପ୍ତ ଥିଲେ ବୋଲି ସେ ତାଙ୍କୁ କଂଗ୍ରେସରୁ ନିଲମ୍ବନ ଆଦେଶ ଦେଇଥିଲେ । ଏହି କାର୍ଯ୍ୟାନୁଷ୍ଠାନ ଯୋଗୁଁ ସବୁଠୁ ବେଶୀ ଦୁଃଖିତ ହୋଇଥିଲେ ନୀଳମଣିବାବୁ । ତାଙ୍କ ସ୍ତ୍ରୀ ବମ୍ବେସ୍ଥ

ଟାଟା ମେମୋରିଏଲ୍ ହସ୍ପିଟାଲ୍‌ରେ ଚିକିତ୍ସାଧୀନ ଥିବାରୁ, ସେ ମଝିରେ ମଝିରେ ବମ୍ବେ ଯାଉଥିଲେ । ଏହି ଘଟଣା ପରେ ସେ ପୁଣି ବମ୍ବେ ଚାଲିଯାଇଥିଲେ । ୧୯୭୩ ମସିହା ଜାନୁଆରୀ ୧୨ ତାରିଖରେ ସେ ତାଙ୍କ ସ୍ତ୍ରୀଙ୍କୁ ସାଙ୍ଗରେ ନେଇ ବମ୍ବେରୁ ଫେରିଆସିଥିଲେ ।

କ୍ଷମତା ରାଜନୀତିର ଉଚ୍ଚ ସ୍ଥାନରେ ଅଧିଷ୍ଠିତା ହୋଇ ମୁଖ୍ୟମନ୍ତ୍ରୀ ନନ୍ଦିନୀଦେବୀ ଅନେକଙ୍କର ଚକ୍ଷୁଃଶୂଳ ହୋଇଥିଲେ । ମହତାବବାବୁ, ବିଜୁବାବୁ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ନନ୍ଦିନୀ ସରକାରଙ୍କ ପତନ ପାଇଁ ନୀଳମଣିବାବୁଙ୍କୁ ମଧ୍ୟ ପ୍ରବର୍ତ୍ତାଉଥିଲେ । ମୁଁ ଯେଣୁ ମନ୍ତ୍ରିମଣ୍ଡଳରେ ନଥିଲି, ତେଣୁ ମୋର ଏ ସଂକ୍ରାନ୍ତରେ କୌଣସି ଭୂମିକା ନଥିଲା ।



# କାହାଣୀ ନୁହେଁ ସତ୍ୟ

୧୯୭୨ ମସିହାର କଥା । ବିଧାନସଭାର ଅଧିବେଶନ ଚାଲିଥାଏ । ମୁଁ ଉପମନ୍ତ୍ରୀ ଥିବାବେଳେ ଯେଉଁ ସରକାରୀ ଘରେ ରହୁଥିଲି, ସେହି ଘରେ ରହୁଥାଏ । ମୋ' ପିଲାମାନେ ବାଲେଶ୍ୱରରେ ପଢୁଥିବାରୁ ମୋ ସ୍ତ୍ରୀ ବାଲେଶ୍ୱରରେ ରହୁଥାଏ । ମୁଁ ଉପମନ୍ତ୍ରୀ ଥିବାବେଳେ ସେ ମଝିରେ ମଝିରେ ଭୁବନେଶ୍ୱର ଆସି ଦି'ଚାରିଦିନ ରହି ପୁଣି ବାଲେଶ୍ୱର ଫେରିଯାଏ ।

ଟୁଆଁନନା ପ୍ରାୟ ମୋ ପାଖରେ ରହୁଥିଲେ । ମୋର ଅଭ୍ୟାସ ରାତି ୧୦ରୁ ୧୧ ଭିତରେ ରାତ୍ରିଭୋଜନ ସାରି ଘଣ୍ଟାଏ ଦେଢ଼ଘଣ୍ଟା ପଢ଼ିବା ଲେଖିବା । ଯେଉଁ ରାତିର କଥା ମୁଁ ଲେଖୁଛି, ସେଦିନ ପ୍ରାୟ ରାତି ୧୨ଟା ପରେ ମୋ କୋଠରିରେ ମୁଁ ଶୋଇଲି । ପାଖ କୋଠରିରେ ଟୁଆଁନନା ଶୋଇଲେ ।

ପ୍ରାୟ ରାତି ୪ଟା ବେଳେ ଖୋଲାଥିବା ଝରକାରୁ ବାହାରପଟୁ ଖଣ୍ଡେ ବାଡ଼ିରେ କିଏ ମୋତେ ଖେଞ୍ଚିଲେ । ମୁଁ ହାଉଳିଖାଇ ଚିତ୍କାର କଲି- "ଚୋର, ଚୋର... ଟୁଆଁନ୍ନା, ଟୁଆଁନ୍ନା..."

ଟୁଆଁନନା ଧାଇଁଆସିଲେ । ମୋ ଚିତ୍କାର ଶୁଣି ଖେଞ୍ଚୁଥିବା ଲୋକ କହିଲେ- "ଯଦୁବାବୁ; ପାଟି କରନି, ମୁଁ ନୀଳମଣି ।"

ତାଙ୍କ କଥାରୁ ଜାଣିଲି, ସେ ନୀଳମଣି ରାଉତରାୟ । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଏତେ ରାତିରେ...

ସେ ପୁଣି କହିଲେ- "କବାଟ ଖୋଲ ।"

ଅଗତ୍ୟା କବାଟ ଖୋଲିବା ଛଡ଼ା ମୋର ଆଉ ଅନ୍ୟ କିଛି ବାଟ ନଥିଲା । ଯାଇ କବାଟ ଖୋଲିଦେଲି । ନୀଳମଣିବାବୁ ଏକା ନୁହେଁ, ତାଙ୍କ ସାଙ୍ଗରେ ଥିଲେ ଭଦ୍ରକ ବିଧାୟକ ତଥା ଭଦ୍ରକ କଲେଜର ପୂର୍ବତନ ଅଧ୍ୟକ୍ଷ ବଳରାମ ସାହୁ ଓ

ଧାମନଗର ବିଧାୟକ ହୃଦାନନ୍ଦ ମଲ୍ଲିକ । ସେମାନେ ଅଫିସ୍ ପାଇଁ ବ୍ୟବହୃତ ସାମ୍ନା ଘରଟାରେ ବସିଲେ । ମୁଁ ମୁହଁ ଧୋଇବା ପାଇଁ ଭିତରକୁ ଗଲି । ଟୁଆଁନନା ଉତ୍କଣ୍ଠାର ସହିତ ଭିତର ଘର ଖାଇବା ଟେବୁଲ୍ ପାଖରେ ଠିଆ ହେଇଥିଲେ । ମୁଁ ତାଙ୍କୁ ପାଟିରେ କିଛି ନ କହି ହାତରେ ଠାରି ସେଇଠି ବସିବାକୁ କହିଲି ଓ ମୁହଁଧୋଇ ସେମାନଙ୍କ ପାଖକୁ ଗଲି ।

ନୀଳମଣିବାବୁ କହିଲେ- "ଯଦୁବାବୁ; ଆଜି ବିଧାନସଭାରେ ନନ୍ଦିନୀ ସରକାର ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିବ । ଅନେକ ବିଧାୟକ ସେଥିପାଇଁ ଦସ୍ତଖତ କରିଦେଇଛନ୍ତି । ଏ ସରକାର ଭାଂଗିବ, ନୂଆ ସରକାର ହେବ, ମୁଁ ହେବି ମୁଖ୍ୟମନ୍ତ୍ରୀ । ତମେ ଜଣେ ଯୋଗ୍ୟ ଲୋକ, ନନ୍ଦିନୀ ତମକୁ ମନ୍ତ୍ରୀ କଲା ନାହିଁ । ମୁଁ ତମକୁ ମନ୍ତ୍ରୀ କରିବି । ନିଅ, ଏଇ କାଗଜରେ ଦସ୍ତଖତ କରିଦିଅ ।"

ଇତି ମଧ୍ୟରେ ଉତ୍କଳ କଂଗ୍ରେସର ଯେଉଁ ୭ ଜଣ ନେତାଙ୍କୁ କଂଗ୍ରେସରେ ଗ୍ରହଣ କରାଯାଇ ନଥିଲା ସେମାନେ ଓ ସ୍ୱତନ୍ତ୍ର ଦଳ ମିଶି 'ପ୍ରଗତି ଦଳ' ନାମରେ ଗୋଟିଏ ଦଳ ଗଠନ କରିଥିଲେ । ନୀଳମଣିବାବୁ ଆମ୍ଭମାନଙ୍କୁ ନେଇ ସେଇ ଦଳରୁ ନେତା ହୋଇ ମୁଖ୍ୟମନ୍ତ୍ରୀ ହେବେ ।

ମୋତେ ଦେଇଥିବା କାଗଜରେ ଅନେକ ବିଧାୟକଙ୍କର ଦସ୍ତଖତ ଥିଲା । ସେ କାଗଜ ଖଣ୍ଡକ ଥିଲା ସମର୍ଥନ ପ୍ରତ୍ୟାହାରର ଦରଖାସ୍ତ ।

ମୁଁ ନୀଳମଣିବାବୁଙ୍କୁ କହିଲି- "ଆପଣ ଯାଆନ୍ତୁ । ମୁଁ ଏ ବିଷୟରେ ଟିକିଏ ଚିନ୍ତା କରି ଘଣ୍ଟେ ଭିତରେ ଆପଣଙ୍କ ବସାରେ ଯାଇ ପହଞ୍ଚିବି ।"

ସାରାରାତି ଅନିଦ୍ରା ରହି ଏଇ କାମରେ ବ୍ୟସ୍ତ ରହିବା ଯୋଗୁଁ ନୀଳମଣିବାବୁ ଖୁବ୍ କ୍ଳାନ୍ତ ଦେଖାଯାଉଥିଲେ । ତାଙ୍କର ଦୁଇଆଖି ଲାଲ୍ ପଡ଼ିଯାଇଥିଲା ।

ସେ କହିଲେ- "ଦେଖ, ଆଜି ଶୁକ୍ରବାର । ସକାଳ ସାଢ଼େଆଠରେ ବିଧାନସଭା । ଆହୁରି ଅନେକଙ୍କର ଦସ୍ତଖତ ନେବାକୁ ହେବ । ଯଦି ମନ୍ତ୍ରୀ ହେବାକୁ ଚାହୁଁଚ, ଏଥିରେ ଦସ୍ତଖତ କରିଦିଅ । ଆଜିହିଁ ମୋ ମୁଖ୍ୟମନ୍ତ୍ରିତ୍ୱରେ ନୂଆ ମନ୍ତ୍ରିମଣ୍ଡଳ ଗଢ଼ାଯିବ ।"

ମୁଁ କହିଲି- "ମୁଁ ଘଣ୍ଟାଏ ଭିତରେ ନିତ୍ୟକର୍ମ ସାରି ଆପଣଙ୍କ ଘରେ ନିଶ୍ଚୟ ଯାଇ ପହଞ୍ଚିବି ।"

ସେ କହିଲେ- "ହଉ, ମୁଁ ଯାଉଛି । ଯେତେ ଶୀଘ୍ର ପାର ଆସ ।"

ସେ ଚାଲିଗଲେ । ମୁଁ ଅଧଘଣ୍ଟାଏ ଭିତରେ ସକାଳର ନିତ୍ୟକର୍ମ ସାରି ସିଧା ଯାଇ ପହଞ୍ଚିଲି ମୋର ଘନିଷ୍ଠ ବନ୍ଧୁ କୋରେଇ ନିର୍ବାଚନମଣ୍ଡଳୀର ବିଧାୟକ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇଙ୍କ ଘରେ । ସେ ଥିଲେ କଂଗ୍ରେସ ଦଳର ବିଧାୟକ । ତାଙ୍କ ଘରେ ପହଞ୍ଚି ଦେଖିଲି ସେ ଚୁପ୍‌ଚାପ୍ ହୋଇ ବସିଛନ୍ତି । ମୋତେ ଦେଖି ପଚାରିଲେ- "ଯଦୁବାବୁ; ଏତେ ଭୋର୍‌ରୁ କୁଆଡ଼େ ?"

ମୁଁ ନୀଳମଣିବାବୁଙ୍କ କଥା କହିବା ମାତ୍ରେ ସେ କହିଲେ- "ନୀଳମଣିବାବୁ ତମ ପାଖକୁ ବି ଯାଇଥିଲେ, ମୋ ପାଖକୁ ବି ତ ଆସିଥିଲେ ।"

ମୁଁ ପଚାରିଲି- "ତମେ ଦସ୍ତଖତ କଲ ?"

କହିଲେ- "ନା ଭାଇ; ଏମତି କରିବାଟା କ'ଣ ଠିକ୍ ହେବ ?"

ନୀଳମଣିବାବୁ ତାଙ୍କୁ ବି କହିଥିଲେ, ମନ୍ତ୍ରୀ କରିଦେବେ । ଆମେ ଦୁଇଜଣ ବିଚାର ବିମର୍ଶ କରି ନନ୍ଦିନୀଦେବୀଙ୍କ ପାଖକୁ ଗଲୁ । ସେତେବେଳକୁ ଛ'ଟା ବି ବାଜି ନଥାଏ । ଭିତରକୁ ବେଲ୍ ମାରି ତାଙ୍କୁ ଉଠେଇଲୁ । ଅଫିସ୍‌ରେ ବସି ସବୁ କଥା ତାଙ୍କୁ ଜଣାଇଲୁ । ସମସ୍ତେ ସଂଶୟର ଦୋଳିରେ । କ'ଣ କରାଯିବ ?

ଗୋଟାଏ କଥା ସମସ୍ତଙ୍କ ମୁଣ୍ଡକୁ ଜୁଟିଲା । ଯାଇ ରାଜ୍ୟପାଳଙ୍କୁ ଭେଟିବା, ତାଙ୍କ ପରାମର୍ଶ ନେବା ।

ନନ୍ଦିନୀଦେବୀ ଭିତରକୁ ଯାଇ ପ୍ରସ୍ତୁତ ହୋଇ ଆସିଲେ । ସାତଟାବେଳେ ଆମେ ଯାଇ ରାଜଭବନରେ ପହଞ୍ଚିଲୁ । ତାଙ୍କ ସହିତ ଆଲୋଚନା ପରେ ସ୍ଥିର ହେଲା- ରାଜ୍ୟପାଳ ବିଧାନସଭାକୁ ମୁଲତବି କରିଦେବେ । ବିଧାନସଭା ଚାଲିଲେ ସିନା ସମର୍ଥନ ପ୍ରତ୍ୟାହାର କଥା ଉଠିବ ଏବଂ ସଂଗେ ସଂଗେ କାର୍ଯ୍ୟାନୁଷ୍ଠାନର ଆବଶ୍ୟକତା ପଡ଼ିବ, କିନ୍ତୁ ବିଧାନସଭା ମୁଲତବି ହୋଇଗଲେ ସହସା ସେ ପ୍ରଶ୍ନ ଉଠିବ ନାହିଁ । ଯଦି ସମର୍ଥନ ପ୍ରତ୍ୟାହାର କଥା ରାଜ୍ୟପାଳଙ୍କୁ ଦିଆଯାଏ, ତେବେ ସେ ବିଧାନସଭା ଆହ୍ୱାନ କରିବେ । ବିଧାନସଭାରେ ଅନାସ୍ଥା ପ୍ରସ୍ତାବ ଆଲୋଚିତ ହୋଇ ଭୋଟ୍ ନିଆଯିବ । ଯଦି ପ୍ରସ୍ତାବଟି ଗୃହୀତ ହୁଏ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବେ । ତେବେ ବିଧାନସଭା କେବେ ଡାକିବେ, ତାହା ରାଜ୍ୟପାଳଙ୍କର ସଂପୂର୍ଣ୍ଣ ଇଚ୍ଛାଧୀନ ବିଷୟ ।

ସେଦିନ ବିଧାୟକମାନେ ବିଧାନସଭାକୁ ଆସି ଦେଖିଲେ- ପ୍ରତ୍ୟେକ ବିଧାୟକ-ବିଧାୟିକା ଦେଖିଲେ ସେମାନଙ୍କ ଟେବୁଲ୍‌ରେ ରାଜ୍ୟପାଳଙ୍କ ଆଦେଶନାମାର

କାଗଜ ରହିଛି । ସେଥିରେ ଲେଖାଅଛି- "Orissa Legislative Assembly is adjourned sine die."

- B. D. Jatti
Governor

ସେତେବେଳେ ବାସପ୍ପା ଦାନପ୍ପା ଜତ୍ତି ଓଡ଼ିଶା ରାଜ୍ୟପାଳ ଥିଲେ ।

ମୁଁ ଓ ପ୍ରଫୁଲ୍ଲବାବୁ ନନ୍ଦିନୀଦେବୀଙ୍କ ବାସଭବନରେ ତାଙ୍କୁ ଦେଖା କରି ନିଜ ନିଜର ନିର୍ବାଚନମଣ୍ଡଳୀ ଅଭିମୁଖେ ମୋରି ଗାଡ଼ିରେ ବାହାରିଗଲୁ । ମୁଁ ତାଙ୍କୁ କୋରେଇରେ ଛାଡ଼ି ସୋର ଗଲି । ୧୯୭୭ ମସିହାରେ ନୀଳମଣିବାବୁ ମୁଖ୍ୟମନ୍ତ୍ରୀ ହେବା ପର୍ଯ୍ୟନ୍ତ ତାଙ୍କର ମୋର ଆଉ ସାକ୍ଷାତ୍ ହୋଇ ନଥିଲା ।

ଉତ୍କଳ କଂଗ୍ରେସରୁ କଂଗ୍ରେସକୁ ଆସିଥିବା ଅନେକ ସଭ୍ୟ ଉତ୍କଳ କଂଗ୍ରେସକୁ ଫେରିଯାଇ ପ୍ରଗତି ଦଳରେ ଯୋଗଦେବାରୁ ବିଧାନସଭାରେ କଂଗ୍ରେସର ସଂଖ୍ୟାଗରିଷ୍ଠତା ହ୍ରାସ ପାଇଥିଲା । ବାଧ୍ୟ ହୋଇ ନନ୍ଦିନୀଦେବୀ ଇସ୍ତଫା ଦେଇଥିଲେ । ମୁଁ ପ୍ରଗତି ଦଳକୁ ନଯାଇ କଂଗ୍ରେସରେ ରହିଥିଲି । ବିଧାୟକବନ୍ଧୁ ଚିନ୍ତାମଣି ଜେନା ମଧ୍ୟ କଂଗ୍ରେସରେ ରହିଥିଲେ । ପ୍ରଗତି ଦଳ ସରକାର ଗଢ଼ିବାକୁ ରାଜ୍ୟପାଳଙ୍କ ଠାରେ ଦାବୀ କରିଥିଲେ । ଯଦିଓ ନୀଳମଣିବାବୁଙ୍କୁ କୁହାଯାଇଥିଲା ସେ ମୁଖ୍ୟମନ୍ତ୍ରୀ ହେବେ, ତାହା ହେଲା ନାହିଁ । ବିଜୁବାବୁ ଚାହିଁଲେ ମୁଖ୍ୟମନ୍ତ୍ରୀ ହେବେ । ନବଗଠିତ ପ୍ରଗତି ଦଳର ନେତାମାନଙ୍କ ମଧ୍ୟରେ କୌଣସି ତାଳମେଳ ରହିଲା ନାହିଁ । ରାଜ୍ୟପାଳଙ୍କୁ ଯେଉଁ ୭୧ ଜଣଙ୍କ ନାମ ସେମାନେ ଦେଇଥିଲେ ସେମାନଙ୍କ ମଧ୍ୟରୁ ୨ ଜଣ ଜଗତେଶ୍ୱର ମିର୍ଦ୍ଧା ଓ ଗୋପାଳ ପ୍ରଧାନ ରାଜ୍ୟପାଳଙ୍କୁ ପତ୍ର ଲେଖି ଜଣାଇଦେଲେ ଯେ ସେମାନେ କଂଗ୍ରେସ ଦଳ ପରିତ୍ୟାଗ କରିନାହାନ୍ତି ।

ଏହି କାରଣରୁ ରାଜ୍ୟପାଳ ପ୍ରଗତି ଦଳକୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ନ ଡାକି ବିଧାନସଭାକୁ ଭାଂଗିଦେଇ ରାଷ୍ଟ୍ରପତି ଶାସନ ଜାରି କରିବା ପାଇଁ ରାଷ୍ଟ୍ରପତିଙ୍କୁ ସୁପାରିସ୍ କରିଥିଲେ । ଚିଠିରେ କାରଣ ଦର୍ଶାଇ ଶେଷକୁ ଲେଖିଥିଲେ- "I therefore recommend that, the President takes over administration of the State under the article 356 of the constitution of India and the Orissa Legislative Assembly be dissolved."

ରାଜ୍ୟପାଳଙ୍କ ସୁପାରିସ୍ ଅନୁଯାୟୀ ତା ୩।୩।୧୯୭୩ରିଖ ଦିନ ବିଧାନସଭାକୁ ଭାଂଗି ଦିଆଯାଇଥିଲା ଓ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ କରାଯାଇଥିଲା ।



# ୧୯୭୪ ନିର୍ବାଚନ ପୂର୍ବରୁ

୧୯୬୭ ମସିହାରେ ବିଜୁ ପଟ୍ଟନାୟକ ମୋତେ ବାଲେଶ୍ୱର ଜିଲ୍ଲା କଂଗ୍ରେସର ସଭାପତି ଓ ପରେ ଉତ୍କଳ କଂଗ୍ରେସର ଜିଲ୍ଲା ସଭାପତି ଭାବରେ ନିଯୁକ୍ତି ଦେଇଥିଲେ । ୧୯୭୪ ମସିହାରେ ନନ୍ଦିନୀ ଶତପଥୀ ପୁଣି ମୋତେ ଜିଲ୍ଲାର ସଭାପତି ଦାୟିତ୍ୱ ଦେଲେ ।

ଏ ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭାର ନିର୍ବାଚନ ମଣ୍ଡଳୀ ସଂଖ୍ୟା ୧୪୦ ଥିଲା। ଏବେ ନିର୍ବାଚନମଣ୍ଡଳୀ ପୁନର୍ଗଠିତ ହୋଇ ଆସନ ସଂଖ୍ୟା ୧୪୭ ହେଲା । ପୂର୍ବରୁ ସୋର ନିର୍ବାଚନମଣ୍ଡଳୀରେ ଖଇରା ପଞ୍ଚାୟତ ସମିତିର ଥିବା ୫ଟି ପଞ୍ଚାୟତକୁ ବାଦ୍ ଦିଆଯାଇ କେବଳ ସୋର ଓ ବାହାନଗା ପଞ୍ଚାୟତ ସମିତିକୁ ସୋର ନିର୍ବାଚନମଣ୍ଡଳୀ କରାଗଲା । ତିହିଡ଼ି-ଚାନ୍ଦବାଲି ଓ ଖଇରା-ସିମୁଳିଆ ନିର୍ବାଚନମଣ୍ଡଳୀ ଦୁଇଟି ହରିଜନଙ୍କ ପାଇଁ ସଂରକ୍ଷିତ ଥିଲା । ଏହି ପୁନର୍ଗଠନରେ ଖଇରା-ସିମୁଳିଆକୁ ସାଧାରଣବର୍ଗଙ୍କ ନିର୍ବାଚନମଣ୍ଡଳୀରେ ପରିଣତ କରାଯାଇ ସୋରକୁ ହରିଜନ ନିର୍ବାଚନମଣ୍ଡଳୀ କରାଯାଇଥିଲା । ଏହା ଦେଖି ନନ୍ଦିନୀ ଶତପଥୀଙ୍କ ସମେତ ଆମେ ସମସ୍ତେ ତଟସ୍ଥ ହେଲୁ ।

ଏହା କାହିଁକି ଓ କିପରି ହେଲା ? ନନ୍ଦିନୀଦେବୀ ସଂଗେ ସଂଗେ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ କହିଲେ । ସୋର ସଂରକ୍ଷିତ ଆସନ ହେଲେ ମୁଁ ସେଠୁ ନିର୍ବାଚନ ଲଢ଼ିପାରିବି ନାହିଁ । ବୋଧହୁଏ କଂଗ୍ରେସ ଦଳ ଓ ନନ୍ଦିନୀଦେବୀଙ୍କ ପାଇଁ ମୋ ଲଢ଼ିବାଟା ଆବଶ୍ୟକ ଥିଲା । ତେଣୁ ନନ୍ଦିନୀଦେବୀଙ୍କ ଚେଷ୍ଟା ଓ ଇନ୍ଦିରାଜୀଙ୍କ ହସ୍ତକ୍ଷେପ ଫଳରେ ସୋର ପୁଣି ସାଧାରଣବର୍ଗଙ୍କ ନିର୍ବାଚନମଣ୍ଡଳୀରେ ପରିଣତ ହେଲା ।

ଆମେ ଜାଣିବାକୁ ପାଇଲୁ ଯେ ନୀଳମଣି ରାଉତରାୟ ଏବଂ ସେତେବେଳେ ସାଂସଦ ଥିବା ଶ୍ୟାମସୁନ୍ଦର ମହାପାତ୍ରଙ୍କ ପ୍ରଚେଷ୍ଟାରେ ଏହା କରାଯାଇଥିଲା ।

ନୀଳମଣିବାବୁଙ୍କ ଘର ତିହିଡ଼ି ନିର୍ବାଚନମଣ୍ଡଳୀରେ । ତାହା ସଂରକ୍ଷିତ ଆସନ ହୋଇଥିବାରୁ ସେ ବାସୁଦେବପୁର ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ଏହା ଥିଲା ତାଙ୍କର ପୁରୁଣା ନିର୍ବାଚନମଣ୍ଡଳୀ । ତିହିଡ଼କୁ ସାଧାରଣବର୍ଗ ନିର୍ବାଚନମଣ୍ଡଳୀ କରି ସେ ଠିଆ ହେବାକୁ ଚାହୁଁ ନଥିଲେ କାରଣ - ତାହା ହେଲେ ସେଠାକାର ହରିଜନମାନେ ତାଙ୍କୁ ବିରୋଧ କରି ଭୋଟ ଦେବାର ସମ୍ଭାବନା ନ ଥିବାରୁ ସେ ଏହି ପଦକ୍ଷେପ ନେବା ପାଇଁ ଉଦ୍ୟମ କରି ସଫଳ ହୋଇଥିଲେ । ତାଙ୍କ ଦ୍ୱାରା ଏହା ସମ୍ଭବ ହୋଇଥିଲା ବୋଲି ସେ ତାଙ୍କ ଆତ୍ମଜୀବନୀ 'ସ୍ମୃତି ଓ ଅନୁଭୂତି' ପୁସ୍ତକରେ ସ୍ୱୀକାର କରିଛନ୍ତି ।

ଇତିମଧ୍ୟରେ ସ୍ୱତନ୍ତ୍ର ଦଳ ଓ ଉତ୍କଳ କଂଗ୍ରେସ ଦଳ ମିଶିଯାଇ 'ପ୍ରଗତି ଦଳ' ନାମରେ ଏକ ଦଳ ଗଠନ କରିସାରିଥିଲେ । ଆଗାମୀ ନିର୍ବାଚନରେ ମୁଖ୍ୟତଃ ଏହି ଦଳ ସହିତ କଂଗ୍ରେସ ଦଳର ନିର୍ବାଚନ ଲଢ଼େଇ ହେବ ।



# ୧୯୭୪ ନିର୍ବାଚନ

ନିର୍ବାଚନ ପୂର୍ବରୁ ମହତାବବାବୁଙ୍କ ଅନୁରୋଧ ଅନୁଯାୟୀ ଜନକଂଗ୍ରେସ ନେତା ଯୁଗଳକିଶୋର ପଟ୍ଟନାୟକଙ୍କୁ ମୁଁ କଂଗ୍ରେସକୁ ଅଣାଇଥିଲି । ନନ୍ଦିନୀଦେବୀ ରହୁଥିବା ଘରେ ବିଭିନ୍ନ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ଚୟନ ପାଇଁ ବୈଠକ ବସିଥାଏ । ଜିଲ୍ଲାୱାରି ତର୍ଜମା ଓ ଚୟନ । ଯେଉଁ ଜିଲ୍ଲା ସଂପର୍କରେ ଆଲୋଚନା ହୁଏ, ସେହି ସମୟରେ ସେ ଜିଲ୍ଲାର ସଭାପତି ଉପସ୍ଥିତ ରହୁଥାନ୍ତି । ବାଲେଶ୍ୱର ଜିଲ୍ଲାର ଆଲୋଚନାବେଳେ ମୁଁ ଉପସ୍ଥିତ ଥିଲି ।

ବୈଠକରେ ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବାଙ୍କବିହାରୀ ଦାସ ପ୍ରମୁଖ କଂଗ୍ରେସ ନେତାମାନେ ଉପସ୍ଥିତ ଥାଆନ୍ତି । ଭୋଗରାଇ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ଚୟନ ଆରମ୍ଭ ହେଲା । ଭୋଗରାଇରୁ ପ୍ରାର୍ଥୀ ହେଲେ କାର୍ତ୍ତିକେଶ୍ୱର ପାତ୍ର । ଜଳେଶ୍ୱରରୁ ପ୍ରସନ୍ନ କୁମାର ପାଳ, ବସ୍ତାରୁ ଚିନ୍ତାମଣି ଜେନା, ବାଲେଶ୍ୱରରୁ ରବୀନ୍ଦ୍ରମୋହନ ଦାସ ଓ ସୋରରୁ ମୁଁ ପ୍ରାର୍ଥୀ ହେଲୁ । ଭଦ୍ରକ, ଧାମନଗର ଓ ବାସୁଦେବପୁରରୁ ଯଥାକ୍ରମେ ଯୁଗଳକିଶୋର ପଟ୍ଟନାୟକ, ଧାମନଗରରୁ ଜଗନ୍ନାଥ ରାଉତ, ବାସୁଦେବପୁରରୁ ଜଗବନ୍ଧୁ ଦାସଙ୍କୁ ପ୍ରାର୍ଥୀ କରିବା ପାଇଁ ପ୍ରସ୍ତାବ ଦେଲି । ବାଙ୍କବାବୁଙ୍କର ଇଚ୍ଛା ଥିଲା ଧାମନଗରରୁ ଜଣେ ପୂର୍ବତନ ସୋସାଲିଷ୍ଟ ନେତାଙ୍କୁ ପ୍ରାର୍ଥୀ କରିବା ପାଇଁ । ତାଙ୍କ କହିବାର ଭଙ୍ଗୀ ନନ୍ଦିନୀଦେବୀଙ୍କୁ ଭଲ ଲାଗିନଥିଲା । ବାଙ୍କବାବୁ କହିଥିଲେ- "ଯଦୁବାବୁଙ୍କ ନାମ 'ଯ'ରୁ ଆରମ୍ଭ ହୋଇଥିବାରୁ ଏହି ତିନି ଜାଗାରେ 'ଯ' ଅକ୍ଷରରେ ନାମ ଆରମ୍ଭ ହୋଇଥିବା ଲୋକଙ୍କୁ ସେ ପ୍ରାର୍ଥୀ କରିବାକୁ ଚାହୁଁଛନ୍ତି ।

ଏକଥା ଶୁଣି ନନ୍ଦିନୀଦେବୀ କହିଲେ- "ଯଦୁବାବୁ ବାଲେଶ୍ୱର ଜିଲ୍ଲା କଂଗ୍ରେସର ସଭାପତି । କାହାକୁ ପ୍ରାର୍ଥୀ କରାଯିବ ସେଇଟା ତାଙ୍କର ଦାୟିତ୍ୱ । ତାଙ୍କୁ ଜିତାଇବା

ମଧ୍ୟ ତାଙ୍କର ଦାୟିତ୍ୱ । ତେଣୁ ସେ ଯେଉଁମାନଙ୍କୁ ପ୍ରାର୍ଥୀ କରିବାକୁ ଚାହୁଁଛନ୍ତି, ସେଇମାନେ ହିଁ ପ୍ରାର୍ଥୀ ହେବେ ।"

ଏହା ଶୁଣି ବାଙ୍କବାବୁ ଚୁପ୍ । ନନ୍ଦିନୀଦେବୀଙ୍କର ଇଚ୍ଛା ଥିଲା ବାସୁଦେବପୁରରୁ ଜଗବନ୍ଧୁ ଦାସଙ୍କୁ ପ୍ରାର୍ଥୀ ନ କରି ନର୍ମଦା ପାଢ଼ୀଙ୍କୁ ପ୍ରାର୍ଥୀ କରିବା ପାଇଁ । ସେ ହେଉଛନ୍ତି ଇରମ ଜମିଦାର ଘରର ବୋହୂ । ସେ ଲେଖାରେ ମୋର ଭାଉଜ ହେବେ । ସେ କାମିନୀକାନ୍ତ ପାଢ଼ୀଙ୍କର ସ୍ତ୍ରୀ । ମୁଁ କିନ୍ତୁ ଏଥିପାଇଁ କୁଣ୍ଠୁକୁଣ୍ଠୁ ହେଉଥିଲି । କାରଣ ୧୯୪୨ ଗୁଳିକାଣ୍ଡରେ ଇରମ ହୋଇଥିଲା ଭାରତବର୍ଷରେ ଦ୍ୱିତୀୟ ଜାଲିଆନାୱାଲବାଗ । ଏଠାରେ ପୁଲିସ୍ ଗୁଳିରେ ୨୯ ଜଣ ମୃତ୍ୟୁବରଣ କରିଥିଲେ । ଗୁଳି କରିଥିବା ପୁଲିସମାନେ ପାଢ଼ୀଘର ବୈଠକଖାନାରେ ରହିଥିଲେ । ତେଣୁ ସେ ସମୟରେ ପାଢ଼ୀଘର ଉପରେ ପ୍ରବଳ ଜନ ଅସନ୍ତୋଷ ସୃଷ୍ଟି ହୋଇଥିଲା । ଏହି କାରଣରୁ ଜଗବନ୍ଧୁ ଦାସଙ୍କୁ ବାସୁଦେବପୁରରୁ ପ୍ରାର୍ଥୀ କରାଗଲା ।

୧୯୭୪ ମସିହା ଫେବୃୟାରୀ ମାସରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ନିର୍ବାଚନରେ କଂଗ୍ରେସ ଦଳ ୬୯ଟି ଆସନ ପାଇଥିଲା । ଉତ୍କଳ କଂଗ୍ରେସ ୩୫, ସ୍ୱତନ୍ତ୍ର ଦଳ ୨୧, କମ୍ୟୁନିଷ୍ଟ ଦଳ ୭, ମାର୍କସ୍‌ବାଦୀ କମ୍ୟୁନିଷ୍ଟଦଳ ୩, ସୋସାଲିଷ୍ଟ ଦଳ ୨, ଜନକଂଗ୍ରେସ ୧ ଓ ସ୍ୱାଧୀନ ପ୍ରାର୍ଥୀମାନେ ୮ଟି ସ୍ଥାନରେ ଜୟଯୁକ୍ତ ହୋଇଥିଲେ ।

ବାଲେଶ୍ୱର ଜିଲ୍ଲାର ନିର୍ବାଚନ ଫଳ ନିମ୍ନମତେ ହୋଇଥିଲା । ବିଜୟୀ ପ୍ରାର୍ଥୀମାନେ ହେଲେ- ଭୋଗରାଇରୁ କାର୍ତ୍ତିକେଶ୍ୱର ପାତ୍ର, ଜଳେଶ୍ୱରରୁ ଗଦାଧର ଗିରି, ବସ୍ତାରୁ ଚିନ୍ତାମଣି ଜେନା, ବାଲେଶ୍ୱରରୁ ଅରୁଣ ଦେ, ନୀଳଗିରିରୁ ରାଜେନ୍ଦ୍ରଚନ୍ଦ୍ର ହରିଚନ୍ଦନ ମର୍ଦ୍ଦରାଜ, ସୋରରୁ ମୁଁ, ବାସୁଦେବପୁରରୁ ଜଗବନ୍ଧୁ ଦାସ, ଭଦ୍ରକରୁ ଯୁଗଳକିଶୋର ପଟ୍ଟନାୟକ, ଚାନ୍ଦବାଲିରୁ ମନମୋହନ ଦାସ, ଭଣ୍ଡାରୀପୋଖରୀରୁ ବୈରାଗୀ ଜେନା, ସିମୁଳିଆରୁ ଶୈଳେନ୍ ମହାପାତ୍ର, ଧାମନଗରରୁ ହୃଦାନନ୍ଦ ମଲ୍ଲିକ ।

ଗଣତି ହୋଇଥିଲା ବାଲେଶ୍ୱର କଚେରି ପରିସରରେ । ଗଣତି ସରିବା ପରେ କଂଗ୍ରେସ ଲୋକେ ମୋ' ବେକକୁ ଫୁଲମାଳରେ ପୋତି ଦେଇଥିଲେ । ପରଦିନ ଭୁବନେଶ୍ୱର ଯାତ୍ରା । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ନବନିର୍ବାଚିତ ବିଧାୟକମାନେ ଭୁବନେଶ୍ୱରରେ ଆସି ହାଜର ।

ଅବିଭକ୍ତ ସମ୍ବଲପୁର ଜିଲ୍ଲାର ବିଧାୟକ ଡଃ କୃପାସିନ୍ଧୁ ଭୋଇ ୧୯୭୧ ମସିହା ବିଧାନସଭାରେ କଂଗ୍ରେସ ଦଳର ବିଧାୟକ ଥିଲେ । କଂଗ୍ରେସ ଓ ଉତ୍କଳ କଂଗ୍ରେସ ମିଶ୍ରଣ ପରେ ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳରେ ସେ ରାଷ୍ଟ୍ରମନ୍ତ୍ରୀ ଥିଲେ । ତାଙ୍କ ସହିତ ମୋର ଖୁବ୍ ଭଲ ସଂପର୍କ ଥିଲା । ଆମେ ଆମ ରହୁଥିବା ପୁରୁଣା ସରକାରୀ ଘର ଛାଡ଼ି ନଥିଲୁ । ଭୁବନେଶ୍ୱର ପହଞ୍ଚି ପ୍ରାୟ ଦିନ ଚାରିଟା ବେଳେ ମୁଁ ତାଙ୍କ ବାସଗୃହକୁ ଗଲି । ତାଙ୍କ ସ୍ତ୍ରୀ ବାଦାମ ରସୁଣ ପକେଇ ମୁଢ଼ି ଭାଜିଦେଲେ । ଦୁହେଁ ବସି ଖାଇଲୁ । କମ୍ୟୁନିଷ୍ଟ ଦଳ ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳକୁ ସମର୍ଥନ କରିବ । ପରଦିନ ବିଧାନସଭା ପରିସରରେ ଅନୁଷ୍ଠିତ କଂଗ୍ରେସ ବିଧାୟକମାନଙ୍କ ବୈଠକକୁ ଗଲୁ । ନନ୍ଦିନୀଦେବୀ ନିର୍ଦ୍ୱନ୍ଦ୍ୱରେ ନେତା ନିର୍ବାଚିତ ହେଲେ । ବିଧାୟକମାନଙ୍କ ମନରେ ଆନନ୍ଦର ଜୁଆର । ବୈଠକରୁ ଫେରି ପୁଣି ଡଃ ଭୋଇଙ୍କ ଘରେ କିଛି ସମୟ ବସି ମୋ ବାସଗୃହକୁ ଫେରିଲି । ଆସି ଦେଖିଲି ମୋ' ଘରେ ଅନେକ ଲୋକ । ଏମାନେ ସବୁ ସୋର ଅଞ୍ଚଳର । କକାପୁଅ ଭାଇ ଗୋଲକବାବୁ ସେମାନଙ୍କ ନେତୃତ୍ୱ ନେଇଥିଲେ । ସେମାନେ ଚାହାନ୍ତି ମୁଁ ମନ୍ତ୍ରୀ ହୁଏ । କିନ୍ତୁ ମନ୍ତ୍ରୀ ହେବା ତ ମୋ' ହାତର କଥା ନୁହେଁ । ମୁଖ୍ୟମନ୍ତ୍ରୀ ହେବା ପାଇଁ ଯେ ନେତା ନିର୍ବାଚିତ ହେଲେ, ସେ କାହାକୁ ମନ୍ତ୍ରୀ କରିବେ ଏହା ତାଙ୍କର ନିଷ୍ପତ୍ତି ଉପରେ ନିର୍ଭର କରେ । ସେହିଦିନ ୫ଟା ବେଳେ ନନ୍ଦିନୀଦେବୀ ରାଜ୍ୟପାଳଙ୍କୁ ମନ୍ତ୍ରିମଣ୍ଡଳର ତାଲିକା ଦେବା କଥା । ସୋରର ଲୋକମାନଙ୍କୁ ରହିବାକୁ କହି ମୁଁ ପୁଣି ଡଃ ଭୋଇଙ୍କ ଘରକୁ ଗଲି । ତାଙ୍କ ଘରେ ବି ଅନେକ ଲୋକ । ନିଷ୍ପତ୍ତି କଲୁ ନନ୍ଦିନୀଦେବୀଙ୍କୁ ଯାଇ ଦେଖା କରିବୁ । ପ୍ରାୟ ୩ଟା ବେଳେ ଆମେ ଗଲୁ । ନନ୍ଦିନୀଦେବୀଙ୍କ ବ୍ୟକ୍ତିଗତ ସହାୟକ ଥିବା ଦିଲ୍ଲୀ ସଚିବାଳୟର ସିଂବାବୁ ମୋତେ କହିଲେ- "ବର୍ତ୍ତମାନ ମେଡେମ୍‌ଙ୍କୁ ଦେଖା କରନ୍ତୁନି ।"

ମୁଁ କାରଣ ପଚାରିବାରୁ ସେ କହିଲେ- "ଶୈଳେନ୍ ମହାପାତ୍ର ଓ କାର୍ତ୍ତିକେଶ୍ୱର ପାତ୍ର ମେଡେମ୍‌ଙ୍କ ପାଖରେ ଅଛନ୍ତି । ସେମାନେ ମେଡେମ୍‌ଙ୍କୁ କହୁଥିଲେ- ବାଲେଶ୍ୱର ଜିଲ୍ଲାରୁ ଯାହାକୁ ଆପଣ ମନ୍ତ୍ରୀ କରିବେ କରନ୍ତୁ, କିନ୍ତୁ ଯଦୁବାବୁଙ୍କୁ କରନ୍ତୁନି ।

ମୁଁ କିଛି କହିବା ପୂର୍ବରୁ ସିଂ ପୁଣି କହିଲେ- ମେଡେମ୍ ତାଙ୍କୁ କହିଲେ- ମୋତେ ନେତା ବାଛିସାରିବା ପରେ, ମୁଁ କାହାକୁ ମନ୍ତ୍ରୀ କରିବି ନ କରିବି

ସେଇଟା ମୋ ଦାୟିତ୍ୱ । ଏଥିରେ କେହି ମୁଣ୍ଡ ପୂରାନ୍ତୁନି । ଡଃ ଭୋଇ ଶୁଣିଲେ ସମ୍ବଲପୁର ବିଧାୟକ ଶ୍ରୀବଲ୍ଲଭ ପାଣିଗ୍ରାହୀ ନନ୍ଦିନୀଦେବୀଙ୍କ ପାଖରେ ଅଛନ୍ତି । ସେ ବି ଆଉ ଯିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । ଯେମିତି ଯାଇଥିଲୁ ସେମିତି ପୁଣି ଗାଡ଼ିରେ ବସି ଡଃ ଭୋଇଙ୍କ ଘରକୁ ଫେରିଆସିଲୁ । ଉଭୟ ଚିନ୍ତାରେ ଭାରାକ୍ରାନ୍ତ । ୧୯୭୨ ମସିହା ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳରେ ଡଃ ଭୋଇ ଜଣେ ରାଷ୍ଟ୍ରମନ୍ତ୍ରୀ ଥିଲେ । ତେଣୁ ମନ୍ତ୍ରୀ ହେବାର ଆଶା ତାଙ୍କ ମନରୁ ଦୂରେଇ ଯାଇ ନଥିଲା । କିନ୍ତୁ ମୁଁ... ମୁଁ ବି ସଂପୂର୍ଣ୍ଣ ଭାବରେ ଆଶା ହରାଇ ନଥିଲି । ତାଙ୍କର ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ କାଳରେ କଟକ ଉପନିର୍ବାଚନରେ ମୁଁ ତାଙ୍କ ପାଖେ ପାଖେ ଥିଲି ଓ ତାଙ୍କୁ ଜିତେଇବା ପାଇଁ ଦୈନିକ ୧୭/୧୮ ଘଣ୍ଟା ପରିଶ୍ରମ କରୁଥିଲି । ଡଃ ଭୋଇଙ୍କ ପତ୍ନୀ ଆମ ପାଇଁ ମୁଢ଼ି ରସୁଣ ଭାଜି ପଠାଇ ଦେଲେ । ଆମେ ଖାଇଲୁ ।

ଆମ ଭାବନାର କେନ୍ଦ୍ରବିନ୍ଦୁ ଥିଲେ ନନ୍ଦିନୀଦେବୀ । ହଠାତ୍ ଡଃ ଭୋଇ କହିଲେ- "ଏଇଠି ବସି ଆମେ ଜାଣିପାରିବା ।"

ମୁଁ ପଚାରିଲି- "ଏଠି ଆମକୁ କିଏ କହିବ ?"

ସେ କହିଲେ ୫ଟା ବେଳକୁ ରାଜ୍ୟପାଳଙ୍କୁ ତାଲିକା ଦିଆଯିବା ପରେ କଟକ ଆକାଶବାଣୀର ୬ଟା ୨୦ମିନିଟ୍ ଆଞ୍ଚଳିକ ସମ୍ବାଦରେ ନିଶ୍ଚୟ ନାଆଁ ସବୁ କହିବ ।

ସେତେବେଳେ ଦୂରଦର୍ଶନ ନଥିବାରୁ ଆମକୁ ରେଡ଼ିଓ ଉପରେ ନିର୍ଭର କରିବାକୁ ପଡୁଥିଲା । ଡଃ ଭୋଇ ଘର ଭିତରକୁ ଉଠିଯାଇ ଛୋଟ ରେଡ଼ିଓଟେ ଆଣି କଟକ ଷ୍ଟେସନ ଲଗାଇ ଦେଲେ । ମୋତେ କହିଲେ- "ଯଦୁବାବୁ ! ତମେ ରେଡ଼ିଓ ଶୁଣୁଥାଅ । ମୁଁ ଆମ ଲୋକଙ୍କ ସହିତ କଥାବାର୍ତ୍ତା କରୁଚି । ଆଞ୍ଚଳିକ ସମ୍ବାଦ ବେଳକୁ ଡାକିଦେବ ।"

୬ଟା ୨୦ ବାଜିଲା । ଆଞ୍ଚଳିକ ସମ୍ବାଦ । ଡଃ ଭୋଇ ଆସି ବସିଗଲେ । ତାଙ୍କ ଲୋକମାନେ ବି ଆସି ଜମା ହୋଇଗଲେ । ପ୍ରଥମରୁ ହିଁ ଶୁଣିବାକୁ ମିଳିଲା ମନ୍ତ୍ରୀ ହେବା ପାଇଁ ତାଲିକାଭୁକ୍ତ ନାମଗୁଡ଼ିକ । କେବିନେଟ୍ ମନ୍ତ୍ରୀ ତାଲିକାରେ ମୋ ନାଆଁ ଓ ରାଷ୍ଟ୍ରମନ୍ତ୍ରୀ ତାଲିକାରେ ଡଃ ଭୋଇଙ୍କ ନାଆଁ ଥିଲା । ଦୁହେଁଯାକ ଆନନ୍ଦରେ ଚାଲିଲୁ ନନ୍ଦିନୀଦେବୀଙ୍କ ବାସଭବନକୁ । ତାଙ୍କ ଘରେ ଗାଡ଼ି ଜମା

ହେବାକୁ ଆରମ୍ଭ କଲାଣି । ସାମ୍ନା ପିଣ୍ଡାରେ ସିଂବାବୁ ଠିଆ ହୋଇଥିଲେ । ଆମକୁ ଦେଖି ହସି ହସି କହିଲେ- "ଏଇ ଘରେ ବସିଛନ୍ତି, ଯାଆନ୍ତୁ ।"

ଆମେ ଘର ଭିତରକୁ ପଶିଗଲୁ । ଶ୍ରୀବଲ୍ଲଭ ପାଣିଗ୍ରାହୀ ଓ ଲକ୍ଷ୍ମଣ ମଲ୍ଲିକ ଉପସ୍ଥିତ ଥିଲେ । ସେ ଦୁଇଜଣ ବି କେବିନେଟ୍ ମନ୍ତ୍ରୀ ହେବେ । ଆମେ ନନ୍ଦିନୀଦେବୀଙ୍କୁ ନମସ୍କାର କରିବା ମାତ୍ରେ ସେ କହିଲେ- "ଆଗ ରସଗୋଲା ଖାଆନ୍ତୁ ।"

ଘର ମଝିରେ ଗୋଟାଏ ଛୋଟ ଗୋଲାକାର ଟେବୁଲ୍ ଉପରେ ଥାଳିରେ ରସଗୋଲା ଥିଲା । ଆମେ ଗୋଟେ ଗୋଟେ ଆଣି ଖାଇ ବସିଗଲୁ । ପହଞ୍ଚିଲେ ବ୍ରଜମୋହନ ମହାନ୍ତି ଓ ମନ୍ତ୍ରୀ ତାଲିକାଭୁକ୍ତ ଆଉ କିଛି ନେତା । ବେଶ୍ ଖୁସିଗପ ଚାଲିଲା । ସେଇଠି ଆମକୁ ଧରେଇ ଦିଆଗଲା ରାଜଭବନକୁ ଯାଇ ଶପଥ ନେବାର ନିମନ୍ତ୍ରଣ । କାଲି ଦିନ ୧୦ଟା ବେଳେ ଶପଥ ଗ୍ରହଣ ଉତ୍ସବ । ନନ୍ଦିନୀଦେବୀଙ୍କ ଘରୁ ବାହାରି ଆସିବା ସମୟରେ ଦ୍ୱାର ପାଖରେ ଠିଆ ହୋଇଥିବା ତାଙ୍କ ପତି ଦେବେନ୍ଦ୍ର ଶତପଥୀ ଆମ୍ଭମାନଙ୍କ ସହ କରମର୍ଦ୍ଦନ କରି ଆମ୍ଭମାନଙ୍କୁ ବିଦାୟ ଦେଲେ ।

ତା ୬।୩।୧୯୭୪ରିଖ ଦିନ ରାଜ୍ୟପାଳ ବି.ଡି. ଜତ୍ତି ଆମ୍ଭମାନଙ୍କୁ ଶପଥପାଠ କରେଇଥିଲେ । ଯେଉଁମାନେ ଶପଥ ନେଲେ ସେମାନେ ହେଲେ- ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ; କେବିନେଟ୍ ମନ୍ତ୍ରୀ ବିନାୟକ ଆଚାର୍ଯ୍ୟ, ବାଙ୍କବିହାରୀ ଦାସ, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଲକ୍ଷ୍ମଣ ମଲ୍ଲିକ ଓ ମୁଁ ।

ରାଷ୍ଟ୍ରମନ୍ତ୍ରୀ ଭାବରେ ଯେଉଁମାନେ ଶପଥ ନେଲେ, ସେମାନେ ହେଲେ- ମୋହନ ନାୟକ, ରାମଚନ୍ଦ୍ର ଉଲାକା, କାହ୍ନୁଚରଣ ଲେଙ୍କା, ଡଃ କୃପାସିନ୍ଧୁ ଭୋଇ, ଭାଗୀରଥି ଗମାଙ୍ଗ, ଦିବ୍ୟଲୋଚନ ଶେଖର ଦେଓ, ବ୍ରହ୍ମାନନ୍ଦ ବିଶ୍ୱାଳ, ଡଃ ବେଣୁଧର ବଳିୟାରସିଂ ଓ ଉପମନ୍ତ୍ରୀ ଭାବରେ ୩ ଜଣ ଶପଥ ନେଲେ; ସେମାନେ ହେଲେ ଜଗନ୍ନାଥ ପଟ୍ଟନାୟକ, ଶେଖ୍ ମତ୍‌ଲୁବ୍ ଅଲ୍ଲୀ ଓ କୁଆଁରିଆ ମାଝୀ ।

ଶପଥ ଗ୍ରହଣ ପରେ ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଆମେ ସମସ୍ତେ ଚାଲି ଚାଲି ସଚିବାଳୟକୁ ଆସିଲୁ । ସଚିବାଳୟ ମୁଖ୍ୟ ଫାଟକ ପାଖରେ ସଚିବାଳୟ କର୍ମଚାରୀମାନଙ୍କର ଆମ୍ଭମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା । ସେମାନେ ଆମ୍ଭମାନଙ୍କୁ ସଚିବାଳୟ ଭିତରକୁ ପାଛୋଟି ନେଲେ । ଆମ୍ଭେମାନେ ଯାଇ ମୁଖ୍ୟମନ୍ତ୍ରୀଙ୍କ

ପାଖରେ ବସିଲୁ । ସେ ଆମ୍ଭମାନଙ୍କୁ ଆମ ଦାୟିତ୍ୱ ବଣ୍ଟନ କଲେ । ମୋ ପାଖରେ ରହିଲା ଶିକ୍ଷା, ସଂସ୍କୃତି ଓ ଯୁବବ୍ୟାପାର ବିଭାଗ । ସଂସ୍କୃତି ବିଭାଗରେ ପର୍ଯ୍ୟଟନ ଓ କ୍ରୀଡ଼ା ବିଭାଗ ଅନ୍ତର୍ଭୁକ୍ତ ଥିଲା । ସେତେବେଳେ ଶିକ୍ଷା ବିଭାଗର ବିଭକ୍ତିକରଣ ହୋଇ ନଥିଲା । ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ମୋ ଦାୟିତ୍ୱରେ ରହିଲା । ମୋ ପାଖରେ ଦୁଇଜଣ ଉପମନ୍ତ୍ରୀ ରହିଲେ । ସେମାନେ ହେଲେ ଜଗନ୍ନାଥ ପଟ୍ଟନାୟକ ଓ ଶେଖ୍ ମତ୍‌ଲୁବ୍ ଅଲ୍ଲୀ ।

୧୯୭୪ ମସିହା ଅଗଷ୍ଟ ୨୦ ତାରିଖରେ ରାଜ୍ୟପାଳ ଜଟ୍ଟି ଇସ୍ତଫା ଦେଇ ଚାଲିଗଲେ । ତାଙ୍କ ସ୍ଥାନରେ ଆକ୍‌ବର ଅଲ୍ଲୀ ଖାଁ ରାଜ୍ୟପାଳ ହୋଇ ଆସିଲେ । ମୋର ବ୍ୟକ୍ତିଗତ ସଚିବ ହୋଇ ଆସିଲେ ଭଦ୍ରକ ଅଞ୍ଚଳର କାର୍ତ୍ତିକ ଚନ୍ଦ୍ର ଦାସ । ଶିକ୍ଷା ବିଭାଗର ସଚିବ ଥିଲେ ଉତ୍ତର ବାଲେଶ୍ୱର ଜଳେଶ୍ୱର ଅଞ୍ଚଳର ହେରମ୍ବ ନାରାୟଣ ଦାସ ମହାପାତ୍ର ଆଇ.ଏ.ଏସ୍ । ଶିକ୍ଷା ବିଭାଗର ଥିଲେ ବିଧୁଭୂଷଣ ଦାସ । ମୁଁ ରେଭେନ୍‌ସା କଲେଜରେ ପଢୁଥିବାବେଳେ ସେ ଥିଲେ ସେଠାରେ ଇଂରାଜୀ ଅଧ୍ୟାପକ । ମୁଁ ତାଙ୍କର ଛାତ୍ର ଥିଲି । ସଂସ୍କୃତି ବିଭାଗର ସଚିବ ଥିଲେ ଅଓ୍ୟାଧ ନାରାୟଣ ତିଓ୍ୱାରୀ ।

ସେତେବେଳେ ସଂସ୍କୃତି ବିଭାଗର ମନ୍ତ୍ରୀ ଭାବରେ ମୁଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଓ ଓଡ଼ିଶା ଲଳିତକଳା ଏକାଡ଼େମୀର ସଭାପତି ଥିଲି । ପରବର୍ତ୍ତୀ ସମୟରେ ମୁଖ୍ୟମନ୍ତ୍ରୀ ଗଙ୍ଗାଧର ମହାପାତ୍ର (ଗଙ୍ଗୁ ଭାଇନା)ଙ୍କୁ ଖାଦ୍ୟ ଓ ସଂସ୍କୃତି ବିଭାଗର ଦାୟିତ୍ୱ ଦେଲେ । ଗଙ୍ଗାଧରବାବୁ ସଂସ୍କୃତି ବିଭାଗର ମନ୍ତ୍ରୀ ଭାବରେ ତିନି ଏକାଡ଼େମୀର ସଭାପତି ରହିଲେ ।



# ନନ୍ଦିନୀଦେବୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳର ଘଟଣା

ନନ୍ଦିନୀଦେବୀଙ୍କର ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ ୧୪।୬।୧୯୭୨ରୁ ୩।୩।୭୩ ପର୍ଯ୍ୟନ୍ତ । ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀତ୍ୱ ୬।୩।୧୯୭୪ରୁ ୧୨।୧୨।୭୬ ପର୍ଯ୍ୟନ୍ତ । ଏହି ସମୟରେ ଘଟିଥିବା କେତେଙ୍କ ଘଟଣା ଅନେକଙ୍କୁ ତଟସ୍ଥ କରିଥିଲା । ଜୟପ୍ରକାଶ ନାରାୟଣ ସେତେବେଳେ ଜନସଂଘର୍ଷ ସମିତି ନେତୃତ୍ୱରେ ଭାରତବର୍ଷରେ ଗଣ ଆନ୍ଦୋଳନର ଡାକରା ଦେଇଥିଲେ । ବିଭିନ୍ନ ରାଜ୍ୟ ଗସ୍ତ କରି ସଭାସମିତି ଜରିଆରେ କଂଗ୍ରେସ ସରକାରଙ୍କ ବିରୁଦ୍ଧରେ ଲୋକମାନଙ୍କୁ ଉତ୍ତେଜିତ କରୁଥିଲେ ।

୧୯୭୫ ମସିହା ମାର୍ଚ୍ଚ ମାସ ତିରିଶ ତାରିଖ ସକାଳେ ସେ ବମ୍ବେ ମେଲ୍‌ରେ ଆସି ଝାରସୁଗୁଡ଼ା ଷ୍ଟେସନରେ ଓହ୍ଲାଇଥିଲେ । ତାଙ୍କୁ ସ୍ୱାଗତ କରିବା ପାଇଁ ଓଡ଼ିଶାର ବହୁ ତୁଙ୍ଗ ନେତା ସେଠାରେ ଉପସ୍ଥିତ ଥିଲେ । ସେମାନେ ହେଲେ- ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ପବିତ୍ରମୋହନ ପ୍ରଧାନ୍, ବିଜୟ କୁମାର ପାଣି, ନୀଳମଣି ରାଉତରାୟ, କିଷାନ୍ ପଟ୍ଟନାୟକ, ରବି ରାୟ ଓ ମନମୋହନ ଚୌଧୁରୀ ପ୍ରମୁଖ । ଝାରସୁଗୁଡ଼ାରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ସଭା ସାରି ଜୟପ୍ରକାଶ ସମ୍ବଲପୁର ଯାଇଥିଲେ । ଯିବା ବାଟରେ ଖଣି ରାଷ୍ଟ୍ରମନ୍ତ୍ରୀ ଡଃ କୃପାସିନ୍ଧୁ ଭୋଇଙ୍କ ନେତୃତ୍ୱରେ କଂଗ୍ରେସ ଲୋକମାନେ ତାଙ୍କୁ କଳା ପତାକା ପ୍ରଦର୍ଶନ କରିଥିଲେ । ସଂଧ୍ୟାରେ ସମ୍ବଲପୁର ସଭା ଶେଷ କରି ସେ ଅନୁଗୁଳ ଆସି ନବକୃଷ୍ଣ ଚୌଧୁରୀଙ୍କ ଆଶ୍ରମରେ ରାତ୍ରିଯାପନ କରି ୩୧ ତାରିଖ ସକାଳେ କଟକ ଅଭିମୁଖେ ବାହାରିଲେ । ବାଟରେ ଢେଙ୍କାନାଳରେ ସଭା କରି କଟକ ଆସିବେ ଓ କଟକରେ ସଭା ଶେଷ କରିବେ । ଢେଙ୍କାନାଳଠାରେ ଗଁଦିଆ ବିଧାୟକ ସୁଲେଖକ ଶ୍ରୀବତ୍ସ ନାୟକଙ୍କ ନେତୃତ୍ୱରେ ସଭାସ୍ଥଳରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ପୁଲିସର

ହସ୍ତକ୍ଷେପ ଫଳରେ ସଭା ହୋଇପାରିଥିଲା । ଢେଙ୍କାନାଳ ଥିଲା ନନ୍ଦିନୀଦେବୀଙ୍କ ନିର୍ବାଚନମଣ୍ଡଳୀ । ତେଣୁ ସେଠାରେ ସଭା କରାଇ ନ ଦେବା ଥିଲା କଂଗ୍ରେସ ଲୋକଙ୍କର ଲକ୍ଷ୍ୟ । ସେଠାକାର ସଭା ଶେଷ ପରେ ଜୟପ୍ରକାଶ ନାରାୟଣ କଟକ ଆସିଲେ ।

କଟକରେ ବାରବାଟୀ ଦୁର୍ଗ ପାଖରେ ଥିବା ବାଲିଯାତ୍ରା ପଡ଼ିଆରେ ସଭା କରିଥିଲେ । ଏହି ସଭାରେ ପ୍ରାୟ ଏକଲକ୍ଷ ଲୋକ ଯୋଗଦେଇଥିଲେ । ସଭା ପରେ ସେ ଭୁବନେଶ୍ୱର ଯାଇ ରାଜ୍ୟ ସରକାରଙ୍କ ଅତିଥି ଭବନରେ ରାତ୍ରିଯାପନ କରିଥିଲେ । ପରଦିନ ସଚିବାଳୟ ସାମ୍ନା ପଡ଼ିଆ ବର୍ତ୍ତମାନ ଯେଉଁଠାରେ ଇନ୍ଦିରା ପାର୍କ ହୋଇଛି ସେହିଠାରେ ତାଙ୍କର ସଭା ହେବା କଥା । ସେଠାରେ ଜୟପ୍ରକାଶ ସଭା କଲେ, ତାଙ୍କ ଭାଷଣ ଶୁଣିବାକୁ ବାହାରୁ ଯେତେ ତ ଆସିବେ, କିନ୍ତୁ ସଚିବାଳୟ ଖାଲି ହେଇଯିବ, ସବୁ ଦଉଡ଼ିବେ ତାଙ୍କୁ ଶୁଣିବା ପାଇଁ । ଜୟପ୍ରକାଶଙ୍କ ଭାଷଣ ଶ୍ରୋତା ଓ ଶ୍ରୋତ୍ରୀମାନଙ୍କୁ ଉତ୍ତେଜିତ କରିବ । ଏହାକୁ ରୋକିବା ପାଇଁ ସରକାରୀ ସ୍ତରରେ ସ୍ଥିର କରାଗଲା ଯେ ସେ ପଡ଼ିଆରେ ତାଙ୍କୁ ସଭା କରିବାକୁ ଦିଆଯିବ ନାହିଁ । ସେ ଦିବସରେ ସେ ପଡ଼ିଆରେ ଉତ୍କଳ ଦିବସ ପାଳନ କରିବା ପାଇଁ ଏକ ଉତ୍ସବର ଆୟୋଜନ ସରକାର କରିବେ । ତାହାହିଁ ହେଲା । ୧୯୩୬ ମସିହା ଏପ୍ରିଲ ପହିଲାରେ ତତ୍କାଳୀନ ଇଂରେଜ ସରକାର ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପ୍ରଦାନ କରିଥିଲେ । ତାହା ପୂର୍ବରୁ ଓଡ଼ିଶା ବିହାର ପ୍ରଦେଶ ସହିତ ସଂଲଗ୍ନ ଥିଲା । ଏକାମ୍ରର ଇଉନିଟ୍ ପଡ଼ିଆରେ ଜୟପ୍ରକାଶଙ୍କ ସଭା ହେଲା ।

ଜୟପ୍ରକାଶ ନାରାୟଣ ଅତିଥି ଭବନରେ ଥିବାବେଳେ ପୂର୍ବତନ ସାମ୍ୟବାଦୀ ନେତା ରାଜସ୍ୱମନ୍ତ୍ରୀ ବାଙ୍କବିହାରୀ ଦାସ ତାଙ୍କୁ ସାକ୍ଷାତ କରିଥିଲେ । ସାମ୍ୟବାଦୀ ଦଳରେ ଥିବାବେଳେ ବାଙ୍କବାବୁ ତାଙ୍କର ଘନିଷ୍ଠ ସଂପର୍କରେ ଆସିଥିଲେ । ଏହି ସାକ୍ଷାତ ବାଙ୍କବାବୁଙ୍କ ପାଇଁ ଅଶୁଭସୂଚକ ହୋଇଥିଲା । ମୁଖ୍ୟମନ୍ତ୍ରୀ ତାଙ୍କୁ ମନ୍ତ୍ରିମଣ୍ଡଳରୁ ବିଦାୟ ଦେଇଥିଲେ ।

ଜତ୍ତିଙ୍କ ପରେ ରାଜ୍ୟପାଳ ହୋଇ ଆସିଥିବା ଆକ୍‌ବର ଅଲ୍ଲୀଖାଁ ଜୟପ୍ରକାଶଙ୍କର ଜଣେ ପୁରୁଣା ବନ୍ଧୁ । ସେଥିପାଇଁ ସେ ଜୟପ୍ରକାଶଙ୍କୁ ରାଜଭବନରେ ଖାଇବା ପାଇଁ ନିମନ୍ତ୍ରଣ କରିଥିଲେ । ଜୟପ୍ରକାଶ ନିମନ୍ତ୍ରଣ ରକ୍ଷା କରି ରାଜଭବନକୁ

ଯାଇଥିଲେ ଓ ରାଜ୍ୟପାଳଙ୍କ ସହିତ ଭୋଜନ କରିଥିଲେ । ମୁଖ୍ୟମନ୍ତ୍ରୀ ଏଥିପାଇଁ ଭୀଷଣ ଅସନ୍ତୁଷ୍ଟ ହୋଇଥିଲେ ।

ଏହି ସମୟରେ ଦିଲ୍ଲୀ ରାଜନୀତିରେ ଅନେକ ହଟଚମଟ ସୃଷ୍ଟି ହୋଇଥିଲା । ୧୯୭୧ ମସିହା ଲୋକସଭା ନିର୍ବାଚନରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଉତ୍ତରପ୍ରଦେଶ ରାଇବରେଲୀ ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇଥିଲେ । ତାଙ୍କ ସହିତ ପ୍ରତିଦ୍ୱନ୍ଦିତା କରି ପରାଜିତ ହୋଇଥିବା ରାଜନାରାୟଣ ନିର୍ବାଚନକୁ ଅସିଦ୍ଧ ଘୋଷଣା କରିବା ପାଇଁ ଏହ୍ଲାବାଦ ହାଇକୋର୍ଟରେ ଏକ ମୋକଦ୍ଦମା ଦାଏର୍ କରିଥିଲେ । ତା ୧୨।୬।୧୯୭୫ରିଖ ଦିନ ଏହି ମୋକଦ୍ଦମାର ରାୟ ପ୍ରକାଶ ପାଇଥିଲା । ମାନ୍ୟବର ବିଚାରପତି ଜଗମୋହନ ଲାଲ୍ ସିହ୍ନା ଶ୍ରୀମତୀ ଗାନ୍ଧିଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଥିଲେ । ଏହାପରେ ତା ୨୫।୬।୧୯୭୫ରିଖ ଦିନ ଶ୍ରୀମତୀ ଗାନ୍ଧି ରାଷ୍ଟ୍ରପତିଙ୍କ ଦ୍ୱାରା ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଇଥିଲେ । ଦେଶର ଆଭ୍ୟନ୍ତରୀଣ ନିରାପତ୍ତା ପ୍ରତି ବିପଦ ରହିଛି ଯୁକ୍ତିରେ ଏହା କରାଯାଇଥିଲା । ଶ୍ରୀମତୀ ଗାନ୍ଧିଙ୍କୁ ବିରୋଧ କରୁଥିବା ବହୁ ନେତାଙ୍କୁ ଗିରଫ କରାଯାଇ ଜେଲ୍‌ରେ ରଖାଯାଇଥିଲା । ଓଡ଼ିଶାରେ ହରେକୃଷ୍ଣ ମହତାବଙ୍କ ସମେତ ଅନେକ ନେତା ଗିରଫ ହୋଇଥିଲେ । ବିଜୁ ପଟ୍ଟନାୟକ ଦିଲ୍ଲୀରେ ଗିରଫ ହୋଇଥିଲେ । ଲୋକଦଳରେ ଥିବା ନୀଳମଣି ରାଉତରାୟଙ୍କୁ ଗିରଫ କରାଯାଇ ନଥିଲା । ତାଙ୍କୁ କାହିଁକି ଗିରଫ କରାଗଲା ନାହିଁ ସେ ସଂପର୍କରେ କିଛି ଗୁଜବ ମଧ୍ୟ ଶୁଣିବାକୁ ମିଳୁଥିଲା । ନନ୍ଦିନୀଦେବୀଙ୍କ ସହ ଗୋପନ ବୁଝାମଣା କରି ସେ ଗିରଫକୁ ଏଡ଼ାଇ ଦେଉଛନ୍ତି ବୋଲି କେତେକ କହୁଥିଲେ । ସେ ଯାହାହେଉ ସେ ଗିରଫ ନ ହେବାଟା ରହସ୍ୟ ଘେରରେ ରହିଗଲା ।

ମହତାବଙ୍କ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ପ୍ରତିବର୍ଷ ବିଷୁବ ସଂକ୍ରାନ୍ତି ସମୟରେ କଟକର ବିହାରୀବାଗସ୍ଥ ପ୍ରଜାତନ୍ତ୍ର ପରିସରରେ ବିଷୁବ ମିଳନ ଅନୁଷ୍ଠିତ ହୁଏ । ୧୯୭୬ ବିଷୁବ ମିଳନ ଉତ୍ସବକୁ ରାଜ୍ୟପାଳ ଆକ୍‌ବର ଅଲ୍ଲୀ ଖାଁ ନିମନ୍ତ୍ରିତ ହୋଇ ଯାଇଥିଲେ । ୧୪।୪।୧୯୭୬ର ଉତ୍ସବରେ ସେ ପୌରୋହିତ୍ୟ କରିଥିଲେ । ତାଙ୍କର ଏଇ ଯିବାଟା ତାଙ୍କ ପାଇଁ କାଳ ହେଲା । ମୁଁ ପ୍ରତ୍ୟେକ ବର୍ଷ ଯାଉଥିଲି ଏବଂ ସେଦିନ ମଧ୍ୟ ଯାଇଥିଲି । ରାଜ୍ୟପାଳ ତାଙ୍କ ଭାଷଣରେ ଜୟପ୍ରକାଶ ନାରାୟଣଙ୍କ ସ୍ୱଦେଶ ପ୍ରୀତି ଓ କର୍ମ-ତତ୍ପରତା ସଂପର୍କରେ କେତେକ କଥା

କହିଥିଲେ । ଏହି ଘଟଣା ପରେ ନନ୍ଦିନୀଦେବୀ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କୁ କହି ରାଷ୍ଟ୍ରପତିଙ୍କ ଦ୍ୱାରା ତାଙ୍କୁ ରାଜ୍ୟପାଳ ପଦରୁ ବିଦାୟ ଦେଇଥିଲେ । ବିଷୁବ ମିଳନର ତିନିଦିନ ପରେ ଏହା ଘଟିଥିଲା । ଓଡ଼ିଶା ହାଇକୋର୍ଟର ତତ୍କାଳୀନ ପ୍ରଧାନ ବିଚାରପତି ଶିବନାରାୟଣ ଶଙ୍କର ତାଙ୍କଠାରୁ ଦାୟିତ୍ୱ ନେଇଥିଲେ ।

ସେ ସମୟର ଆଉ ଏକ ଘଟଣା ଆଜି ବି ମୋ ସ୍ମୃତିପଟରେ ଜୀବନ୍ତ ଅଛି । ସେତେବେଳେ ମୁଖ୍ୟ ଶାସନ ସଚିବ ଥା'ନ୍ତି ଭି.ଏସ୍. ମାଥ୍ୟୁସ୍ । କେତେକ କାରଣରୁ ନନ୍ଦିନୀଦେବୀ ତାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ସେ ରାଜ୍ୟସ୍ତରୀୟ ଅଫିସର ହୋଇଥିଲେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ସହଜ ହୋଇଥାନ୍ତା । କିନ୍ତୁ ସେ ଜଣେ କେନ୍ଦ୍ରସ୍ତରୀୟ ଆଇ.ଏ.ଏସ୍. (Indian Administrativc Service) ଅଫିସର ହୋଇଥିବାରୁ ତାଙ୍କ ବିରୁଦ୍ଧରେ କେନ୍ଦ୍ର ସରକାରଙ୍କ ନିକଟରେ ଅଭିଯୋଗ କରାଯାଇଥିଲା । କେନ୍ଦ୍ର ସରକାରଙ୍କ ଆଦେଶରେ ସେ ବାଧ୍ୟତାମୂଳକ ଅବସର ନେଇଥିଲେ ।

ନନ୍ଦିନୀଦେବୀ ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ କେନ୍ଦ୍ରରେ 'ଉପମନ୍ତ୍ରୀ, 'ରାଷ୍ଟ୍ରମନ୍ତ୍ରୀ ରୂପେ ଦାୟିତ୍ୱ ସଂପାଦନ କରିଥିଲେ । ଶାସନ କରିବାର ଦକ୍ଷତା ତାଙ୍କର ଥିଲା । ସେ ଥିଲେ ଜଣେ ପ୍ରଗତିଶୀଳା, ତୀକ୍ଷ୍ଣବୁଦ୍ଧି ସଂପନ୍ନା, ନିର୍ଭୀକା ନେତ୍ରୀ । ତାଙ୍କ ସମୟରେ ଶାସନ ବ୍ୟବସ୍ଥାରେ ଶୃଙ୍ଖଳା ବୃଦ୍ଧି ପାଇଥିଲା । ତାଙ୍କରି ସମୟରେ ଦାମୋଦର ଓ ସୁବର୍ଣ୍ଣରେଖା ନଦୀଜଳ ବଣ୍ଟନର ଐତିହାସିକ ଚୁକ୍ତି ସମ୍ପାଦିତ ହୋଇଥିଲା । ତାଙ୍କରି ସମୟରେ ହରିଜନ ଓ ଆଦିବାସୀମାନଙ୍କ ପାଇଁ ଥଇଥାନର ବ୍ୟବସ୍ଥା, ଅସହାୟ ଦରିଦ୍ରମାନଙ୍କୁ ବାର୍ଦ୍ଧକ୍ୟଭତ୍ତା ପ୍ରଦାନ, ଗରିବ ଲୋକମାନଙ୍କୁ ସମବାୟ ଋଣର ବ୍ୟବସ୍ଥା, ଯୌତୁକ-ବିରୋଧୀ ଅଭିଯାନ, ଜଳସେଚନ ପାଇଁ କୂପ ଖନନ ପ୍ରଭୃତି କାର୍ଯ୍ୟମାନ କରାଯାଇଥିଲା । ଏତଦ୍‌ଭିନ୍ନ ବିଭିନ୍ନ ବିଭାଗରେ ମଧ୍ୟ ବହୁ କାର୍ଯ୍ୟକ୍ରମ କରାଯାଇଥିଲା । ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ପାରାଦ୍ୱୀପଠାରେ ସାର କାରଖାନାର ଶୁଭ ପ୍ରଦାନ, ଧାନମଣ୍ଡଳଠାରେ ଝୋଟକଳ ଓ ଅନ୍ୟାନ୍ୟ ବହୁ ପ୍ରକଳ୍ପର ଶୁଭାରମ୍ଭ, ଶିମୁଳିପାଳ ବ୍ୟାଘ୍ର ସଂରକ୍ଷଣ କାର୍ଯ୍ୟକ୍ରମ, ଜଳସେଚନ ପାଇଁ କେନାଲ ମାଧ୍ୟମରେ ବ୍ୟବସ୍ଥା, ଜିଲ୍ଲା ହସ୍ପିଟାଲମାନଙ୍କରେ ରୋଗୀଶଯ୍ୟା ବୃଦ୍ଧି ଓ ବହୁ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଉନ୍ନତିବିଧାନ କରାଯାଇଥିଲା ।

ତାଙ୍କରି ମୁଖ୍ୟମନ୍ତ୍ରୀତ୍ୱ କାଳରେ ମୁଁ ଢେଙ୍କାନାଳ ଜିଲ୍ଲା ଦାୟିତ୍ୱରେ ଥିଲି । ଥରେ ମୁଖ୍ୟମନ୍ତ୍ରୀ ଓ ମୁଁ ଢେଙ୍କାନାଳ ସହରର ଏକ ଶିକ୍ଷାନୁଷ୍ଠାନର ଉତ୍ସବରେ

ଯୋଗଦେବାକୁ ଯାଇଥିଲୁ । ସେଠାକାର ଛାତ୍ରୀମାନେ ଢେଙ୍କାନାଳରେ ଏକ ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ନନ୍ଦିନୀଦେବୀଙ୍କୁ କହିଥିଲେ । ନନ୍ଦିନୀଦେବୀ ତାଙ୍କୁ କହିଥିଲେ- "ଯାହାଙ୍କ ଦ୍ୱାରା ତାହା ହୋଇପାରିବ, ମୋ' ପାଖରେ ବସିଥିବା ତାଙ୍କୁ କୁହ ।" ସେମାନେ ମୋତେ କହିଲେ ।

ମୁଁ ସେମାନଙ୍କୁ କହିଲି- "ଯଦି ମହିଳା ମହାବିଦ୍ୟାଳୟ କରାଯାଏ, ତା'ର ନାମ କ'ଣ ରଖିବା ପିଲାମାନେ କୁହ ।"

ତାଙ୍କ ଭିତରୁ ଜଣେ କହିଲା- "ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ନାମରେ ତାହା କରାଯାଉ ।"

ମୁଁ କହିଲି- "ବଢ଼ିଆ ପ୍ରସ୍ତାବ । ଏହି ଶିକ୍ଷାବର୍ଷରେ ତାହା କରାଯିବ ।" ପିଲାମାନେ ଖୁସିରେ ବହୁତ ତାଳି ମାରିଲେ ।

ଢେଙ୍କାନାଳରୁ ଫେରିବା ପରେ ସେଠାରେ ଓ ଅନ୍ୟ ଏକ ମହିଳା କଲେଜ ବାରିପଦାଠାରେ ପ୍ରତିଷ୍ଠା କରାଯିବାର ନିଷ୍ପତ୍ତି ନିଆଗଲା ଓ ପରବର୍ତ୍ତୀ ଶିକ୍ଷାବର୍ଷଠାରୁ ଆରମ୍ଭ କରାଗଲା । ଢେଙ୍କାନାଳ ମହିଳା ମହାବିଦ୍ୟାଳୟର ନାମ ରଖାଗଲା ନନ୍ଦିନୀଦେବୀ ମହିଳା ମହାବିଦ୍ୟାଳୟ ଓ ବାରିପଦା ମହାବିଦ୍ୟାଳୟର ନାମ ରଖାଗଲା ଇନ୍ଦିରାଗାନ୍ଧି ମହିଳା ମହାବିଦ୍ୟାଳୟ ।

ନନ୍ଦିନୀଦେବୀ ମହିଳା ମହାବିଦ୍ୟାଳୟର ସ୍ଥାୟୀଗୃହ କେଉଁ ଜାଗାରେ ହେବ ସେ ସଂପର୍କରେ ସ୍ଥାନ ନିରୂପଣ ପାଇଁ ଢେଙ୍କାନାଳ ସହରରେ କିଛି ସ୍ଥାନ ଦେଖାଯାଇଥିଲା । ମୁଁ ମଧ୍ୟ ସ୍ଥାନ ନିରୂପଣ ଅଭିଯାନରେ ସଂପୃକ୍ତ ହୋଇଥିଲି । ବର୍ତ୍ତମାନ ମହାବିଦ୍ୟାଳୟଟି ଯେଉଁ ସ୍ଥାନରେ ଅଛି ସେହି ସ୍ଥାନଟିକୁ ଠିକ୍ କରାଯାଇଥିଲା । ୧୯୭୭ ମସିହାରେ ନୀଳମଣି ରାଉତରାୟଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଏହି ମହାବିଦ୍ୟାଳୟର ନାମରୁ ନନ୍ଦିନୀଦେବୀଙ୍କ ନାମକୁ କାଟି ଦିଆଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କର ଏତାଦୃଶ କାର୍ଯ୍ୟ ମୋତେ ବିସ୍ମିତ କରିଥିଲା । ଭାରତବର୍ଷରେ ତଥା ଓଡ଼ିଶାରେ ବହୁ ଅନୁଷ୍ଠାନ ବ୍ୟକ୍ତିବିଶେଷଙ୍କ ନାମରେ ନାମିତ ହୋଇଛି । ବାଲେଶ୍ୱର ଜିଲ୍ଲା ରୂପ୍ସାଠାରେ ଥିବା ମହାବିଦ୍ୟାଳୟର ନାମ ନୀଳମଣିବାବୁଙ୍କ ନାମରେ ନାମିତ ହୋଇଛି । ତାଙ୍କ ସ୍ତ୍ରୀ ନଳିନୀଦେବୀଙ୍କ ନାଆଁରେ ଭୁବନେଶ୍ୱରଠାରେ ଥିବା ବି.ଇ.ଡି.କଲେଜକୁ ନାମିତ କରାଯାଇଛି । ଅସୁରେଶ୍ୱରଠାରେ ମହତାବବାବୁଙ୍କ ଧର୍ମପତ୍ନୀ ସୁଭଦ୍ରା ମହତାବଙ୍କ ନାମରେ ନାମିତ

ମହାବିଦ୍ୟାଳୟଟିଏ ଅଛି । ରମାଦେବୀ ମହିଳା ମହାବିଦ୍ୟାଳୟ, ଶୈଳବାଳା ମହିଳା ମହାବିଦ୍ୟାଳୟ, କୁନ୍ତଳାକୁମାରୀ ସାବତ ମହାବିଦ୍ୟାଳୟ ଓ ବହୁ ପ୍ରତିଷ୍ଠିତ ବ୍ୟକ୍ତି ଯଥା ରେଭେନ୍ସା ସାହେବ, ବକ୍ସି ଜଗବନ୍ଧୁ, ସାମନ୍ତ ଚନ୍ଦ୍ରଶେଖର, କବିବର ରାଧାନାଥ, ବ୍ୟାସକବି ଫକୀରମୋହନ, ସ୍ୱଭାବକବି ଗଙ୍ଗାଧର, ବିକ୍ରମଦେବ, ରାମଚନ୍ଦ୍ର ମର୍ଦ୍ଦରାଜ, ଲକ୍ଷ୍ମୀନାରାୟଣ ସାହୁ, ଗୋଦାବରୀଶ ମିଶ୍ର, ଜାତୀୟକବି ବୀରକିଶୋର, ଡଃ ପର୍ଶୁରାମ ମିଶ୍ର, ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକଙ୍କ ନାମରେ ବହୁ ଶିକ୍ଷାନୁଷ୍ଠାନ ନାମିତ ହୋଇଛି । ନନ୍ଦିନୀଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ତାଙ୍କର ପ୍ରଥମ ମନ୍ତ୍ରିମଣ୍ଡଳରେ ଖୋଦ୍ ନୀଳମଣିବାବୁ ଜଣେ ମନ୍ତ୍ରୀ ଥିଲେ । ସେ ଈର୍ଷାପରାୟଣ ହୋଇ କେବେ କାହାରି କ୍ଷତି କରି ନଥିବା ଜଣେ ନେତା ହୋଇ ଏପରି କାର୍ଯ୍ୟ କାହିଁକି କଲେ ତାହା କେବଳ ତାଙ୍କୁ ହିଁ ଜଣା । ମୁଁ ଅବଶ୍ୟ ତାଙ୍କୁ ଯାଇ ଏ ବିଷୟ ପଚାରିଥିଲି, ମାତ୍ର ସେ ଚୁପ୍ ରହିଥିଲେ ।



# ନାଗାଲେଣ୍ଡରେ ପାଞ୍ଚଦିନ

୧୯୭୫ ମସିହାରେ ଉତ୍ତର ପୂର୍ବାଞ୍ଚଳରେ ଥିବା ନାଗାଲେଣ୍ଡରେ ଶିକ୍ଷା ସଂପର୍କୀୟ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ଆଲୋଚନାଚକ୍ରର ଶେଷ ଦିନରେ Valedictory ଭାଷଣ ଦେବା ପାଇଁ ନାଗାଲେଣ୍ଡ୍ ଶିକ୍ଷାମନ୍ତ୍ରୀ ମୋତେ ନିମନ୍ତ୍ରଣ କରିଥିଲେ । ନିମନ୍ତ୍ରଣ ରକ୍ଷା କରି ଓଡ଼ିଶା ସରକାରଙ୍କ ବିମାନରେ ମୁଁ ନାଗାଲେଣ୍ଡ ଯାତ୍ରା କରିଥିଲି । ସେ ବିମାନରେ ବିମାନ ଚାଳକଙ୍କୁ ଛାଡ଼ି ଆଉ ତିନିଜଣ ବସିପାରିବାର ବ୍ୟବସ୍ଥା ଥିଲା । ମୋ ସ୍ତ୍ରୀ ଓ ମୋ' ବ୍ୟକ୍ତିଗତ ସଚିବ ମୋ ସହିତ ଯାଇଥିଲେ । ବିମାନଚାଳକ ଥିଲେ ଦେଶପାଣ୍ଡେ । ବିମାନସେବା ଚାକିରିରୁ ଅବ୍ୟାହତି ନେଇ ସେ ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରି କରି ଏହି ବିମାନକୁ ଚଳାଉଥିଲେ ।

ନିର୍ଦ୍ଧାରିତ ଦିନରେ ଆମେ ବିମାନଯାତ୍ରା କଲୁ । ଆମ ବିମାନ ପଶ୍ଚିମବଂଗ, ବାଙ୍ଗଲାଦେଶ, ଆସାମ ରାଜ୍ୟର ଆକାଶ ଉପର ଦେଇ ଗଲା । ତଳେ ବ୍ରହ୍ମପୁତ୍ର ନଦୀ- ବକ୍ଷ ତା'ର ଖୁବ୍ ଓସାରିଆ । ଆମେ ଡିମାପୁର ବିମାନ ବନ୍ଦରରେ ଓହ୍ଲାଇ ସେଠାରୁ କାର୍ ଯୋଗେ ଗଲୁ । ଆଗରେ ପଛରେ ଦୁଇଟି ଜିପ୍‌ରେ ନିରାପତ୍ତାରକ୍ଷୀ । ନାଗାଲେଣ୍ଡର ରାଜଧାନୀ କୋହିମାର ଅବସ୍ଥିତି ପର୍ବତ ଉପରେ । ପର୍ବତ ଉପରେ ସବୁ ଘର । ସେ ଘରଗୁଡ଼ିକ ପକ୍କାଘର ନୁହେଁ । କୌଣସିଠାରେ ଦୋ'ତାଲା ଘର ଥିବାର ଆମେ ଦେଖିଲୁ ନାହିଁ । ଆମେ ରହିବା ପାଇଁ ଉଦ୍ଦିଷ୍ଟ ବଙ୍ଗଳାକୁ ଯିବାବେଳେ ବାଟରେ କିଛି ଦୋକାନ ଥିଲା । ଦୋକାନମାନଙ୍କ ଭିତରେ କିଛି ମାଂସର ଦୋକାନ । ଏଆଡ଼େ ଯେମିତି ମାଂସ ଦୋକାନରେ ଛେଳିକୁ ମାରି ତା' ଚମକୁ କାଢ଼ିଦେଇ ଟାଙ୍ଗି ଦେଇଥାନ୍ତି, ସେଠି ଦେଖିଲୁ କୁକୁରମାନଙ୍କୁ ମାରି ସେମିତି ଟାଙ୍ଗିଛନ୍ତି । ସେମାନେ କୁକୁର ମାଂସ ଖାଆନ୍ତି । ବଙ୍ଗଳାରେ ପହଞ୍ଚି କାର୍ତ୍ତିକବାବୁଙ୍କୁ

କହିଲି, କହିଦେବାକୁ ଆମେ ସବୁ ନିରାମିଷାଶୀ । ସେହିଭଳି ଭାବରେ ସେମାନେ ଆମ ଖାଦ୍ୟ ପ୍ରସ୍ତୁତ କଲେ ।

ପରଦିନ ଆଲୋଚନାଚକ୍ର ଶେଷରେ ମୁଁ ବିଦାୟକାଳୀନ ଭାଷଣ ଦେଲି । ରାତିରେ ପ୍ରବଳ ବର୍ଷା । ରାତ୍ରିଭୋଜନକୁ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, କିଛି ବରିଷ୍ଠ ଅଫିସର ଆସିଥିଲେ । ଖାଇବା ପୂର୍ବରୁ ସେମାନଙ୍କ ପରମ୍ପରା ଅନୁସାରେ ମୋତେ ଓ ମୋ ସ୍ତ୍ରୀକୁ ପଶମ ଚାଦର ପ୍ରଭୃତି ପିନ୍ଧାଇ ସମ୍ବର୍ଦ୍ଧନା ଦେଲେ । ପରଦିନ ଆମେ ଫେରିବାର କଥା; ମାତ୍ର ଫେରିପାରିଲୁ ନାହିଁ । ପ୍ରବଳ ବର୍ଷା ଯୋଗୁଁ ପାହାଡ଼ରୁ ମାଟି ପଡ଼ି ରାସ୍ତା ଅବରୁଦ୍ଧ ହୋଇଥିଲା । ପୁଣି ଖବର ମିଳିଲା ଯେ ଡିମାପୁର ବିମାନଘାଟି ଜଳାର୍ଣ୍ଣବ । ବିମାନ ଆକାଶକୁ ଉଠିବା ପୂର୍ବରୁ ମାଟି ଉପରେ ଟିକିଏ ଦ୍ରୁତ ଗତିରେ ଯାଇ ଉପରକୁ ଉଠେ । ବିମାନଘାଟିର ଅବସ୍ଥା ଯାହା ବିମାନ ଉପରକୁ ଉଠିବା ସମ୍ଭବ ନୁହେଁ । ବାଧ ହୋଇ ଆମକୁ ଆହୁରି ଚାରିଦିନ ରହିବାକୁ ପଡ଼ିଲା । ଏହି ଚାରିଦିନ ଭିତରେ ସେଠାକାର ଶିକ୍ଷାମନ୍ତ୍ରୀଙ୍କ ସହିତ୍ କିଛି ଅଞ୍ଚଳ ଓ ଶିକ୍ଷାନୁଷ୍ଠାନ ବୁଲି ଦେଖିଲି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ଇଂରେଜମାନଙ୍କଠାରୁ ଭାରତବର୍ଷକୁ ମୁକ୍ତ କରିବା ପାଇଁ ଆଜାଦ୍‌ହିନ୍ଦ୍ ଫୌଜ ଗଠନ କରି ଯୁଦ୍ଧ ଘୋଷଣା କରିଥିଲେ । ଆଜାଦ୍‌ହିନ୍ଦ୍ ଫୌଜ କୋହିମା ପର୍ଯ୍ୟନ୍ତ ଅଗ୍ରସର ହୋଇ ସେସବୁ ଭୂଖଣ୍ଡକୁ ସ୍ୱାଧୀନ ଘୋଷଣା କରିଥିଲେ । ଜାପାନର ସାହାଯ୍ୟରେ ସେ ଏସବୁ କରୁଥିଲେ । ବିଶ୍ୱଯୁଦ୍ଧରେ ଜର୍ମାନୀ ଓ ଜାପାନ ପରାଜିତ ହେଲେ । ଜିତାପଟରେ ଅନ୍ୟମାନଙ୍କ ମଧ୍ୟରେ ଥିଲା ଇଂଲଣ୍ଡ । ଇଂରେଜମାନେ ନାଗାଲେଣ୍ଡ ଅଞ୍ଚଳକୁ ନିଜ ଦଖଲକୁ ନେଇ ଆଜାଦ୍‌ହିନ୍ଦ୍ ଫୌଜର ବହୁ ସୈନ୍ୟଙ୍କୁ ନିହତ କରିଥିଲେ । କୋହିମାରେ ଥିବା ସେଇମାନଙ୍କ କବରସ୍ଥାନ ମୁଁ ଦେଖିବାକୁ ଯାଇଥିଲି । ମରିଥିବା ଫୌଜଙ୍କ ମଧ୍ୟରେ ହିନ୍ଦୁ, ଖ୍ରୀଷ୍ଟିଆନ୍ ଓ ମୁସଲମାନ ସଂପ୍ରଦାୟର ଲୋକମାନେ ଥିଲେ । ସେମାନଙ୍କ ପାଇଁ ସମାଧି ଓ କବରମାନ ନିର୍ମିତ ହୋଇଥିଲା । ମୁଁ ବୁଲି ବୁଲି ସେସବୁ ଦେଖିଲି । ମରିଥିବା ଲୋକଙ୍କର ନାମ, ବୟସ ଓ ଜନ୍ମସ୍ଥାନ ତା' ଉପରେ ଲେଖାଯାଇଥିଲା । କିଛି ଓଡ଼ିଆଙ୍କର ସମାଧି ସେଠି ଅଛି । ଦେଖିଲି ବଲାଙ୍ଗୀରର ଜଣେ ଯୁବକର ସମାଧି । ତା'ର ବୟସ ଲେଖାହୋଇଥିଲା ୨୦ର । ନାଗାଲେଣ୍ଡରେ ଅନେକ ଲୋକ ଖ୍ରୀଷ୍ଟିଆନ୍

ଧର୍ମାବଲମ୍ବୀ । ନେତାଜୀଙ୍କ ଆହ୍ୱାନରେ ସବୁ ଧର୍ମର ଲୋକ୍ ଭାରତମାତାର ସ୍ୱାଧୀନତା ପାଇଁ ପ୍ରାଣବଳି ଦେଇଥିଲେ ।

ତା ୧୮।୮।୧୯୪୫ରିଖ ଦିନ ନେତାଜୀଙ୍କ ବିମାନ ଦୁର୍ଘଟଣାଗ୍ରସ୍ତ ହୋଇଥିଲା । ସେହିଦିନଠୁ ତାଙ୍କର ପତ୍ତା ନଥିଲା । କେତେକ କହୁଥିଲେ ସେ ମୃତ; ଆଉ କେତେକ କହୁଥିଲେ ସେ ଜୀବିତ । ପରେ ଜଣାପଡ଼ିଲା ସେ ମୃତ ।

ନାଗାଲେଣ୍ଡରେ କିଛି ଓଡ଼ିଆ ଲୋକ ଚାକିରି କରୁଥିଲେ । ଡାକ୍ତର, ଅଧ୍ୟାପକ, ଶିକ୍ଷକ ଓ ଅନ୍ୟ କିଛି ଚାକିରିରେ ସେମାନଙ୍କର ନିଯୁକ୍ତି । ସେଠାକାର ମୁଖ୍ୟ ବନସଂରକ୍ଷକ (Chief Conservator of Forests) ଥିଲେ ଜଣେ ଓଡ଼ିଆ । ଗୋଟିଏ ଦିନ ସନ୍ଧ୍ୟାରେ ସେମାନେ ଏକ ବନ୍ଧୁମିଳନର ଆୟୋଜନ କରି ମୋତେ ଡାକିଥିଲେ । ଏହି ବନ୍ଧୁମିଳନରେ ୨୦/୨୨ ଜଣ ଓଡ଼ିଆ ଲୋକ ଯୋଗଦେଇଥିଲେ ।

ରହଣିର ଚତୁର୍ଥଦିନ ଖବର ମିଳିଲା । ରାସ୍ତା ସଫା ହୋଇଗଲାଣି । ଏବେ ଯାଇହେବ । ସ୍ଥିର ହେଲା ପରଦିନ ସକାଳେ ଆମେ ଚାଲିଆସିବୁ । ସେଦିନ ରାତ୍ରିଭୋଜନର ଆୟୋଜନ କରିଥିଲେ ଖୋଦ୍ ଶିକ୍ଷାମନ୍ତ୍ରୀ । କାର୍ତ୍ତିକବାବୁ ଅପରାହ୍ଣରେ ମୋତେ କହିଲେ- ଆମ ଦାୟିତ୍ୱରେ ଥିବା ଅଫିସର ତାଙ୍କୁ କହୁଥିଲେ- କୁକୁଡ଼ା ମାଂସ ଯଦି ରାନ୍ଧିକି ଦିଅନ୍ତି ମୁଁ ଖାଇବି କି ?

କାର୍ତ୍ତିକବାବୁ ବୋଧହୁଏ ଭାବୁଥିଲେ ମୁଁ 'ହଁ' କହିବି । ନିରାମିଷ ଖାଇ ଖାଇ ଖରାପ ଲାଗିଲାଣି । କୁକୁଡ଼ା ମାଂସ ହେଲେ ଖାଇବାଟା ଜମିବ ।

ମୁଁ କିନ୍ତୁ ମନାକଲି । ଥରେ ଆମେ ନିରାମିଷାଶୀ ବୋଲି କହିବା ପରେ ପୁଣି ମାଂସ ଖାଇଲେ ସେମାନେ ଖରାପ ଭାବିବେ ଓ ଭାବିବେ ଆମେ ସେମାନଙ୍କର ଖାଦ୍ୟକୁ ଘୃଣା କରୁଚୁ ।

ରାତି ଆଠଟାରେ ଆମେ ରହୁଥିବା ବଙ୍ଗଳାର ଭୋଜନକକ୍ଷରେ ଖାଇବା ବ୍ୟବସ୍ଥା । ଆମେ ବସିଲୁ । ଆମ ଆଗରେ ସଜିତ ପ୍ଲେଟ୍ । ପ୍ଲେଟ୍ ପାଖରେ ବଡ଼ ବଡ଼ କାଚର ଗ୍ଲାସ୍ । ସେ ଗ୍ଲାସ୍‌ରେ ଗୋଟାଏ ଲିଟର ପାଣି ଧରିବ । ମୋର ଗୋଟେପଟରେ ମୋ ସ୍ତ୍ରୀ, ଅନ୍ୟ ପଟରେ ସେଠିକା ଶିକ୍ଷାମନ୍ତ୍ରୀ, ଶିକ୍ଷାମନ୍ତ୍ରୀଙ୍କ ପାଖରେ ଅତିରିକ୍ତ ଜିଲ୍ଲାପାଳ ଓ ଅନ୍ୟ କିଛି ଭଦ୍ରଲୋକ । ମୋଟ୍‌ରେ ଆମେ ପନ୍ଦର ଷୋଳ ଜଣ ଥାଉ । ପରଷିବା ଲୋକଙ୍କୁ ଶିକ୍ଷାମନ୍ତ୍ରୀ କହୁଥାନ୍ତି- ମୋତେ, ମୋ ସ୍ତ୍ରୀ ଓ କାର୍ତ୍ତିକବାବୁଙ୍କୁ ଆମିଷ ନ ପରଷିବାକୁ ।

ଖାଇବା ଶେଷ ହେଇଆସିବା ବେଳକୁ ଚାରିଜଣ ଝିଅପିଲା ମଦ ଆଣି ଗ୍ଲାସ୍‌ମାନଙ୍କରେ ଢାଳିଲେ । ପରେ ଜାଣିଲି ସେ ଝିଅମାନେ କଲେଜରେ ପଢ଼ନ୍ତି । ମୁଁ ତ ମଦ ପିଏ ନାହିଁ, ତେଣୁ ଗ୍ଲାସ୍ ନେଲି ନାହିଁ । ସମସ୍ତେ ମଦଗ୍ଲାସ୍ ହାତରେ ଧରି ମୋ' ମୁହଁକୁ ଚାହିଁଲେ ।

ମୁଁ କହିଲି- "ମୁଁ ମଦ ପିଏ ନାହିଁ । ମୋତେ ଥଣ୍ଡା ପାନୀୟ ଦିଅନ୍ତୁ ।" ପାଖରେ ବସିଥିବା ଶିକ୍ଷାମନ୍ତ୍ରୀ କହିଲେ- "ଆପଣ ଆଜିର ଅତିଥି । ଆପଣଙ୍କ ସମ୍ମାନାର୍ଥେ ଏସବୁର ଆୟୋଜନ । ଆପଣ ନ ପିଇଲେ କେହି ପିଇବେ ନାହିଁ ।"

ମୁଁ ପୁଣି ମୋ କଥାର ପୁନରାବୃତ୍ତି କରି କହିଲି- "ମୋତେ ଥଣ୍ଡା ପାନୀୟ ଦିଅନ୍ତୁ ।"

ସେ ଥଣ୍ଡା ପାନୀୟ ଆଣି ଦେବାକୁ କହି ମୋତେ କହିଲେ- "ଆପଣଙ୍କ ପାଇଁ ଥଣ୍ଡା ପାନୀୟ ଆସୁଛି । କିନ୍ତୁ ଆପଣ ମଦ ଗ୍ଲାସ୍‌ରେ ଓଠ ଲଗେଇ ଟିକିଏ ଚୁଚୁମି (sip) ନିଅନ୍ତୁ, ତା'ପରେ ସମସ୍ତେ ପିଇବେ ।"

ତାହାହିଁ ହେଲା । ମୁଁ ଗ୍ଲାସ୍‌ରୁ ଟିକିଏ ଚୁଚୁମି ନେଲି । ତା'ପରେ ସମସ୍ତେ ପିଇଲେ । ସେଦିନ ସେଇଠି ସେଇ ମଦ ଚୁଚୁମା ପରେ ଜୀବନରେ ମୁଁ ମଦ ସ୍ପର୍ଶ କରିନାହିଁ । ଭାଙ୍ଗ ପଣା ଦି'ଚାରିଥର ପିଇଥିବି କିନ୍ତୁ ମଦ ନୁହେଁ ।

ସେଦିନ ମୁଁ ଦେଖିଲି ମଦ ପରଷୁଥିବା ଝିଅମାନେ ମଧ୍ୟ ମଦପିଇ ନାଚିଲେ ।

ଖାଇସାରି ଶୟନ କକ୍ଷକୁ ଫେରିଲି । ମୋ ଦାୟିତ୍ୱରେ ଥିବା ଅଫିସରଙ୍କୁ ପଚାରିଲି- "ଆପଣଙ୍କ ରାଜ୍ୟର ଲୋକେ କାହିଁକି କୁକୁର ମାଂସ ଖାଆନ୍ତି ?"

ସେ କହିଲେ- "ସାର୍ ! ପୂର୍ବରୁ ଏ ରାଜ୍ୟର ଲୋକେ ବଣଜଂଗଲରେ ଲୁଚିରହି ଗରିଲା ଯୁଦ୍ଧ କରୁଥିଲେ । ମାସ ମାସ ବଣରେ ରହି ଛେଳିମାଂସ କୋଉଠୁ ପାଇବେ ? ସେମାନେ ସାଙ୍ଗରେ କୁକୁରଙ୍କୁ ନେଇଯାଇଥାନ୍ତି । ସେଇମାନଙ୍କୁ ମାରି ଖାଉ ଖାଉ କୁକୁର ମାଂସ ଖାଇବାଟା ଅଭ୍ୟାସରେ ପରିଣତ ହୋଇଗଲା ।

ତାଙ୍କ କଥା ଶୁଣି ମୁଁ ଭାବିଲି- ମଣିଷ ଅବସ୍ଥାର ଦାସ । ସେହିଠାରେ ରହିବା ଭିତରେ କେତୋଟି କବିତା ଲେଖିଥିଲି । ତା' ଭିତରୁ ଗୋଟିଏ ମୁଁ ଏଠାରେ ଉଦ୍ଧାର କରୁଛି-

ଶୀତ ରାତି : କୋହିମା ସହର
ବରଫ ବର୍ଷା ରାତି ନିବୁଜ ଅନ୍ଧାର
ନିଥର ଅଜଗର ପରି ଅଷ୍ଟବକ୍ର
ପାହାଡ଼ ଶୋଇଚି, ନିସ୍ତବ୍ଧ ସହର ଛାତିରେ
ଅସଂଖ୍ୟ ମୃତ ଶରୀରର ଫିସ୍‌ଫିସ୍ କଥା,
ଜୀବନ୍ତ ମଣିଷର ଘରର ଛାଇରେ
ଅନେକ ଲୁଚକାଳି ଖେଳ, ଛପିଛପି
ବିଦ୍ରୋହୀମାନେ ଜାଗତିଆର
ହୁଁ ହୁଁ ଜାଗତିଆର ପରଖିବେ ବଳ ।

ଡାକବଂଲୋର ବନ୍ଧ ଥିବା ଝରକାରେ
ଆଘାତ କରନ୍ତି
ଚିଡ଼ିଆଖାନାରୁ ଖସିଆସିଥିବା ଜନ୍ତୁମାନେ
କୁକୁରମାଂସ ବିକାଳି ଦୋକାନ ବନ୍ଦ କରି
ଘର ଘର ବୁଲୁଚି
କରିବାକୁ କାଲି ପାଇଁ ପଶୁର ସନ୍ଧାନ ।
ବଂଲୋର ଅନ୍ୟ ପାଖରେ
ଷୋଳବର୍ଷର ଝିଅଟା
ମଦ ପିଇ ଅଚେତ; ତା'ର ବାପ
ବଂଗଳାର ଚୌକିଦାର ପଚାରୁଚି
ଗୁଟି ନା ଭାତ କ'ଣ କରିବ ?

କାଠ ତିଆରି ଘର ଛାତରୁ
ଠପ୍‌ଠପ୍ ତରଳ ବରଫ ଝରିପଡୁଚି
ଘର ଭିତରେ
କଇଁଚ ପରି ଗୋଡ଼ହାତ ଏକ କରି
ମୁଁ ନିଆଁ ପୋହୁଁଚି ।

ଘରକୁ ଗରମ କରିବାର ବିଜୁଳି ଯଂତ୍ର
ପାଚି ଲାଲ୍ କମାରଶାଳର ଲୁହା ଭଳି ।

ଘରୁ ବାହାରିବା କୁ ନାହିଁ ।

ଗରିଲା ଯୁଦ୍ଧ ଶେଷରେ ।
ଜବତ ହୋଇଥିବା ବଂଧୁକର କୁଢ଼ରେ
ପେଟ୍ରୋଲ ଢାଳି ନିଆଁ ଜାଳିଚନ୍ତି
ଅନ୍ୟ ଅଂଚଳର ସୈନ୍ୟମାନେ,
ହାଜତରେ ବନ୍ଦୀମାନଙ୍କର ଚିତ୍କାର,
ମୁକ୍ତି ପାଇଁ । ମୁକ୍ତିର ଠିକଣା ମିଳୁନାଇଁ ।

ଅନାକାଂକ୍ଷିତ ପରିସ୍ଥିତିରେ
ଆକାଶତଳର ପଥୁରିଆ ମାଟିରେ
ଭୂମିକମ୍ପର ସୂଚନା
ନଗ୍ନ ନାଗା ସନ୍ନ୍ୟାସୀର ପଟୁଆର ।

ଭୟଙ୍କର ଅବସ୍ଥା ।

କୋହିମା ସହର
ଶୀତବରଫ ଝଡ଼ବର୍ଷା, ଭୂମିକମ୍ପ ପରେ
ତୁ ଥରୁଚୁ ।
ଆଉ ମୁଁ... ଏବଂ ଆମେ
'ନରେନ୍ଦ୍ର'ର କଇଁଚ ପରି
ଗୋଡ଼ହାତ ଏକ୍. କରି
ନିଆଁ ପୋହୁଁଚୁ ।



# ଯାତ୍ରା ଥିଲା ଭୟଙ୍କର

ତତ୍‌ପରଦିନ ସକାଳ ଆଠଟାବେଳେ ଡିମାପୁର ବିମାନବନ୍ଦର ଅଭିମୁଖେ ବାହାରିପଡ଼ିଲୁ । ବିମାନ ବନ୍ଦରରେ ପହଞ୍ଚିବାବେଳକୁ ଚାଳକ ଦେଶପାଣ୍ଡେ ବିମାନକୁ ପ୍ରସ୍ତୁତ ରଖି ଆମ ଅପେକ୍ଷାରେ ଥିଲେ । ଆମେ ପହଞ୍ଚିଲୁ ଓ ବିମାନରେ ବସିଲୁ । ବିମାନ ଉପରକୁ ଉଠି ଚାଲିଲା । ପ୍ରାୟ ଦଶ ମିନିଟ୍‌ରେ ପ୍ରବଳ ବର୍ଷା । ବର୍ଷା ସାଙ୍ଗକୁ ଜୋର୍ ପବନ । ମୁଁ ଚାଳକଙ୍କ ପାଖ ଆସନରେ ବସିଥିଲି । ଦେଖୁଥିଲି ସାମ୍‌ନାରେ ବୃଷ୍ଟିଧାର ଛଡ଼ା ଆଉ କିଛି ଦିଶୁନାହିଁ । ବିମାନ ବେଳେବେଳେ ଉପର ତଳ ହୋଇ ଦୋହଲୁଛି । ଚାଳକ ଦିକ୍‌ନିର୍ଣ୍ଣୟ ଯନ୍ତ୍ରକୁ ଦେଖି ବିମାନକୁ ଆଗକୁ ଚଳାଉଛନ୍ତି । ତାଙ୍କ ମୁହଁ ଘର୍ମାକ୍ତ । ନିଃଶ୍ୱାସର ବେଗଟା ବି ଜଣାପଡ଼ିଯାଉଥାଏ । ସାମ୍‌ନାରେ କିଛି ଦିଶୁ ନଥିବା ଏବଂ ବିମାନର ଏ ଅବସ୍ଥା ଦେଖି ମୁଁ ଆତଙ୍କିତ । ବିମାନ ଆସାମ ସୀମା ଛୁଇଁବା ପରେ ବିମାନ ଏବଂ ଚାଳକ ସ୍ୱାଭାବିକ ଅବସ୍ଥାକୁ ଫେରିଆସିଲେ ।

ଚାଳକ କହିଲେ- "ସାର୍; ଭଗବାନ ଆମକୁ ବିପଦରୁ ବଂଚେଇ ଦେଲେ ।" ପୁଣି ସେ କହିଲେ- "ସାର୍; ଆମ ବିମାନ ଯେତିକି ଉଚ୍ଚରେ ଉଡୁଥିଲା ତା'ର ପ୍ରାୟ ପାଞ୍ଚଶ' ଫୁଟ୍ ତଳେ ଥିଲା ପର୍ବତମାଳା । ପବନର ବେଗ ଏତେ ଥିଲା, ଜାହାଜ କେମିତି ଉପର ତଳ ହେଉଥିଲା, ଆପଣ ଦେଖିଥିବେ । ଯଦି କେତେବେଳେ ପାଞ୍ଚଶ ଫୁଟ୍ ତଳକୁ ଖସିଆସିଥାନ୍ତା, ପାହାଡ଼ରେ ବାଡ଼େଇଯାଇ ଟିକିଟିକି ହେଇଯାଇଥାନ୍ତା । ଆମମାନଙ୍କ ପତ୍ତା ବି କେହି ପାଇନଥାନ୍ତେ ।" ତା'ପରେ କହିଲେ- "ସାର୍; ଗୌହାଟୀରେ ଜାହାଜରେ ତେଲ-ପକାଇ କିଛିସମୟ ବିଶ୍ରାମ ନେଇ ତା'ପରେ ଯିବା ।"

ସେଇଆ ହେଲା । ଗୌହାଟୀ ବିମାନ ବନ୍ଦରରେ ଆମ ଉଡ଼ାଜାହାଜ ଅବତରଣ କଲା । ଆମେ ଓହ୍ଲାଇଯାଇ ବସିଲୁ । ଦୁର୍ଗାପୂଜା ଆଉ ଚାରି ପାଞ୍ଚଦିନ ଥାଏ । ବିମାନ ବନ୍ଦରରେ କରାଯାଉଥିବା ପୂଜା ଆୟୋଜକଙ୍କ ମଧ୍ୟରୁ ଚାରି ପାଞ୍ଚଜଣ ଆସି ଆମ ପାଖରେ ପହଞ୍ଚିଗଲେ । ହାତରେ ଚାନ୍ଦା ନେବାର ରସିଦ ବହି । ସେମାନଙ୍କୁ ଶହେଟଙ୍କା ଚାନ୍ଦା ଦେବାକୁ ପଡ଼ିଲା । ପ୍ରାୟ ଘଣ୍ଟାଏ ଖଣ୍ଡେ ସେଠି ରହି ଆମେ ପୁଣି ବାହାରିଲୁ । କଲିକତା ବିମାନ ବନ୍ଦରରେ ପହଞ୍ଚି ସେଠି ବି ଘଣ୍ଟାଏ ଖଣ୍ଡେ ରହିଲୁ ।

ବଙ୍ଗୋପସାଗର ଉପରେ ଆମ ଜାହାଜ ଉଡ଼ି ଉଡ଼ି ଯାଇଥିଲା, ପୁଣି ଉଡ଼ି ଉଡ଼ି ଆସିଲା । ସାଗରକୁ ଦେଖି ମନେପଡୁଥିଲା ପାହାଡ଼ ଉପରେ ଉଡୁଥିବାବେଳର ଭୟାବହ ଦୃଶ୍ୟ ।

ଯା'ହେଉ, ଭଲରେ ଭଲରେ ଆସି ପାରାଦ୍ୱୀପ ଦେଇ ଭୁବନେଶ୍ୱରରେ ପହଞ୍ଚିଗଲୁ ।



# ବାମଣ୍ଡାର ସ୍ମୃତି - ୧୯୭୫

ବାମଣ୍ଡାର ସେଇ ରଙ୍ଗିନ ସ୍ମୃତି, ରାଜପଥ ଧାରରେ ଥିବା ଅପୂର୍ବ ଦୃଶ୍ୟ ଆଜି ବି ମୋ ମନରେ ରସମୟ । ବାମଣ୍ଡାର ରାଜା ଭାନୁଗଙ୍ଗ ତ୍ରିଭୁବନଦେବଙ୍କ ସାଙ୍ଗରେ ଦେବଗଡ଼ରେ ଏକ କାର୍ଯ୍ୟକ୍ରମରେ ଯୋଗଦେବାକୁ ଯାଇଥିଲି । ସେଠାକାର ବିଭିନ୍ନ ଶିକ୍ଷାନୁଷ୍ଠାନ - ରାଜା ବାସୁଦେବ ଉଚ୍ଚ ବିଦ୍ୟାଳୟ, ଦେବଗଡ଼ ମହାବିଦ୍ୟାଳୟ ପ୍ରଭୃତି ପରିଦର୍ଶନ କରି ବାଳିକା ଉଚ୍ଚବିଦ୍ୟାଳୟର କାର୍ଯ୍ୟକ୍ରମରେ ଯୋଗଦେଲି । ସେଠାକାର ବସନ୍ତ ନିବାସରେ ରାତ୍ରିଯାପନ କରିଥିଲି । ବସନ୍ତ ନିବାସ ପାଖରେ ଆଉ ଏକ ଅତିଥିଭବନ ଅଛି, ନାଆଁ ତାର ଲଳିତ ବସନ୍ତ । ବସନ୍ତ ନିବାସରେ ରହି ତାହାର ସନ୍ନିକଟରେ ଥିବା ଅନ୍ୟ ଏକ ପାହାଡ଼ରୁ ଝରିଆସୁଥିବା ପ୍ରଧାନପାଟ ଜଳପ୍ରପାତର ମନୋରମ ଦୃଶ୍ୟ ମୋତେ ମୁଗ୍ଧ କରିଥିଲା । ପରଦିନ ସକାଳେ ପ୍ରଧାନପାଟ ପାଖକୁ ଯାଇ ସେଠାରେ ଥିବା ଏକ ସିମେଣ୍ଟ ବେଞ୍ଚ୍ ଉପରେ ବସିଥିଲି । ତିନି ପାଖରେ ଥିବା ପାହାଡ଼ ଭୟଙ୍କର ତାର ପ୍ରତୀକ । ତା'ରି ଭିତରେ ପ୍ରଧାନପାଟର କମନୀୟ ଦୃଶ୍ୟ, ଆଃ, ସ୍ମୃତିରେ ଅପାସୋରା । ମୁଁ ଦେଖିଲି ବାମଣ୍ଡାରେ, ବିଶେଷ କରି ବସନ୍ତ ନିବାସ ଓ ପ୍ରଧାନପାଟରେ କବିବର ରାଧାନାଥଙ୍କର ଉପସ୍ଥିତି ଆଜି ବି ଜୀବନ୍ତ । ଶୁଣିବାକୁ ପାଇଲି, ମୁଁ ଯେଉଁ ଜାଗାରେ ନିର୍ମିତ ବେଞ୍ଚ ଉପରେ ବସିଥିଲି, କବିବର ଆସି ସେଇ ସ୍ଥାନରେ ବସି ପ୍ରଧାନପାଟର ଦୃଶ୍ୟକୁ ଉପଭୋଗ କରୁଥିଲେ । କବିବରଙ୍କ ଲିଖିତ 'ଭ୍ରମଣକାରୀର ପତ୍ର'ରେ ବାମଣ୍ଡା ବିଷୟରେ ଯାହା ଉଲ୍ଲେଖ କରିଛନ୍ତି ତାହା ତାଙ୍କ ବାମଣ୍ଡା-ପ୍ରୀତିର ନିଦର୍ଶନ । ସେଇଥିରେ ପ୍ରଧାନପାଟ ବିଷୟରେ ଯାହା ଲେଖିଛନ୍ତି ତାହା ମୁଁ ଏଠାରେ ଉଲ୍ଲେଖ କରୁଛି ।

"ପ୍ରପାତ ଜଳ ପର୍ବତର ପାଦଦେଶସ୍ଥିତ ଗୋଟିଏ କୁଣ୍ଡରେ ଝର୍ଝର ଶବ୍ଦରେ ପତିତ ହୋଇ ବହିଯାଉଅଛି । ପର୍ବତ ଉପରେ କିଯଦ୍ଦୂର ଚଢ଼ି ପୁଣି ଓହ୍ଲାଇବାକୁ ହୁଏ । ଅବତାରଣ ସକାଶେ ମହାରାଜ ପକ୍କାର ଶିଡ଼ି ବନ୍ଧାଇ ଦେଇଅଛନ୍ତି । ଏହି ସୋପାନ ଶ୍ରେଣୀରୁ ପାଠକ ! ଆମ୍ଭେମାନେ ଯେଉଁ ଦୃଶ୍ୟ ଦେଖିଲୁ, ତାହା ଏକପ୍ରକାର ଅପାର୍ଥିବ ଦୃଶ୍ୟ, ସାକ୍ଷାତ୍ ବିଧାତାଙ୍କର କରୁଣା ପ୍ରସ୍ରବଣରୁ ନିଃସୃତ କରୁଣାଧାରା । ୬୦/୭୦ ହସ୍ତ ଉଚ୍ଚ ଭୃଗୁରୁ ସ୍ୱଚ୍ଛ ଜଳରାଶି ୨୫/୩୦ ହସ୍ତ ପ୍ରସ୍ଥରେ ପାଦଦେଶସ୍ଥିତ କୁଣ୍ଡରେ ଆସି ପଡୁଅଛି । ହଠାତ୍ ଦେଖିଲେ ବୋଧ ହେବ, ଯେମନ୍ତ ଲକ୍ଷ ଲକ୍ଷ ହୀରକଖଣ୍ଡ ପୁଞ୍ଜୀଭୂତ ହୋଇ ସ୍ୱର୍ଗରୁ ଖସୁଅଛି । ପ୍ରପାତର ଶିରୋଦେଶରେ ବନ୍ଧୁର ଶିଳାର ପ୍ରତିଘାତ ନିବନ୍ଧନ ଜଳବିନ୍ଦୁ ଇତସ୍ତତଃ ପ୍ରକ୍ଷିପ୍ତ ହୋଇ ମୁକ୍ତାବୃଷ୍ଟି ହେଲା ପ୍ରାୟ ବୋଧ ହେଉଅଛି । ଜଳର ଶୀକରରେ ଇନ୍ଦ୍ରଧନୁ ନୃତ୍ୟ କରୁଅଛି । ଘୋର ଅରଣ୍ୟ ଏବଂ ଗିରିକନ୍ଦର ସୁଲଭ ନିର୍ଜନତାରେ ଏହି ଅପ୍ସରା ଦୃଶ୍ୟ ଦେଖିଲେ ମନ କିପରି ହୁଏ, ତାହା ଯେବେ ତୁମ୍ଭର ଅନୁଭବ କରିବାର ଇଚ୍ଛା ଥାଏ, ଶ୍ରମସ୍ୱୀକାର ପୂର୍ବକ ଥରେ ପ୍ରଧାନପାଟ ଦେଖିଆସ । ବିନା ଦର୍ଶନରେ ଏ ଭାବ ଅନୁଭୂତ ହେବାର ନୁହେଁ ।"

\+ \+ \+

ସେ ପୁଣି ଲେଖିଛନ୍ତି- "ବାମଣ୍ଡା ଅବସ୍ଥାନ ସମୟରେ ପ୍ରଧାନପାଟ ପ୍ରପାତ ମୁଁ ତିନିଥର ଦେଖିଥିଲି । ପ୍ରତ୍ୟେକ ଥର-

"କ୍ଷଣେ କ୍ଷଣେ ଯନ୍ନବତାମୁପୈତି
ତଦେବରୂପଂ ରମଣୀୟତାୟାଃ ।"

ମାଘକବିଙ୍କର ଏହି ପଂକ୍ତିଦ୍ୱୟ ସ୍ମୃତି ପଥରେ ଉଦିତ ହେଉଥିଲା । ଫଳତଃ ଏପରି ବିଚିତ୍ର ଦୃଶ୍ୟ ଭାରତବର୍ଷରେ ବିରଳ କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ ।"

କବିବର ରାଧାନାଥଙ୍କର ଏ ଉକ୍ତି ଯଥାର୍ଥ ।

ସେ ପ୍ରଧାନପାଟକୁ ଏତେ ଭଲପାଉଥିଲେ ଯେ କେବଳ ଉଲ୍ଲିଖିତ 'ଭ୍ରମଣକାରୀର ପତ୍ର' ନିବନ୍ଧରେ ନୁହେଁ, 'ମହାଯାତ୍ରା' ମହାକାବ୍ୟରେ ବାମଣ୍ଡାର ନୃପତି ସୁଢ଼ଳଦେବଙ୍କୁ ଏହି ପ୍ରପାତର ପତି ଭାବେ ଉଲ୍ଲେଖ କରିଛନ୍ତି । ଷଷ୍ଠ ସର୍ଗର ଆରମ୍ଭରେ ସେ ଲେଖିଛନ୍ତି-

"ଦିବ୍ୟ ଅବଧାନେ ଆସୁ ଏ ଗୀତ ତୁମ୍ଭର
ହେ ରାଜେନ୍ଦ୍ର, ମନ୍ଦ୍ରନାଦି-ପ୍ରପାତର ପତି ।"

ବାମଣ୍ଡା ଥିଲା ତାଙ୍କର ଅତି ପ୍ରିୟ । "ସାର୍ ରାଜା ବାସୁଦେବ ସୁଢ଼ଳଦେବ" ଓ "ବାମଣ୍ଡା" ପ୍ରବନ୍ଧରେ ଏ ବିଷୟରେ ସେ ଅନେକ କଥା ଲେଖିଛନ୍ତି । ବାମଣ୍ଡାର ରାଜଧାନୀ ଦେବଗଡ଼ ଉତ୍କଳ ସାହିତ୍ୟ ଚର୍ଚ୍ଚାର ଏକ ପ୍ରଧାନ କେନ୍ଦ୍ର ଥିଲା । "ଚିଲିକା କାବ୍ୟରେ ମଧ୍ୟ ବାମଣ୍ଡାର ଉଲ୍ଲେଖ ରହିଛି ।

୧୮୮୬ ମସିହାରେ ଦଶଦିନ ଛୁଟି ନେଇ ରାଧାନାଥ ଯେତେବେଳେ ବାମଣ୍ଡା ଆସିଥିଲେ, ସେତେବେଳେ ବାମଣ୍ଡା ରାଜା ସାର୍ ସୁଢ଼ଳଦେବ ତାଙ୍କ କବିତାରେ ପ୍ରୀତ ହୋଇ ତାଙ୍କୁ କବିବର ଉପାଧି ଓ ଟ୫୦୦.୦୦ ଉପଢ଼ୌକନ ଦେଇଥିଲେ ।

ତୁଡ଼ିଖୋଳ ଘାଟିରେ ନିମ୍ନ ଦେଶରେ ଖରା ଦାଉରୁ ମୁକ୍ତି ପାଇବା ପାଇଁ ସେ ଯେଉଁ ଆମ୍ରଗଛ ତଳେ କିଛି ସମୟ ବିଶ୍ରାମ କରିଥିଲେ, ସେଠାରେ ବାମଣ୍ଡା ନୃପତି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଗୋଟିଏ ପଥରବେଦି ନିର୍ମାଣ କରି ସେହି ପ୍ରସ୍ତର ଫଳକରେ ରାଧାନାଥଙ୍କ ଗୁଣ ବର୍ଣ୍ଣନା କରିଛନ୍ତି । ଅବଶ୍ୟ ସେତେବେଳକୁ ରାଧାନାଥ ଇହଧାମରେ ନଥିଲେ । ସେ ପଥରେ ଯାଉଥିବା ଯାତ୍ରୀ ଏହି ଫଳକକୁ ଦେଖିଥିବେ । ମୁଁ ମଧ୍ୟ ଥରେ ସେହି ମଣ୍ଡପରେ କିଛି ସମୟ ବସିଥିଲି ଓ ସେ କବିତା ପାଠ କରିଥିଲି । ପାଠକ/ପାଠିକାମାନଙ୍କ ମଧ୍ୟରୁ ଅନେକ ତ ସେ ବେଦି ଦେଖି ନଥିବେ ଓ ସେ କବିତା ପଢ଼ି ନଥିବେ । ତେଣୁ ସେମାନଙ୍କର ଅବଗତି ନିମନ୍ତେ ସେହି କବିତାକୁ ଏଠାରେ ଉଲ୍ଲେଖ କରୁଛି ।

ଓଁ ତତ୍‌ସତ୍
ସାହିତ୍ୟ-କାନନଚାରୀ ବସନ୍ତ କୋକିଳ
କବିବର ରାଧାନାଥ ରାୟ ବାହାଦୁର,
ଊନବିଂଶ ଶତାଧିକ ଅଷ୍ଟ ଶତାବ୍ଦୀରେ
କରିଥିଲ ବାମଣ୍ଡାକୁ ଶୁଭ ଆଗମନ ।
ପ୍ରତ୍ୟାବୃତ୍ତକାଳେ ଏହି ଶିଖରି ଶିଖରେ
ଦୈବଯୋଗେ ଭାରବାହୀ ବଳୀବର୍ଦ୍ଧପଦ
ଖଞ୍ଜ ଯୋଗୁଁଏ ଦେଖି ତାର କର୍ତ୍ତବ୍ୟ ବିମୁଖ

ଦୟାର୍ଦ୍ର ହୃଦୟ ତବ ହେଲା ଦ୍ରବୀଭୂତ,
ବିଧୁକର ସଂସ୍ପର୍ଶରେ ବିଧୁମଣି ଯଥା ।
ଏକେ ମଧୁମାସ ପୁଣି ମଧ୍ୟାହ୍ନ ସମୟ,
ପ୍ରଚଣ୍ଡ ଚଣ୍ଡାଂଶୁ ତାପ, ନ ମାନି ସେ କଷ୍ଟ,
ପଦବ୍ରଜେ ବିଜ୍ଞମଣି ଆତ୍ମଜ ସହିତ
ଉତୁରି ଗିରିଟଙ୍କରୁ ବିଶ୍ରମିଲ ଆସି
ବକୁଳ ଦୈଭବେ ରମ୍ୟ ଏହି ଚୂତ ମୂଳେ ।
ଭୋଗିଛ ସେଦିନ ଯେଉଁ କଷ୍ଟ କବିମଣି
ଅନୁଭବି ନ ପାରିବେ ଅନୁଭବୀ ବିନା;
ଶେଷ କରି ଏହି ଯାତ୍ରା ପ୍ରବେଶି ଆଳୟେ,
ବିଭୋଗି ରୋଗ ଯନ୍ତ୍ରଣା ଅଷ୍ଟ ଦିନାନ୍ତରେ
ତେଜି ସର୍ବ ମାୟାମୋହ, ଆଉ ମର ତନୁ,
ଅମର ଭୁବନେ ଯାଇ ବିଶ୍ରାମିଲ; ସତ୍ୟ,
କିନ୍ତୁ 'ରାଧାନାଥ' ନାମ ମର୍ତ୍ତ୍ୟରେ ଅମର;
ରଖିଯାଇଅଛ ଯେଉଁ ଅକ୍ଷୟ କୀରତି,
ବିଲୁପ୍ତ ନ ହେବ ଯାବଚ୍ଚନ୍ଦ୍ରାର୍କ ମେଦିନୀ ।
ତେଣୁ ଏହି ଚୂତମୂଳେ ଏ ରମ୍ୟ ବେଦିକା
ନିର୍ମାଣିଲେ ତବ ସେହି ସ୍ମୃତିରକ୍ଷା ଅର୍ଥେ,
ଗୁଣୀ-ଗଣ-ଗୁଣଗ୍ରାହୀ ବାମଣ୍ଡା ମଣ୍ଡନ
ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।

୧୯୦୮ ମସିହା ଏପ୍ରିଲ ୧୭ ତାରିଖ ଚୈତ୍ର ପୂର୍ଣ୍ଣମୀ ତିଥିରେ କବିବରଙ୍କର ଜୀବନ-ପ୍ରଦୀପ ନିର୍ବାପିତ ହୋଇଥିଲା । ପ୍ରତିବର୍ଷ ଏହି ତିଥିରେ ସୋରସ୍ଥ ରାଧାନାଥ ପାଠାଗାର ତରଫରୁ ତିନି ଚାରିଦିନ ବ୍ୟାପୀ କବିଙ୍କର ସ୍ମୃତି ସମାରୋହ ଅନୁଷ୍ଠିତ ହୁଏ ।



# ସ୍ମୃତିର ନିର୍ଯାସ

ବାମଣ୍ଡା ଦେବଗଡ଼ ରାଜପ୍ରାସାଦ, ବସନ୍ତ ନିବାସ, ଲଳିତ ବସନ୍ତ ଓ ପ୍ରଧାନପାଟ ମୋ ପାଇଁ ଅବିସ୍ମରଣୀୟ । ବନ୍ଧୁ ଭାନୁଗଙ୍ଗ ତ୍ରିଭୁବନଦେବଙ୍କ ସହିତ ତାଙ୍କ ରାଜପ୍ରାସାଦ ଯାଇଥିଲି । କିନ୍ତୁ ପୂର୍ବର ସେ ଗୌରବ ଆଜି ମଳିନ ନିଷ୍ପ୍ରଭ । ଅତୀତର ଶଙ୍ଖଧ୍ୱନି ଆଜି ନୀରବ । ଭଗ୍ନ ସ୍ୱାସ୍ଥ୍ୟ-ସାମନ୍ତବାଦର କ୍ଷୟିଷ୍ଣୁ ଦୀପଶିଖା ଆଜି ନିର୍ବାପନର ମୁହୂର୍ତ୍ତରେ । ସହରର ସ୍ଥାନେ ସ୍ଥାନେ ଏବଂ ରାଜବାଟୀର ବହିଃପ୍ରାଙ୍ଗଣରେ ଇତାଲୀୟ ଶିଳ୍ପୀର କେତେକ ମୂର୍ତ୍ତି ନଗ୍ନ ଏବଂ ଯତ୍ନହୀନ-ଶ୍ରୀବିହୀନ ଏବଂ ରଙ୍ଗହୀନ । ସଂସ୍କୃତିର ଭଗ୍ନାବଶେଷ ଦେବଗଡ଼ ବାମଣ୍ଡାର ପ୍ରାଣକେନ୍ଦ୍ର - ଏଇ ରାଜବଂଶର ଦାୟାଦଙ୍କ ପ୍ରଚେଷ୍ଟାରେ ପ୍ରକାଶ ପାଇଥିବା 'ଶଙ୍ଖ' ପତ୍ରିକାରେ ପ୍ରକାଶ ପାଇଥିଲା ମୋର ପ୍ରଥମ ଗଳ୍ପ 'ପାଷାଣୀ' । ଇଚ୍ଛା ଥିଲା ପରେ ପୁଣି ଗଳ୍ପ ବା କବିତା ପଠାଇବି । ମାତ୍ର ସେ ସୁଯୋଗ ଆସିବା ପୂର୍ବରୁ ପତ୍ରିକାଟି ବନ୍ଦ ହୋଇଯାଇଥିଲା । ସେଠାକାର ସ୍ମୃତିରେ ସେତେବେଳେ ଚାରୋଟି କବିତା ଲେଖିଥିଲି । ଲେଖିଥିବା ଖାତାଟି ବି ଜୀର୍ଣ୍ଣଶୀର୍ଣ୍ଣ । ୧୯୭୫ରେ ଲେଖିଥିବା ସେ କବିତାଗୁଡ଼ିକର ପ୍ରକାଶନ ପାଇଁ ମୁଁ ଏଠାରେ ଦେଉଛି ।



# ରାଧାନାଥ

ଅନେକ ବରଷ ତଳେ
ଅନେକ ଦୂରରୁ
ତୁମେ ଏଠି ଆସିଥିଲ
ସାଜି ଯାଯାବର
ନିର୍ମେଘ ଆକାଶ ଆଉ
ଅଗଣିତ ତାରା
ଗହନ ବନାନୀ
ସଂସ୍କୃତିର ଗନ୍ତାଘର
ଖୋଜି ଖୋଜି ଅକସ୍ମାତ
ତୁମେ କ'ଣ ପହଞ୍ଚିଲ ଏଠି
ସମୟର ସମୁଦ୍ରରେ
ରଖିବାକୁ ନିଜର ସ୍ୱାକ୍ଷର ।
ଢେଉରେ ଫୁଟାଇ ଫୁଲ
ଶ୍ରୀମଣ୍ଡିତ ସାହିତ୍ୟକୁ ଦେଲ କବି;
ଅମୂଲ୍ୟ ଯେ ଭେଟି
ତାହା ଆଜି ବଂଚିଛି ମାଟିରେ,
ଜୀବନ୍ତ ତୁମର ସ୍ମୃତି
ବସନ୍ତ ନିବାସ ଆଉ ପ୍ରଧାନପାଟରେ
ବାଟେଘାଟେ ଉଦ୍ୟାନରେ
ଓ ରାଜବାଟୀରେ ।

କବିବର ରାଧନାଥ;
ଏ ଜାତିର ଅତୀତ ପୁରୁଷ;
ତୁମେ ତ ଦେଖିଛ ବୁଲି
ଆଦ୍ୟପ୍ରାପ୍ତ ଓଡ଼ିଶା ପ୍ରଦେଶ ।
ଚିଲିକାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ
କରିଥିଲ ଆଶା
ଅବଶିଷ୍ଟ ଜୀବନକୁ
କଟାଇବ ପଶ୍ଚିମ ତୀରରେ
ଯେଉଁଠି ଜଟିଆନାଶୀ
ତୀର ପରି ପଶିଚି ପାଣିରେ ।
କିନ୍ତୁ କ'ଣ ହେଲା
ମରାଳମାଳିନୀ ନୀଳାମ୍ବୁ ଚିଲିକା
ତୁମକୁ କି ରଖିପାରିଥିଲା ?

ଓଡ଼ିଶାର ରାଜଧାନୀ
ନବତଳ ସୁରମ୍ୟ ପ୍ରାସାଦ
ମହାନଦୀ ଉପକଣ୍ଠେ
ଧରି ତା'ର ସମସ୍ତ ସମ୍ପଦ
ସମସ୍ତ ସୌନ୍ଦର୍ଯ୍ୟ ଆଉ
ଓଡ଼ିଆର ବୀରତ୍ୱ-ମଣ୍ଡିତ
ବାରବାଟୀ ଦୁର୍ଗ...
ଯାହା ପାଇଁ ଢାଳିଥିଲ
ତୁମେ ହାୟ ଅନେକ ଲୋତକ
ବହୁ ଦୀର୍ଘଶ୍ୱାସ,
ଯିଏ ଦିନେ ଗୌରବରେ
ଉଡ଼ାଇଲା ଯଶର ପତାକା
ରାଣୀହଂସ ମହଲରେ

ଜଳାଇଲା ପ୍ରେମର ଶଳାକା
ଘୋଡ଼ାଶାଳ ହାତୀଶାଳ
ପୂର୍ଣ୍ଣ କଲା ପୋଷିତ ପଶୁରେ
ହୀରାନୀଳା ଜହରତ
ସାଇତିଲା କେତେ ଗନ୍ତାଘରେ ।
କେତେ ବୁଦ୍ଧି କାରବାର
ହେଲା ହାୟ ମନ୍ତ୍ରଣା କକ୍ଷରେ
ଏ ଜାତିର ଦମ୍ଭମାନେ
ବୁଲୁଥିଲେ ପ୍ରାସାଦ ବକ୍ଷରେ ।
ସିଏ ବି ମାନିଲା ହାର୍
ଅଟକିଲ ନାହିଁ ତୁମେ ସେଠି
ଆସିଥିଲ ଏଇ ଦେବଗଡ଼
କ'ଣ ତୁମେ ପାଇଥିଲ ଏଠି ?
ରାଜାର ମମତା
ପ୍ରାଚୁର୍ଯ୍ୟର ଅହମିକା
ପ୍ରଶଂସୁ ଜନତା
ଅବା
ପ୍ରକୃତିର ଅର୍ଥପୂର୍ଣ୍ଣ
ଶାନ୍ତ ନୀରବତା ?
ଦେବତାତ୍ମା ହିମାଳୟ
ରକ୍ଷାଦଣ୍ଡ ଭାରତବର୍ଷର
ପ୍ରାଗ୍‌ଐତିହାସିକ ଯୁଗେ
ମନ୍ଦ୍ରକଣ୍ଠେ କଲା ଯେ ଘୋଷଣା
ବେଦ ଆଉ ବେଦାନ୍ତ ମନ୍ତ୍ରର ।
ଋଷିକନ୍ୟା କଳକଂଠେ
ବକ୍ଷ ଯା'ର ହେଲା ନିନାଦିତ
ଅପ୍‌ସରାର ବାର୍ତ୍ତା ଆଣି
ଯିଏ କଲା ପୃଥିବୀ ବିଦିତ

ପାର୍ବତୀଙ୍କ ତପସ୍ୟାରେ
ମହାଦେବ ତପ ଭଂଗ ହେଲା
ଗଙ୍ଗାର ପବିତ୍ର ନୀର
ଯେ' ଆମକୁ ଉପହାର ଦେଲା
ସେଇ ଗିରିରାଜ
ମହାଯୋଗୀ ମହାଭୋଗୀ
ଯିଏ କେବେ ହୋଇନି ନାରାଜ
ବକ୍ଷେ ତା'ର ସ୍ଥାନ ଦେବା ପାଇଁ
ତୁମକୁ ହେ କବିବର;
ତୁମେ କାହିଁ ରହିଲ ତ ନାହିଁ ?
ଉଷା, ପାର୍ବତୀ, ନନ୍ଦିକା,
ଚନ୍ଦ୍ରଭାଗା ସ୍ମୃତିର ନାୟିକା
ଗୋଟିଏ ମୁହୂର୍ତ୍ତ ପାଇଁ ଉଇଁଥିଲେ
ମନ-ଆକାଶରେ;
କଳ୍ପନା ଜୀବନ୍ତ ହେଲା
ସେମାନଙ୍କ ରୂପ ଉଷ୍ଣତାରେ ।
ସେମାନଙ୍କ ନିମନ୍ତ୍ରଣ
ନାରୀତ୍ୱର ପଦ୍ମଗଂଧ ସବୁ
ତୁମକୁ ପାରିଲା ନାହିଁ
କେତେବେଳେ କରି ହାୟ କାବୁ ।
ଭ୍ରମରକୁ ଫୁଲ ଡାକେ
ପୁରୁଷକୁ ନାରୀର ଇସାରା ।
ତୁମପାଖେ ତୁଚ୍ଛ ହେଲା
ମଉଳିଲା ଗୋଲାପ ପସରା ।
ପ୍ରକୃତିର ପ୍ରେମିକ ହେ;
ମିଳନର ଯୋଗସୂତ୍ର ଖୋଜି
ବାମଣ୍ଡାରେ ପାଦ ଦେଲ
ତୁମ କଥା ମନେପଡ଼େ ଆଜି ।

ମାଟିକୁ ଚିହ୍ନିଲ ତୁମେ
ଗଛଲତା ସଂଗୀତ-ଶୃଙ୍ଗାର
ପ୍ରଧାନପାଟର ଶୋଭା
ଶବ୍‌ଦ ପୁଣି ପାହାଡ଼ ଭଂଗାର-
ପାଣି ଭାଂଗେ ପାହାଡ଼କୁ
ଯୁଗ ଯୁଗ ସେ ଶବ୍‌ଦ ଶୁଭୁଚି
ସକାଳଠୁ ରାତ୍ରି ଶେଷଯାଏ
ସେହି ଶବ୍‌ଦ କାନରେ ବାଜୁଚି ।
ପାଣି କରେ ଆକ୍ରମଣ
ପାହାଡ଼କୁ ପ୍ରଚଣ୍ଡ ଭାବରେ
ଦେହରେ ବେପଥୁ ଜାଗେ
ଏଇ ଦୃଶ୍ୟ ବିରଳ ଧରାରେ ।
ଏଠି ଆକାଶ ସୁନ୍ଦର
ପାହାଡ଼ ଓ ପ୍ରପାତ ସୁନ୍ଦର
ପ୍ରକୃତିର ଏଠି ସତେ
ହୋଇଚି ବା ଦିବ୍ୟ ରୂପାନ୍ତର
ପ୍ରଧାନପାଟ ବା ସତେ ସିଡ଼ି ଏକ
ସ୍ୱର୍ଗକୁ ଯିବାର ।
ଧନ୍ୟ କବି ରାଧାନାଥ
ଏଠି ଆଜି ତୁମକୁ ମୁଁ ଦେଖେ
ତୁମେ ତ ଜୀବନ୍ତ ଆଜି
ଏ ମାଟିର ପ୍ରତିରେଣୁ ପାଖେ ।
ତୁମେ ତ ଅମର ଆଜି
ତୁମ ସ୍ମୃତି ପ୍ରତିଟି ହୃଦରେ
ତୁମେ ତ ବଂଚିଛ ଆଜି
ଭୀମକାନ୍ତ ଏ ଗିରି କନ୍ଦରେ ।
ତୁମର ରହିବା ସ୍ଥାନ
ତୁମର ବସିବା ସ୍ଥାନ

କବିତା ଓ ନିବନ୍ଧ ଲେଖାର
ଶୂନ୍ୟ ଆଜି ହେଲେ ମଧ୍
ଅନୁଭବେ ତୁମରି ସତ୍ତାର ।
ମାଟି ପାଣି ପାହାଡ଼କୁ
ପଚାରେ ମୁଁ ତୁମ କଥା ଆଜି
ସଭିଏଁ କହନ୍ତି କିନ୍ତୁ
କବିବର ତୁମକୁ ହିଁ ଖୋଜି
ସେମାନେ ଅପେକ୍ଷାରତ
ତୁମେ ପୁଣି ନିଶ୍ଚୟ ଆସିବ
ତୁମରି ସ୍ୱର୍ଶରେ ପୁଣି
ଏ ମାଟିକୁ ଜୀବନ୍ତ କରିବ ।
ଦେବଗଡ଼ ମନ୍ଦିରର
ତୁମେ କବି ଗରୁଡ଼ଖମ୍ବ ଯେ'
ମାଟିରୁ ଆକାଶ ଛୁଏଁ
ତୁମ କୀର୍ତ୍ତି ଅନେକ ଲମ୍ବ ଯେ ।
ତୁମର ଅମୂଲ୍ୟ ଦାନ
ତାହା ସତେ କଳ୍ପନା ଅତୀତ
ତୁମରି ଅଦର୍ଶନରେ
କିଏ ଏଠି ନୁହଇ ବ୍ୟଥିତ ?
ତୁମର ତୁଳନା ନାହିଁ
ତୁମେ କବି ତୁମରି ତୁଳନା
ଗୋଟିଏ ପ୍ରାର୍ଥନା ଖାଲି
ଏ ମାଟିକୁ କଦାପି ଭୁଲନା ।
ଯେଉଁଠାରେ ଥାଅ ତୁମେ
ତୁମ ଆତ୍ମା ଯେଉଁଠି ବିଚରୁ
ଯୁଗ ଯୁଗ ଶତାବ୍ଦୀ ଶତାବ୍ଦୀ
ଏ ମାଟିକୁ ଆଶୀର୍ବାଦ କରୁ । ■■■

# ବାମଣ୍ଡା ରାଜପ୍ରସାଦ

ବାମଣ୍ଡାର ହେ ରାଜପ୍ରାସାଦ !
ତୁମ ଆବିର୍ଭାବ
କେଉଁ ଏକ ଆଶ୍ଚର୍ଯ୍ୟ ସମୟେ
ସେ'ଦିନ ନିଶ୍ଚୟ ସୂର୍ଯ୍ୟ
ସ୍ପଷ୍ଟ ଥିଲା ପୂର୍ବ ଦିଗ୍‌ବଳୟେ ।
ତୁମ ଚତୁଃସୀମା ଘେରି
ଗଡ଼ଖାଇ ଅଭୟ-ଚାନେଲ୍
ପଛରେ ପ୍ରଧାନପାଟ,
ଶକ୍ତ ଏକ କାନ୍ଥ ପରି ସବୁଜ ପାହାଡ଼,
ଆଗରେ ଧୂସର ପଥ
ହୁଏତ ନିଷିଦ୍ଧ,
ତୁମେ ମଗ୍ନ ତପସ୍ୟାରେ
ତୁମେ ପୁଣି ମୂକସାକ୍ଷୀ,
ମୂକ ଇତିହାସ,
ପ୍ରଣୟର ନୀଳଶାଢ଼ି ମେଲି
ହସ ଆଉ ପ୍ରାଚୁର୍ଯ୍ୟର
ତୁମେ ଏକ ଅଦ୍ଭୁତ-ଆବାସ ।
ତୁମ ଜନ୍ମତିଥି ବେଳେ
ଏଠାକାର ସମଗ୍ର ଅଞ୍ଚଳେ
ଜାଗିଥିବ କେତେ ଉନ୍ମାଦନା,

ତୁମରି ଖିଆଲି ମନ
କରିଥିବ ଅର୍ଦ୍ଧରାତ୍ରେ
କେତେ କଳପନା ।
ତୁମ ରାଣୀହଂସପୁର
ଶିଳ୍ପୀର ତୂଳୀରେ ହାୟ
ଚାହିଁଥିବ ହେବାକୁ ଅମର ।

ହେ ରାଜପ୍ରାସାଦ !
ତୁମର ଅନ୍ତୁଡ଼ି ଘରେ
କେତେ ଶିଶୁ ପୁତ୍ରକନ୍ୟା
ଜନ୍ମନେଲେ,
ମାତାର ଜରାୟୁ ଚିରି
ସେମାନେ କାନ୍ଦିଲେ,
ଭବିଷ୍ୟତ ଜୀବନରେ
ମାତୃତ୍ୱର ସଫଳତା
ପ୍ରଚାର ବି କଲେ ।
ସାହିତ୍ୟ ଓ ସଂସ୍କୃତିର
ବିରାଟ ପ୍ରାନ୍ତରେ
ସେମାନଙ୍କ ପଦଚିହ୍ନ
ରଖିଦେଇ ଗଲେ ।

ମଖମଲି ପ୍ରାସାଦର
ଅସ୍ୱଚ୍ଛ ଆଲୋକେ
ନୂପୁର ଶିଞ୍ଜିତ ପଦେ
ମଧ୍ୟରାତ୍ରି ଆଖିର ପଲକେ
କେତେ ରାସନୃତ୍ୟ ଆଉ
ଗୀତର ଗୁଞ୍ଜନ,

କେତେ ପ୍ରେମ ପୁଷ୍ପଧନୁ
ହେଲା ଭଗ୍ନ,
କେତେ ଯେ କୁମାରୀ
ନୂଆ ହୋଇ ଲେଖିଥିବେ
ପ୍ରେମ-କାବ୍ୟ
ତାହାର କୌଣସି ଚିହ୍ନ
ଅଦ୍ୟାବଧି ଯଦ୍ୟପି ବା ନାହିଁ,
କିନ୍ତୁ ଏଇ ପ୍ରାସାଦର
ତୂଳୀଶିଳ୍ପ ଆଜିଯାଏ କହି
କେଉଁ ଦୂର ଇତାଲୀୟ ଶିଳ୍ପୀର ତୂଳିକା
ରୂପ ଦେଲା ରାଜାଙ୍କର କଳ୍ପନାକୁ,
ତାହା ଆଜି ବହୁଦିନ ପରେ
ମେଘଢଙ୍କା ଜହ୍ନ ପରି ଫିକା ।
ଏଠାର ପ୍ରତିମାମାନେ
ଏଠାକାର କାନ୍ଥ ଛବିମାନେ
ଗୋଟିଏ ଗୋଟିଏ ପୃଷ୍ଠା
ରସଘନ କାବ୍ୟ କବିତାର ।
ପ୍ରେମର ଗଙ୍ଗୋତ୍ରୀ ଏଠି
ଖୋଲିଦିଏ ନୂତନ ଝରଣା
ବୟସର ଚଉହଦି
ମାନେ ନାହିଁ ବାରଣ ବା ମନା ।
ଯାଦୁକର ଯେଉଁପରି
ବୃଦ୍ଧକୁ ଯୁବକ କରେ,
ଯୁବକକୁ କରଇ ତିର୍ଯ୍ୟକ
କାମନାର ଭଉଁରିରେ
ଅସଂଖ୍ୟ ବୁଡ଼ନ ଦିଏ
ବହୁ ନାଗରିକ,

ଇନ୍ଦ୍ରଜାଲି ବୁଝାମଣା
ଅବୋଧ ଦୁର୍ବୋଧ;
ହେ ରାଜପ୍ରାସାଦ ତୁମେ
କାଚପାତ୍ର ଏକ
ଭରାଥିବା ମଦ୍ୟ
ଅସରନ୍ତି କାମନାର
ମନଛୁଆଁ ପଦ୍ୟ ।

ଆଜି ବହୁଦିନ ପରେ
ପଥିକ ମୁଁ ଏ ସହରେ
ଦେଖୁଥିଲି ତୁମର ଚେହେରା,
ତାହାରି ଭିତରେ ହାୟ
ଖୋଜୁଥିଲି ମନର ନାୟିକା
ବ୍ୟସ୍ତ କରୁଥିଲା ମତେ
ପୌରୁଷର ଦମ୍ଭ-ଅହମିକା ।
ଭାବୁଥିଲି ପ୍ରେମ ସଂଗେ
ବିରହ ବି ଥାଏ
ସମ୍ରାଟର ଦୁର୍ଜୟ କାମନା
ପ୍ରେମ ପାଇଁ ହିଂସ୍ରଗୀତ ଗାଏ ।

"ମୁକୁଟ ମଣ୍ଡିତ ରାଜଶିର
ନୁହଁଇ ଶାନ୍ତି ଆସ୍ପଦ
ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ
କରଇ ଅସ୍ଥିର
ଆଜି ଯେ ରାଜେନ୍ଦ୍ରାସନେ
କାଲି ସେ ଫକିର ।

କେତେ ଯୁଦ୍ଧ ବିଦ୍ରୋହର
ନାଗଫେଣୀ ତଳେ
ମହାକାଳ ସମୁଦ୍ରର
ସଫେନ ଲହରେ
ଠିଆ ହେଉ ହେଉ ତୁମେ
ପଡ଼ିଲ ଝାଉଁଳି
ଗ୍ରୀଷ୍ମରେ ଜଳିଲ ଅବା
ଘାସଲଟା ପରି ।

ତୁମର ମାର୍ବଲ ଛାତି
ଝଣଝଣ ଗ୍ଲାସ୍‌ର ଆବାଜ
ତୁମର ଚିକ୍କଣ ଦେହ
ଆଜି ହାୟ ଗତାୟୁଃ ଓ ସ୍ମୃତି ।
ସମସ୍ତ ପ୍ରେମର ଶେଷ
ଅତ୍ୟାଚାର ଶୋଷଣର ଶେଷ
ଯାହାକିଛି ରହିଛି
ବୁନିୟାଦୀ ସାହିତ୍ୟର
କୀର୍ତ୍ତି ଅବଶେଷ ।

ତୁମ ପ୍ରାଣାଙ୍କରେ ଆଜି
ଦୀର୍ଘ ଏକ ପୂର୍ଣ୍ଣଚ୍ଛେଦ ଟାଣି
ସମୟ ହସୁଚି ଦେଖ
ହସୁଚି ଏ ପ୍ରପାତର ପାଣି ।
ତୁମର ଜୀବନ ଆଜି ଇତିହାସ
ଛାତ୍ରଛାତ୍ରୀ
ନାଗରିକ ନାଗରିକା ପାଇଁ
ଆଜି ରାଜାପ୍ରଜା ତ ନାହାନ୍ତି
ତୁମେ ଆମେ ସବୁ ଭାଇଭାଇ ।



# ବସନ୍ତ ନିବାସ ଓ ଲଳିତ ବସନ୍ତ

ସମୁଦାୟ ନାଟକରେ
ଦୁଇଜଣ ଅଭିନେତ୍ରୀ
ଅନେକ ନାୟକ
ପାହାଡ଼ର ସବୁଜର ମଂଚ ବା
ଅଭିନୟ କ୍ଷେତ୍ର ।
ସାରା ସହରରେ
ଭରପୂର ଦର୍ଶକ-ଦର୍ଶିକା
ଅଥବା
ତୁମେ ଯଦି ପାହାଡ଼କୁ
ସମୁଦ୍ର ବୋଲି ଭାବ
(ଭାବିବା ଅସ୍ୱାଭାବିକ ନୁହେଁ)
ଏଇ ସମୁଦ୍ରରେ
ଦୁଇଟି ଉଜ୍ଜ୍ୱଳ ମୁକ୍ତା
ଲଳିତ ବସନ୍ତ ଆଉ
ବସନ୍ତ ନିବାସ ।
ବୈଶାଖର ନିଆଁ ଜଳେ
ପବନରେ ଅଜସ୍ର ଉତ୍ତାପ
ଦେହସବୁ କ୍ଷତାର୍ତ୍ତ ଓ
ମନ ବିକଳାଙ୍ଗ
ତୁମେ ଚାହଁ ମୁକ୍ତି
ଆତ୍ମ-ଦହନରୁ ।

ତୁମେ ଚାହଁ ପ୍ରେମ-ଅଭିସାର
ତୁମେ ଚାହଁ ଭଲପାଇବାକୁ
କରିବାକୁ ଏକାନ୍ତ ନିଜର ।
ତୁମେ ଚାହଁ ଜାଳିବାକୁ
ଦୀପ ଅନିର୍ବାଣ
ଗିରିକନ୍ୟା ଲମ୍ଫ ଦିଏ
ଅଜସ୍ର ତା' ପ୍ରେମ ନିବେଦନ ।
ଲଳିତ ବସନ୍ତ ଆଉ
ବସନ୍ତ ନିବାସ
ସୌନ୍ଦର୍ଯ୍ୟର ପ୍ରଥମ-ନିର୍ଯାସ ।
ମୁଁ ଭଲପାଇଚି ଆଜି
ଦୁଇଟି ତାରକା,
ତାରକାର ସମସ୍ତ ଆଲୋକ
ମୁଁ ଭୁଲିଯାଇଚି ହାୟ
ବୟସର ସୀମା
ଦୁଃଖଭୋକ ଶୋଷ,
ମୁଁ ଏଠି ଗାଇଚି ଖାଲି
ପ୍ରାଣଭରି ନୂତନ କବିତା
ଚାହୁଁଚି ପାରିରି ଖନ୍ଦେ
ଲିପିବଦ୍ଧ କରିବାକୁ ଅମର ଛବି ତା' ।
ସୂର୍ଯ୍ୟୋଦୟ ନ ହେଉଣୁ
ମୁଁ ଉଠିଚି ନିଦ୍ରା ପରିହରି
ଉପଭୋଗ କରିଅଛି
ବଙ୍ଗଳାର ପଛପାଖ
ନଗ୍ନ ସୌନ୍ଦର୍ଯ୍ୟକୁ ।

ହେ ବଙ୍ଗଳା ନୀରବ ନାୟିକା !
ତୁମେ ତ ଦେଖିଚ ଏଠି
କେତେ ଆଖ୍ୟାୟିକା
ଖରାବର୍ଷା କାକରରେ
କେତେ ଖେଳ ନୀଳ ନୟନର
କେତେ ଭାଷା ଅବ୍ୟକ୍ତ ପ୍ରାଣର,
ସବୁ ଦେଖି ଦେଖି ତୁମେ
ହଠାତ୍ ବା ପାଲଟିଛ
ନିର୍ବାକ ପଥର,
ଆଜି ହାୟ ଲୁହ ଝରେ
ଝରଝର ଆଖିରୁ ତୁମର ।
ତୁମର ଏ ଲୁହ ସବୁ
ଝରଣାରେ ମିଶିଯାଏ
ତଳର ସହର ସବୁ ଦେଖୁଥାଏ ।
ତୁମରି ଶେଯରେ ଶୋଇ
ଝରକାରେ ବାହାରକୁ ଚାହିଁ
ମୁଁ ଦେଖେ ଗଙ୍ଗୋତ୍ରି ଦୃଶ୍ୟ
ପ୍ରଧାନପାଟର
ଅନେକ ସ୍ମୃତିର ଶିଖା
ଅନେକ ବି ଇତିହାସ
ବାମଣ୍ଡା ମାଟିର ।



# ପ୍ରଧାନପାଟ

ଐରାବତର ଶୁଣ୍ଢରୁ
ଅବିରାମ ପାଣି ଝରେ
ଯାଦୁକରମାନଙ୍କର ଶୂନ୍ୟ ପାତ୍ରରୁ
ଗଙ୍ଗା ଅବା ମହାନଦୀର
ପାଣି ପରି । ପାହାଡ଼ ଦେହରେ
ଲେସିହୋଇ ଆସୁଥିବା ଏଇ ପାଣିରେ
ସୂର୍ଯ୍ୟକିରଣ ପଡ଼େ
ସବୁଯାକ ପାଣି
ସୁନା ପାଲଟିଯାଏ ।

ବିଶ୍ରାମ ନାହିଁ
କ୍ଲାନ୍ତି ନାହିଁ
ଆଖିପତା ବନ୍ଦ ହେବାର ନାହିଁ;
ଦିନ ଦିନ ମାସ ମାସ
ବର୍ଷ ବର୍ଷ ଯୁଗ ଯୁଗ
ତାରିଖ ବଦଳେ, ମାତ୍ର ଏଠି କିଛି
ପରିବର୍ତ୍ତନ ନାହିଁ ।
ଜଳସ୍ରୋତରେ ଚଲାବାଟରେ
ବାଧା ଆଉ ବଂଧନ ନାହିଁ ।
ତାରାଭରା ଆକାଶର ତଳେ

ପାହାଡ଼ର ଘନ ସବୁଜିମା ଭିତରେ
ଏକ ସାଉଁଳିଆ ସରୁ ରାସ୍ତା ପରି
ପ୍ରଧାନପାଟ ଜଳପ୍ରପାତ ।
ଦିଶେ ଦୂରକୁ - ବସନ୍ତ ନିବାସର
କୋଠରି ଭିତରକୁ ।

ମୁଁ ପାଖକୁ ଗଲି
ପଥର ଉପରେ ଡେଇଁ ଡେଇଁ
ପାହାଡ଼ଘେରା ପ୍ରାକୃତିକ
ଜଳକୁଣ୍ଡକୁ ଛୁଇଁଲି
ଚାରିଆଡ଼ ସୁନ୍ଦର
ଆଉ ଭୟଙ୍କର ।

ଡାହାଣ ପାଖର ଗୁମ୍ଫାରେ
ପଥରର ବାଘ ଆଉ ସାପ,
କାହିଁକି ଏମାନେ ଏଠି... ?

କିମ୍ବଦନ୍ତୀ ଶୁଣିବା ହୁଅନ୍ତୁ-
କହିଲେ ସ୍ଥାନୀୟ ଲୋକ
ସାଥୀ ସାମ୍ବାଦିକ ।
ଅନେକଦିନ ତଳେ
ଏଇ ଗୁମ୍ଫାର ଭିତରେ
ରହୁଥିଲେ ବାଘ ଆଉ
ସାପ ସାଥୀ ହୋଇ...
ରଜାପୁଅ ଦିନେ
ଶିକାର କିରବାକୁ ଆସି
ଠାବ କଲେ ଏଇ ବାଘକୁ ।

ବାଘ ଶିକାର ହେଲା
ତା'ର ଶେଷ ଗର୍ଜନରେ
ପାହାଡ଼ର ସର୍ବାଙ୍ଗ ଥରିଲା ।
ରଜାପୁଅ ଖୁସି,
ଗଲେ ମୃତବାଘକୁ ଦେଖିବେ;
କିନ୍ତୁ ମଖମଲି ବାଘର ଶବକୁ
ଦେଖୁ ଦେଖୁ, ବିଷାକ୍ତ ସାପର ଦଂଶନ
ରଜାପୁଅ ଟଳିପଡ଼ିଲେ ।

ଭଗ୍ନମନ ଦରଦୀ ରାଜା
ତାହାପରେ ଏଇଠି
ଏ ମୂର୍ତ୍ତି ତୋଳାଇଲେ ।
ଏଇ ମୂର୍ତ୍ତିର ସାମ୍ନା
ପାହାଡ଼ର ମେଖଳାରେ
ଏବେ ବି ଶୂନ୍ୟ ଆସନ
ଯେଉଁଠି ବସି
କବିତା ଲେଖୁଥିଲେ
ସାହିତ୍ୟ-ରସିକ ରାଧାନାଥ ।
ଏଇ ଜଳଧାର
ଅନେକ ଦେଖିଚି ଏଠି
ଅନେକ ବି ଅଂଗେ ନିଭେଇଚି,
ପୃଥିବୀର ଅଜସ୍ର ମନକୁ
ଟାଣି ଟାଣି ଏଠାକୁ ଆଣିଚି ।
ଏ ଶୋଭା ଦେଖିବା ପାଇଁ
ଆସିଛନ୍ତି ଦର୍ଶକ-ଦର୍ଶିକା
ଓଡ଼ିଶାରୁ, ଓଡ଼ିଶା ବାହାରୁ
ସମସ୍ତଙ୍କୁ ମୁଗ୍ଧ କରି

ଫେରାଇଛି ଏଇ ଗିରିନଦୀ
ଏ ସୌନ୍ଦର୍ଯ୍ୟ ଅନୁପମ
ମମତାର କଲ୍ୟାଣୀ - ଦ୍ରୌପଦୀ ।
ପଥରର ମେଘନାଦ ପାଚେରି ଭିତରେ
ବନସ୍ତର ଘନଛାୟା ତଳେ
ପାଣିର ରହସ୍ୟ ଯହିଁ
ରୂପାନ୍ତର ସହସ୍ର ତାରାରେ;
ତହିଁ ଛିଡ଼ାହେଲେ
ଭୁଲିଯିବା ସଂସାରର ସବୁ ଜଂଜାଳକୁ
ଫେରିବାର ନୁହେଁ ହାୟ
ଛାଡ଼ି ଏଇ ସତ୍ୟ ସୌନ୍ଦର୍ଯ୍ୟକୁ ।
ଏ ନିବିଡ଼ ଆକର୍ଷଣ
ଚିରନ୍ତନ ମଳୟର ବାସ
ଏ ପଥର ଗହ୍ୱର ବା
ମଣିଷର ଆଦିମ ନିବାସ ।
ଶୈଶବର ଧୂଳିଖେଳ
ଯୌବନର ମଧୁ ଫୁଲଶଯ୍ୟା
ବାର୍ଦ୍ଧକ୍ୟର ମୌନ ବାରାଣସୀ
ଏଠି ନାହିଁ ଭୟ କ୍ରୋଧ ଲଜ୍ଜା ।



# ଦାସିଆ ଅଜା

ଏହା ମଧ୍ୟ ୧୯୭୫ ମସିହାର କଥା ।

ବର୍ତ୍ତମାନ ନୟାଗଡ଼ ଜିଲ୍ଲା, ସେତେବେଳର ସବ୍‌ଡିଭିଜନ ଓ ତା' ପୂର୍ବରୁ ଗଡ଼ଜାତର ନୂଆଁଗାଁ ବ୍ଲକ୍‌ରେ ଉଦୟପୁର ଏକ ଗାଆଁ । ଏହି ଗାଆଁରେ ବାସ କରୁଥିଲେ ଦାଶରଥି ପଟ୍ଟନାୟକ । ମୋର ଏହି ମନ୍ତ୍ରୀତ୍ୱ କାଳରେ ଯେଉଁଦିନ ସେ ଆସି ମୋତେ ଦେଖା କରିଥିଲେ, ତାଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଇଯାଇଥିଲି । ସେ ଥିଲେ ଜଣେ ଡେଙ୍ଗା ମଣିଷ । ଗୋରା ଦେହ । ପିନ୍ଧିଥିଲେ ଆଣ୍ଠୁଲୁଚା ଲୁଗା । ମୁଣ୍ଡରେ ବାନ୍ଧିଥିଲେ ଖଣ୍ଡେ ଗାମୁଛା । ଦେହରେ ଜାମା ନଥିଲା । ହାତରେ ଧରିଥିଲେ ଗୋଟାଏ ବାଉଁଶ ବାଡ଼ି । ମୁହଁରେ ଦାଢ଼ି । କାନ୍ଧରେ ଥିଲା ଝୁଲିଟିଏ ।

ତାଙ୍କୁ ମୁଁ ପଚାରିଲି - "ଆପଣ କିଏ ? ମୋ ପାଖକୁ କାହିଁକି ଆସିଛନ୍ତି ?"

ସେ କହିଲେ- "ମୁଁ.. (ଟିକିଏ ରହିଗଲେ) ମୁଁ ଦାଶରଥି ପଟ୍ଟନାୟକ, ଦାସିଆ ଅଜା ।"

ମୁଁ ତାଙ୍କ କଥା ଆଗରୁ ଜାଣିଥିଲି । ସେ ତାଙ୍କ ନାଆଁ କହିବା ପରେ ମୁଁ ଚେୟାରରୁ ଉଠିପଡ଼ି ହାତ ଦେଖାଇ ତାଙ୍କୁ କହିଲି- "ବସନ୍ତୁ ।"

ସେ ବସିବାକୁ ନାରାଜ । କହିଲେ- "ବସି ଖାଇଲେ ନଈବାଲି ସରେ । ମୁଁ ବସିବି କାହିଁକି ? ମୋ ବାଞ୍ଛାନିଧି ପାଠାଗାର ପାଇଁ ମୁଁ ଭିକ ମାଗିବାକୁ ଆସିଚି ।"

ମୁଁ କହିଲି- "ବସନ୍ତୁ । ବେଶୀ ସମୟ ନୁହେଁ । ମୋ ସହିତ ବସି ଟିକିଏ ଚାହା ଖାଆନ୍ତୁ ।"

ପାଠାଗାର ପାଇଁ ଦଶପଇସା, ଆଠଅଣା, ଟଙ୍କାଟିଏ ଚାନ୍ଦା ସେ ମାଗୁଥିଲେ ।

ଆମେ ଚାହା ଖାଇବା ପରେ ସେ ମୋତେ କହିଲେ- "ଆପଣ ଥରେ ଉଦୟପୁର ଆସନ୍ତୁ । ଆମ ପାଠାଗାର ଦେଖନ୍ତୁ ।"

ମୁଁ ସଂଗେ ସଂଗେ ରାଜି ହେଇଗଲି । ବ୍ୟକ୍ତିଗତ ସଚିବଙ୍କୁ ଡାକି ଯିବାଦିନ ସ୍ଥିର କରିଦେଲି । ଦିନଟି ହେଲା ତା ୯।୭।୧୯୭୫ରିଖ ।

ଯିବାବେଳେ ସେ ମୋ'ଠୁ ଗୋଟିଏ ଟଙ୍କା ନେଇ କହିଗଲେ- "ପାଠାଗାର ପାଇଁ ଆପଣଙ୍କ ଲେଖା ବହି ଓ ପାଖରେ ଥିବା ପତ୍ରିକା କିଛି ଆଣିଥିବେ । ହଁ, ଆପଣଙ୍କ ଛପା ହେଇଥିବା ବହିର କିଛି ପାଣ୍ଡୁଲିପି ଯଦି ଆପଣ ଆଣିବେ, ତାକୁ ମଧ ଆମେ ରଖିବୁ ।"

ନିର୍ଦ୍ଧାରିତ ଦିନରେ ମୁଁ ଓ 'ଧରିତ୍ରୀ' ଦୈନିକ ପତ୍ରିକାର ସଂପାଦକ ରାମନାଥ ପଣ୍ଡା ଉଦୟପୁର ଅଭିମୁଖେ ଯାତ୍ରା କଲୁ । ନୂଆଗାଁ ଡାକବଂଗଳାରେ କିଛି ସମୟ ରହିଲୁ । ମୋ' ସହିତ ଯିବା ପାଇଁ ସେ ଜଣକୁ ଛକ ପାଖକୁ ପଠାଇଥିଲେ । ସେ ଆମ ଗାଡ଼ି ଅଟକାଇ ଆମ ସହିତ ଗଲେ ।

ଛକ ପାଖରୁ ଉଦୟପୁର ଯିବାର ସଡ଼କଟା ଖୁବ୍ ଉନ୍ନତ ଅବସ୍ଥାରେ ନଥିଲା । ମୁଁ ସେଠାରେ ପହଂଚିବା ପରେ ତାଙ୍କର କି ଆନନ୍ଦ । ପାଠାଗାର ବୁଲି ଦେଖିଲି । ପୁସ୍ତକ, ପତ୍ରିକା, ପାଣ୍ଡୁଲିପି ଆଦି କିଭଳି ପରିଶ୍ରମ କରି, ବିଭିନ୍ନ ସ୍ଥାନରେ ବୁଲି ସେ ସଂଗ୍ରହ କରିଛନ୍ତି ଓ କରୁଛନ୍ତି ବିଶଦ ଭାବରେ ବର୍ଣ୍ଣନା କଲେ । ମୋ ଲେଖା କିଛି ବହି, ପତ୍ରିକା ଓ ପାଣ୍ଡୁଲିପି ମୁଁ ନେଇଯାଇଥିଲି । ତାହାସବୁ ଦେଲି ।

କିଛିସମୟ ବିତାଇବା ପରେ ମୋ' ମନକୁ ଆସିଲା ଖାଲି ପାଠାଗାର ନୁହେଁ, ସେଠାରେ ଗୋଟିଏ ସାହିତ୍ୟ ପରିଷଦ ମଧ ଗଢ଼ାହେବା ଉଚିତ । ତାଙ୍କୁ କହିଲି- "ଏଠି ଆପଣ ଯାହାସବୁ କରିଛନ୍ତି, ତାହା ସହିତ ସାହିତ୍ୟ ପରିଷଦଟିଏ କରନ୍ତୁ ।"

ସେ କହିଲେ- "ଆଜି କରିବି । ଆପଣ ସଭାପତି ହେଲେ ବୋଲି ଦସ୍ତଖତ କରନ୍ତୁ ।"

ମୁଁ କହିଲି- "ମୁଁ ମନ୍ତ୍ରୀ ଅଛି, ସଭାପତି ନ ହୁଏ । ରାମନାଥବାବୁଙ୍କୁ ସଭାପତି କରନ୍ତୁ ।"

ରାମନାଥ ପଣ୍ଡା ସଭାପତି ଭାବେ ଦସ୍ତଖତ କଲେ । ନାମ ରଖାଗଲା "ଯଦୁମଣି ସାହିତ୍ୟ ସଂସଦ" ।

ନୟାଗଡ଼ ପୂର୍ବରୁ ଥିବା ଇଟାମାଟିର ଯଶସ୍ୱୀ କବି ଯଦୁମଣି ମହାପାତ୍ର (ଖ୍ରୀ ୧୭୮୧-୧୮୬୬) ନୟାଗଡ଼ ରାଜଦରବାରରେ ସଭାକବି ଥିଲେ ଓ ତାଙ୍କରି ନାମାନୁସାରେ ଉକ୍ତ ଅନୁଷ୍ଠାନର ନାମକରଣ କରାଗଲା । ମୋରି ଉପସ୍ଥିତିରେ ଏବଂ ଦାଶରଥି ପଟ୍ଟନାୟକଙ୍କ ମନୋନୟନରେ ଏହାର ପରିଚାଳନା କମିଟି ଗଠନ କରାଗଲା ।

ରାମନାଥ ପଣ୍ଡା- ସଭାପତି; ସହଦେବ ପ୍ରଧାନ- ଉପସଭାପତି; ଦାଶରଥି ପଟ୍ଟନାୟକ- ସମ୍ପାଦକ; ପ୍ରବୀର କୁମାର ପଟ୍ଟନାୟକ- ସହ-ସମ୍ପାଦକ ଓ କୋଷାଧ୍ୟକ୍ଷ; ଭଗବାନ ନାୟକ ବର୍ମା, ଶେଖ୍ ଅବଦୁଲ୍ ମନାନ ଓ ଗୋପୀନାଥ ମିଶ୍ର ସଭ୍ୟ ଭାବେ ରହିଲେ ।

ଅନୁଷ୍ଠାନର ପରିଦର୍ଶନ ଖାତାରେ ସେଦିନ ମୁଁ ଯାହା ଲେଖିଥିଲି ତହିଁରୁ କିଞ୍ଚିତ ଏଠାରେ ଉଲ୍ଲେଖ କରୁଛି-

"ଏହା ଏକ ଜାତୀୟ ତୀର୍ଥକ୍ଷେତ୍ର । ଏହାକୁ ପରିଦର୍ଶନ କରି କୃତାର୍ଥ ହେଲି । ଏହି ଅନୁଷ୍ଠାନର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ଦାଶରଥି ପଟ୍ଟନାୟକଙ୍କର ଉନ୍ନତି ଓ ଦୀର୍ଘ ଜୀବନ କାମନା କରୁଛି ।"

୧୯୭୫ ମସିହାରେ ଆରମ୍ଭ ହୋଇଥିବା "ଯଦୁମଣି ସାହିତ୍ୟ ସଂସଦ" ଓଡ଼ିଆ ସାହିତ୍ୟର ବିକାଶ ପାଇଁ କାମ କରିଆସୁଥିଲା । ଏହାର ବାର୍ଷିକ ଅଧିବେଶନରେ ପ୍ରତିଭା ସଂପନ୍ନ ବ୍ୟକ୍ତିବିଶେଷଙ୍କୁ ସମ୍ମାନିତ କରାଯାଉଥିଲା । ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ବାଞ୍ଛାନିଧି ପାଠାଗାର ଓ ଯଦୁମଣି ସାହିତ୍ୟ ସଂସଦ ପରିଦର୍ଶନ କରି ବହୁ ମୂଲ୍ୟବାନ ମନ୍ତବ୍ୟ ପ୍ରଦାନ କରିଛନ୍ତି ।

ପରବର୍ତ୍ତୀ କାଳରେ ଏହି ଅନୁଷ୍ଠାନକୁ କିଛି ଆର୍ଥିକ ସାହାଯ୍ୟ ଦିଆଯାଉଥିଲା । ୧୯୭୬ ମସିହାରେ ମୁଁ ମନ୍ତ୍ରୀ ଥିବା ସମୟରେ ଦାଶରଥିବାବୁଙ୍କୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସମ୍ମାନିତ କରିଥିଲା ।

ଏହି ଆଦର୍ଶ ପୁରୁଷଙ୍କର ଜୀବନ ଥିଲା ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ, କିନ୍ତୁ ତାଙ୍କ ଶେଷ ଜୀବନ ଥିଲା ବିଷାଦର ଗନ୍ତାଘର । ୧୯୯୩ ମସିହାରେ ସେ ସସ୍ତ୍ରୀକ ଭୁବନେଶ୍ୱର ଆସି ସାନପୁଅ ପାଖରେ ରହିଲେ । ଆସିବାବେଳେ ଅନୁଷ୍ଠାନର କାର୍ଯ୍ୟାଳୟରେ ତାଲା ପକାଇ ଆସିଲେ । ବଡ଼ପୁଅ ସହିତ ତାଙ୍କର ଅନେକ ଦିନରୁ ବିବାଦ ଓ ଅପଡ଼ ଥିଲା । ଏବେ ସାନପୁଅ ପାଖରେ ନ ରହି ଲୁଚିକରି ପଳାଇଗଲେ ଗାଆଁ ଉଦୟପୁରକୁ ।

ଅସହ୍ୟ ମାନସିକ ଯନ୍ତ୍ରଣା ସହି ନ ପାରି ୯୧ ବର୍ଷ ବୟସରେ ୩/୪ଥର ବିଷ ପିଇ ଆତ୍ମହତ୍ୟା କରିବାକୁ ଚେଷ୍ଟା କରି ବିଫଳ ହେବା ପରେ ତା ୧୨।୯।୧୯୯୭ରିଖ ମଧ୍ୟାହ୍ନ କାଳରେ ନିଜ ଘର ପାଖରୁ ଅଳ୍ପ ଦୂରରେ ଥିବା ଅଚ୍ୟୁତ ସାହୁଙ୍କ କୂଅରୁ ତାଙ୍କ ଶବ ମିଳିଥିଲା । ଏହା ହତ୍ୟା କି ଆତ୍ମହତ୍ୟା ତାହା ବିବଦମାନ ହୋଇ ରହିଛି । ଜଣେ ମହାନ୍ ସଂଗ୍ରାହକ, ସଂରକ୍ଷକ, ସାରସ୍ୱତ ସାଧକ ଦାସିଆ ଅଜାଙ୍କର ଏହିଭଳି ଜୀବନାବସାନ ଅନେକଙ୍କୁ ସ୍ତବ୍ଧ କରିଥିଲା ।

# ଜାନକୀବାବୁ କେନ୍ଦ୍ର ଉପମନ୍ତ୍ରୀ

ମୁଖ୍ୟମନ୍ତ୍ରୀ ନନ୍ଦିନୀଦେବୀଙ୍କ ବାସଭବନରେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଥାଏ । ତଳର ଅଗଣାରେ ଏହି ବୈଠକ ଚାଲିଥାଏ । ପ୍ରବେଶ କଲେ ଜାନକୀ ବଲ୍ଲଭ ପଟ୍ଟନାୟକ । ସେ କଟକ ଲୋକସଭା ଆସନରୁ ନିର୍ବାଚିତ ହୋଇ ସାଂସଦ ଥିଲେ । କିନ୍ତୁ ସେ କାର୍ଯ୍ୟକାରୀ କମିଟିର ସଦସ୍ୟ ନଥିଲେ । ସେ ନନ୍ଦିନୀଦେବୀଙ୍କୁ ଚାହିଁ ନମସ୍କାର କରିବା ମାତ୍ରେ ନନ୍ଦିନୀଦେବୀ ତାଙ୍କୁ କହିଲେ- 'ବସନ୍ତୁ' ।

ସେ ବୈଠକ ଦରିରେ ନ ବସି ପାଉଛ ଉପରେ ବସିଲେ । ବୈଠକ ଶେଷ ହେବା ପରେ ନନ୍ଦିନୀଦେବୀ ତାଙ୍କୁ ବୈଠକଖାନା ଘରକୁ ଡାକିନେଲେ । ମୋତେ ବି ଇଙ୍ଗିତ ଦେଲେ ଯିବା ପାଇଁ । ବୈଠକଖାନାରେ ଆମକୁ ବସିବାକୁ କହି ସେ ଉପର ଘରକୁ ଗଲେ । ବୈଠକରେ ଥିବା ଅନ୍ୟମାନେ ଚାଲିଗଲେ । ମୁଁ ଓ ଜାନକୀବାବୁ ତଳଘରେ ବସିଥାଉ । କେହି କାହା ସହିତ କଥାବାର୍ତ୍ତା କରୁ ନଥାଉ । ଜାନକୀବାବୁ ବେଶ୍ ଗମ୍ଭୀର ଦେଖାଯାଉଥାନ୍ତି ।

ପ୍ରାୟ ପନ୍ଦର ମିନିଟ୍ ପରେ ନନ୍ଦିନୀଦେବୀ ତଳକୁ ଆସିଲେ । ବସିବା ପରେ ଜାନକୀବାବୁଙ୍କୁ ପଚାରିଲେ- "କୁଆଡ଼େ ଆସିଲେ ଜାନକୀବାବୁ ?"

ଜାନକୀବାବୁ କହିଲେ- "ଇନ୍ଦିରାଜୀ ଚିନ୍ତାମଣି ପାଣିଗ୍ରାହୀଙ୍କୁ ଉପମନ୍ତ୍ରୀ କରିବେ ।"

ଚିନ୍ତାମଣି ପାଣିଗ୍ରାହୀ, ନନ୍ଦିନୀଦେବୀଙ୍କର ସଂପର୍କୀୟ କକା ହେବେ । ଉଭୟଙ୍କ ମଧ୍ୟରେ ଭଲ ସଂପର୍କ ନଥିଲା । ନନ୍ଦିନୀଦେବୀ ଜାନକୀବାବୁଙ୍କଠୁ ଏ କଥା ଶୁଣି ଚିନ୍ତାରେ ପଡ଼ିଗଲେ । କିଛିସମୟ ନୀରବତା । ତା'ପରେ କହିଲେ- "ହଉ, ଆପଣ ଯାଆନ୍ତୁ । ମୁଁ କାଲି ଦିଲ୍ଲୀ ଯିବି । ଏ କଥା ବୁଝିବି ।"

ସେତେବେଳେ ଭୁବନେଶ୍ୱରରୁ ଦିଲ୍ଲୀକୁ ସିଧାସଳଖ ବିମାନସେବା ନଥିଲା । ଭୁବନେଶ୍ୱର-କଲିକତା ଉଡ଼ାଜାହାଜରେ କଲିକତା ଯାଇ ସେଠାରୁ ପୁଣି ଦିଲ୍ଲୀ ଯାଉଥିବା ଉଡ଼ାଜାହାଜରେ ଦିଲ୍ଲୀ ଯିବାକୁ ପଡୁଥିଲା । ପରଦିନ ନନ୍ଦିନୀଦେବୀ ତାଙ୍କର ସଚିବ ରମାକାନ୍ତ ରଥ ଆଇ.ଏ.ଏସ୍.ଙ୍କୁ ସାଙ୍ଗରେ ନେଇ ଦିଲ୍ଲୀ ଯାତ୍ରା କରିଥିଲେ ।

ଇନ୍ଦିରାଗାନ୍ଧିଙ୍କ ପରିବାର ସହିତ ନନ୍ଦିନୀଦେବୀଙ୍କର ଖୁବ୍ ଭଲ ସଂପର୍କ ଥିଲା । ସେ ଇନ୍ଦିରାଗାନ୍ଧିଙ୍କ ସହ କଥା ହେଇ ଫେରିବା ପରେ ଜାନକୀବଲ୍ଲଭ ପଟ୍ଟନାୟକ ପ୍ରତିରକ୍ଷା ଉପମନ୍ତ୍ରୀ ହୋଇଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ଚିନ୍ତାମଣିବାବୁ କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ, ମଣିପୁରର ରାଜ୍ୟପାଳ ହୋଇଥିଲେ । ତାଙ୍କ ସହିତ ମୋର ଭଲ ସଂପର୍କ ଥିଲା ।



# ଶ୍ରୀ ସତ୍ୟସାଇବାବାଙ୍କ ଦର୍ଶନ

୧୯୭୬ ମସିହା ଦୁର୍ଗାପୂଜା ପରେ ପରେ କେନ୍ଦ୍ର କ୍ରୀଡ଼ା ରାଷ୍ଟ୍ରମନ୍ତ୍ରୀ ମାର୍ଗାରେଟ୍ ଆଲ୍‌ଭା ସବୁ ରାଜ୍ୟର କ୍ରୀଡ଼ାମନ୍ତ୍ରୀମାନଙ୍କର ଏକ ବୈଠକ ବାଙ୍ଗାଲୋର୍‌ଠାରେ ଡକାଇଥିଲେ । ସେ ବୈଠକରେ ମୋର ଯୋଗଦେବାର କଥା । ଶ୍ରୀ ସତ୍ୟସାଇ ବାବାଙ୍କର ଅଲୌକିକତା ସଂପର୍କରେ କେତେକ ସାଇଭକ୍ତଙ୍କଠାରୁ ଶୁଣିଥିଲି । ବିଶେଷ କରି ଇଂଜିନିୟର ପ୍ରହ୍ଲାଦ ପଟ୍ଟନାୟକ ସାଇବାବାଙ୍କ ବିଷୟରେ ମୋତେ ଅନେକ କଥା କହିଥିଲେ । ସ୍ଥିର କଲି ବାଙ୍ଗାଲୋର୍ ଯିବି କାର୍ ଯୋଗେ ସଡ଼କ ପଥରେ । ଯିବା ବାଟରେ ପୁଟ୍ଟପର୍ତ୍ତି ଯାଇ ବାବାଙ୍କ ଦର୍ଶନ କରିବି । ପ୍ରହ୍ଲାଦବାବୁଙ୍କଠାରୁ ଯିବା ରାସ୍ତା ସଂପର୍କରେ ଅବଗତ ହେଲି । ପହଞ୍ଚିବାକୁ ଅନ୍ୟୂନ ତିନିଦିନ ସମୟ ଲାଗିବ । ବାଟରେ ଦୁଇରାତି କେଉଁଠି ରହିବି ତାହା ମଧ୍ୟ ପ୍ରହ୍ଲାଦବାବୁ ନିର୍ଦ୍ଧାରଣ କରିଦେଲେ । ସେହି ଅନୁସାରେ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକ ସରକାରଙ୍କ ପାଖକୁ ଚିଠି ପଠାଇ ଦିଆଗଲା ।

ଦୁଇଟି କାର୍‌ରେ ମୁଁ ଓ ମୋ ପରିବାର ଓ ମୋ ପି.ଏ. ଯାତ୍ରାରମ୍ଭ କଲୁ । ଓଡ଼ିଶା ସୀମା ପାର ହୋଇ ଆନ୍ଧ୍ରସୀମା ଭିତରକୁ ପଶିବା ବେଳେ ଆନ୍ଧ୍ର ସରକାରଙ୍କର ଏକ ପୋଲିସ୍ ଜିପ୍ ଆମ ଅପେକ୍ଷାରେ ଥିଲା । ସେ ଜିପ୍‌ରୁ ଜଣେ ନିରାପତ୍ତାରକ୍ଷୀ ଆସି ଆମ ଗାଡ଼ିରେ ବସିଲା । ତା'ପରେ ସେ ଜିପ୍ ଆମ ଆଗେ ଆଗେ ଚାଲିଲା । ପ୍ରଥମ ରାତି ବିଶାଖାପାଟଣାରେ କଟେଇଲୁ । ଖାଇବାର ବ୍ୟବସ୍ଥା ରାଜ୍ୟ ସରକାର କରିଥିଲେ । ଦ୍ୱିତୀୟ ଦିନ ରାତ୍ରିରହଣି ବିଜୟୱାଡାରେ । ପରଦିନ ଅନନ୍ତପୁର ଦେଇ ପୁଟ୍ଟପର୍ତ୍ତି ଯିବୁ । ରାତି ୮ଟାରେ ଅନନ୍ତପୁର ବଜାରରେ ଚା' ଖାଇବା ପାଇଁ ଗାଡ଼ି ରଖିଲୁ । ମାତ୍ର ସବୁ ଦୋକାନ ବନ୍ଦ । ରାତି ଆଠଟା ପରେ ସବୁ ଦୋକାନ ବନ୍ଦ । ଅନନ୍ତପୁରରୁ ପୁଟ୍ଟପର୍ତ୍ତିଆଡ଼େ ଚାଲିଲୁ । ଗୋଟାଏ ନିଛାଟିଆ

ଜାଗାରେ ଦୁଇଜ଼ଣ ଲୋକ ହାତଟେକି ଆମ ଗାଡ଼ିକୁ ରହିବାକୁ ଇସାରା ଦେଲେ । ଆନ୍ଧ୍ରପ୍ରଦେଶ ପୋଲିସ୍ ଜିପ୍ ଆମ ସାଙ୍ଗରେ ଆଉ ଆସୁନଥିଲା । ଆମ ଗାଡ଼ିରେ ବସିଥିବା ନିରାପତ୍ତାରକ୍ଷୀ ଆମ ଗାଡ଼ିକୁ ଅଟକାଇ ଓହ୍ଲାଇ ପଡ଼ିଲା । ସେମାନେ ଆମ ଗାଡ଼ି ପାଖକୁ ଆସି ପଚାରିଲେ- "ଓଡ଼ିଶାର ଶିକ୍ଷାମନ୍ତ୍ରୀ ଏ ଗାଡ଼ିରେ ଅଛନ୍ତି କି ?"

ତାଙ୍କ କଥା ଶୁଣି ମୁଁ ଓହ୍ଲାଇ ପଡ଼ିଲି । ସେମାନେ ଆସି ମୋତେ ନମସ୍କାର କରି କହିଲେ- ସେ ଦୁଇଜଣ ହେଉଛନ୍ତି ସେଠାକାର ତହସିଲଦାର ଓ ଅତିରିକ୍ତ ତହସିଲଦାର ।

ମୁଁ ଗାଡ଼ି ଅଟକାଇବାର କାରଣ ପଚାରିବାରୁ କହିଲେ- "ପୁଟ୍ଟପର୍ତ୍ତିରେ ସାଇବାବା ନାହାନ୍ତି, ସେ ଅଛନ୍ତି ହ୍ୱାଇଟ୍‌ଫିଲ୍‌ଡରେ ।" ପୁନଶ୍ଚ କହିଲେ- "ଆଗକୁ କିଛି ଦୂରରେ ଥିବା ଡାକବଙ୍ଗଳାରେ ଆପଣଙ୍କ ଖାଇବା ରହିବାର ବ୍ୟବସ୍ଥା କରାଯାଇଛି । ସେଇଠି ରାତିରେ ରହି ସକାଳେ ବାଙ୍ଗାଲୋର ଯିବେ । ବାଙ୍ଗାଲୋର୍‌ର କିଛି ଆଗରୁ ହ୍ୱାଇଟ୍‌ଫିଲ୍‌ଡ ଯିବାକୁ ପଡ଼ିବ ।"

ତହସିଲ୍‌ଦାରଙ୍କ ଜିପ ଆମ ଆଗେ ଆଗେ ଚାଲିଲା । ରାତିରେ ଗୋଟିଏ ଛୋଟ ଡାକବଂଗଳାରେ ରହି ସକାଳେ ବାହାରିଲୁ । ବାଙ୍ଗାଲୋର ଆଉ କିଛିବାଟ ଥାଏ, ଗୋଟାଏ ଥାନା ପଡ଼ିଲା । ମୁଁ ଗାଡ଼ି ଅଟକାଇବାକୁ କହିଲି । ଗାଡ଼ି ଅଟକିଲା । ନିରାପତ୍ତାରକ୍ଷୀଙ୍କୁ କହିଲି, ଥାନା ଅଫିସରଙ୍କୁ ଡାକିବାକୁ । ସେ ଆସିବାରୁ ତାଙ୍କୁ ହ୍ୱାଇଟ୍‌ଫିଲ୍‌ଡ ବିଷୟରେ ପଚାରିଲି ।

ସେ କହିଲେ- "ହ୍ୱାଇଟ୍‌ଫିଲ୍‌ଡ ଯିବାକୁ ଏଇଠୁ ବାଟ ଅଛି । ସେଠି ପହଞ୍ଚିବା ପରେ ଏଠିକି ଆଉ ନ ଫେରି, ସିଧା ସେଠୁ ବାଟ ଅଛି ବାଙ୍ଗାଲୋର୍‌କୁ ।"

ସେ ପୁଣି କହିଲେ- "ମୁଁ ଜଣେ କନେଷ୍ଟବଳକୁ ଆପଣଙ୍କ ସାଙ୍ଗରେ ପଠାଉଛି । ସେ ଆପଣଙ୍କୁ ବାଟ ଦେଖାଇ ନେଇଯିବ ।"

ମୁଁ କହିଲି- "ଆମେ ଯଦି ସେଇଠୁ ଅନ୍ୟ ବାଟରେ ବାଙ୍ଗାଲୋର୍ ଯାଉ ସେ ପୁଣି ଏଠିକି ଫେରିବ କେମିତି ?"

ଥାନା ଅଫିସର କହିଲେ- "ତା ଫେରିବା ପାଇଁ ଚିନ୍ତା କରନ୍ତୁ ନାହିଁ । ସେଆଡୁ ଆସୁଥିବା ଅନ୍ୟ ଗାଡ଼ିରେ ସିଏ ଫେରିଆସିପାରିବ ।"

କନେଷ୍ଟବଳ ଆମ ସାଙ୍ଗରେ ଗଲା । ଆମେ ହ୍ୱାଇଟ୍‌ଫିଲ୍‌ଡରେ ପହଞ୍ଚି ଗାଡ଼ିରୁ ଓହ୍ଲାଇ ପଡ଼ିଲୁ । ଭିତରକୁ ଯାଇ ବାବାଙ୍କୁ ଦର୍ଶନ କରିବୁ । ଫାଟକ

ପାଖରେ ପହଞ୍ଚିବା ପରେ ଜଣେ ସ୍ୱେଚ୍ଛାସେବୀ ଆସି କହିଲେ- "ବାବା ନାହାନ୍ତି, ସେ ବାଙ୍ଗାଲୋର୍ ଯାଇଛନ୍ତି ।"

ମୁଁ ପଚାରିଲି- "କେତେବେଳେ ଫେରିବେ ?"

ସେ କହିଲେ- "ସେ କଥା କେହି କହିପାରିବେ ନାହିଁ ।" ତାଙ୍କ କଥା ଶୁଣି ମୁଁ ଭାବିଲି- ବାବାଙ୍କ ଦର୍ଶନ ଭାଗ୍ୟରେ ନାହିଁ ।

ମୋ ସହିତ ଯାଇଥିବା ପିଲାମାନେ କହିଲେ- "ଆସିଚେ ଯେତେବେଳେ ଭିତରକୁ ଯାଇ ବୁଲି ଦେଖିବା ।"

ଆମେ ଫାଟକ ପାଖରେ ଥିବା ଅଫିସ୍‌ରେ କହି ଭିତରକୁ ଗଲୁ । ସୁନ୍ଦର ପରିବେଶ । କିଛିବାଟ ଗଲା ପରେ ଜଣେ ସ୍ୱେଚ୍ଛାସେବୀ ମୋ ପାଖକୁ ପଚାରିଲେ- "Are you the Education Minister of Orissa ?"

ମୁଁ କହିଲି- "Yes !"

ସେ କହିଲେ- "Baba has a message for you. You can meet him here to-morrow at 9 A.M."

ଏକଥା ଶୁଣିବା ପରେ ମନରେ ଯେଉଁ ଉତ୍‌ଫୁଲ୍ଲତା ଆସିଲା, ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ । ମୁଁ ତାଙ୍କୁ ଦର୍ଶନ କରିବାକୁ ଯିବି ବୋଲି ତାଙ୍କ ଅଫିସ୍‌କୁ କୌଣସି ପତ୍ର ଲେଖି ନଥିଲି ବା ମୋ ଯିବା କାର୍ଯ୍ୟକ୍ରମର ନକଲ ପଠାଇ ନଥିଲି । ଭାବିଲି- ବାବା ନିଶ୍ଚୟ ସର୍ବଜ୍ଞ । ଆନନ୍ଦ ମନରେ ଆମେ ଚାଲିଲୁ ବାଙ୍ଗାଲୋର୍ । କର୍ଣ୍ଣାଟକ ସରକାର ଅନ୍ୟ ରାଜ୍ୟରୁ ଯାଉଥିବା କ୍ରୀଡ଼ାମନ୍ତ୍ରୀମାନଙ୍କ ରହିବା ପାଇଁ ଏକ ପାଞ୍ଚତାରକା ହୋଟେଲ୍‌ର ବ୍ୟବସ୍ଥା କରିଥିଲେ । ଆମେ ଯାଇ ସେହି ହୋଟେଲରେ ରହିଲୁ । ମୋ ଦାୟିତ୍ୱରେ ଜଣେ ଡି.ଏସ୍.ପି. ଥିଲେ । ପରଦିନ ସକାଳେ ବାହାରିପଡ଼ିଲୁ ହ୍ୱାଇଟ୍‌ଫିଲ୍‌ଡ । ମୋ ଦାୟିତ୍ୱରେ ଥିବା ଡି.ଏସ୍.ପି. ମଧ ସାଙ୍ଗରେ ଗଲେ । ବାଙ୍ଗାଲୋର୍‌ରୁ ଯାଇ ସକାଳ ୮ଟା ସୁଦ୍ଧା ଆମେ ହ୍ୱାଇଟ୍‌ଫିଲ୍‌ଡରେ ପହଞ୍ଚିଗଲୁ । ସେଠି ଯାଇ ଦେଖିଲୁ ପୁରୁଷମାନେ ଗୋଟେ ପାଖରେ ଓ ସ୍ତ୍ରୀମାନେ ଗୋଟେ ପାଖରେ ବସିଛନ୍ତି । ଆମେ ମଧ ଭାଗ ହେଇ ସେମିତି ବସିଗଲୁ । ପ୍ରାୟ ୧୫ ମିନିଟ୍ ପରେ ଜଣେ ସ୍ୱେଚ୍ଛାସେବକ ମୋ ପାଖକୁ ଆସି ହିନ୍ଦୀରେ ମୋତେ ପଚାରିଲେ-

ଆପ୍ ଓଡ଼ିଶାକା ଶିକ୍ଷାମନ୍ତ୍ରୀ ହୈ ?"

ମୁଁ କହିଲି- "ହାଁ ।"

ସେ କହିଲେ- "ବାବା ବୁଲାତେ ହେଁ ।"

ମୁଁ ଉଠିପଡ଼ି ତାଙ୍କ ପଛେ ପଛେ ଚାଲିଲି । ସେ ଅଟକିଯାଇ କହିଲେ- "ସବ୍ ଫାମିଲି ମେୟରକୋ ସାଥ୍‌ମେ ଲେ ଆଇଏ ।"

ଏସବୁ ଯେମିତି ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । ସ୍ୱେଚ୍ଛାସେବୀ ଠିଆହୋଇ ରହିଲେ । ମୁଁ ଫେରିଆସି ମୋ' ସ୍ତ୍ରୀ ଓ ପିଲାଙ୍କୁ ଡାକି ନେଇଗଲି । ବାବା ଘର ଭିତରେ ଥିଲେ । ସ୍ୱେଚ୍ଛାସେବୀ ସାମ୍ନା ଘରେ ସ୍ତ୍ରୀ ଓ ପିଲାଙ୍କୁ ରଖି ମୋତେ ଭିତର ଘରକୁ ନେଇଗଲେ । ମୁଁ ଯାଇ ବାବାଙ୍କ ପାଦ ପାଖରେ ଭୂମିଷ୍ଠ ପ୍ରଣାମ କଲି । ସେ ମୋତେ କହିଲେ- "ତୁମେ ଅପେକ୍ଷା କର । ମୁଁ ପେରେଡରୁ ଫେରିବା ପରେ ତୁମ ସହିତ କଥା ହେବି ।"

ବାବା ବାହାରି ଆସିଲେ । ତାଙ୍କ ପଛେ ପଛେ ମୁଁ ବି । ଛିଡ଼ା ହେଇଥିବା ମୋ ସ୍ତ୍ରୀ ଓ ପିଲାଙ୍କ ପାଖରେ ବାବା ଅଟକିଗଲେ । ଉପରକୁ ହାତ ବଢ଼େଇ ଶୂନ୍ୟରୁ ବିଭୂତି ଆଣି ସେମାନଙ୍କୁ ଓ ମୋତେ ଦେଲେ । ତା'ପରେ ବାହାରେ ବସିଥିବା ଲୋକମାନଙ୍କ ପାଖକୁ ଯାଇ ସେମାନଙ୍କୁ ଦର୍ଶନ ଦେଇ ଫେରିଲେ । ମୋତେ ତାଙ୍କ କୋଠରି ଭିତରକୁ ଡାକିନେଲେ । ସେ ବସିଲେ ଓ ତାଙ୍କ ସାମ୍ନା ଚେୟାର୍‌ରେ ମୁଁ ବସିଲି । ଓଡ଼ିଶାର ବନ୍ୟା ସଂପର୍କରେ ସେ ଅବଗତ ଥିଲେ । ସେ ସଂପର୍କରେ କିଛି କଥାବାର୍ତ୍ତା କଲେ । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ସଂପର୍କରେ କହିଲେ- "ତୁମ ମୁଖ୍ୟମନ୍ତ୍ରୀଙ୍କୁ କୁହ, ସେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କ ସହ ବୁଝାମଣା କରିନିଅନ୍ତୁ, ନହେଲେ ଅସୁବିଧାରେ ପଡ଼ିବେ ।"

ମୁଁ ବାଙ୍ଗାଲୋର୍‌ରୁ ଫେରି ନନ୍ଦିନୀଦେବୀଙ୍କୁ ଏକଥା କହିଥିଲି । ବାବାଙ୍କର ଏକଥା ଅକ୍ଷରେ ଅକ୍ଷରେ ସତ୍ୟ ହେଲା ।

ବାବାଙ୍କର ଐଶ୍ୱରିକ ଶକ୍ତିର ତୁଳନା ନାହିଁ । ବହୁ ବିଦେଶୀ ଲୋକ ମଧ୍ୟ ବାବାଙ୍କର ଭକ୍ତ । କାହିଁ କେଉଁ ଦୂରଦେଶରୁ ଆସନ୍ତି ବାବାଙ୍କର ଦର୍ଶନ କରି ନିଜର ମନୋବାଞ୍ଛା ପୂରଣ କରିବା ପାଇଁ । ଏହାପରେ ମଧ୍ୟ ମୁଁ ଓ ମୋର ସ୍ତ୍ରୀ ପୁଟପର୍ତ୍ତି ଯାଇ ବାବାଙ୍କ ଦର୍ଶନଲାଭ କରିଛୁ । ହଜାର ହଜାର ଲୋକ ତାଙ୍କ ଦର୍ଶନ ପାଇଁ ବସିଥାନ୍ତି । ବାବା ବୁଲିବୁଲି ସେମାନଙ୍କୁ ଦର୍ଶନ ଦିଅନ୍ତି । ବାବାଙ୍କ ଅଲୌକିକତା ସଂପର୍କରେ ଅନେକ ପୁସ୍ତକ ରଚିତ ହୋଇଛି ଯାହା ସତ୍ୟଘଟଣା ଉପରେ ଆଧାରିତ । ଅତୀତର ଅଖ୍ୟାତ ପୁଟପର୍ତ୍ତି ଆଜି ପୃଥିବୀର ମହାନ୍ ତୀର୍ଥକ୍ଷେତ୍ର ।



# ପରବର୍ତ୍ତୀ ଘଟଣା

ବାଙ୍ଗାଲୋର୍‌ରୁ ଫେରି ଜାଣିଲି ଯେ, ମୁଁ ଆଉ ଶିକ୍ଷା ଓ ଯୁବସେବା ବିଭାଗର ଦାୟିତ୍ୱରେ ନାହିଁ । ସେ ବିଭାଗ ମୋ'ଠୁ ନିଆଯାଇ ରାଷ୍ଟ୍ରମନ୍ତ୍ରୀ ବ୍ରହ୍ମାନନ୍ଦ ବିଶ୍ୱାଳଙ୍କୁ ଦିଆଯାଇଛି । ବିନାୟକ ଆଚାର୍ଯ୍ୟ ଅର୍ଥ ଓ ଅବକାରୀ ବିଭାଗର କେବିନେଟ୍ ମନ୍ତ୍ରୀ ଥିଲେ । ତାଙ୍କଠାରୁ ଅର୍ଥ ବିଭାଗକୁ କାଢ଼ି ଅଣାଯାଇ ମୋତେ ଦିଆଯାଇଛି । ୧୯୭୬ ମସିହାରେ ଦେଶରେ ଆଉ ଜରୁରୀକାଳୀନ ପରିସ୍ଥିତି ନଥିଲା । କିନ୍ତୁ ସଞ୍ଜୟଗାନ୍ଧିଙ୍କ ସହିତ ନନ୍ଦିନୀଦେବୀଙ୍କ ସଂପର୍କ ଖୁବ୍ ତିକ୍ତ ହୋଇଯାଇଥିଲା । କଂଗ୍ରେସ ଦଳର ନେତା ବିନାୟକ ଆଚାର୍ଯ୍ୟ, ଜାନକୀବଲ୍ଲଭ ପଟ୍ଟନାୟକ, ବାଙ୍କବିହାରୀ ଦାସ, ବ୍ରଜମୋହନ ମହାନ୍ତି ପ୍ରମୁଖ ନନ୍ଦିନୀଦେବୀଙ୍କ ବିରୁଦ୍ଧରେ ଇନ୍ଦିରାଗାନ୍ଧି ତଥା ସଞ୍ଜୟଗାନ୍ଧିଙ୍କ ମନକୁ ବିଷାକ୍ତ କରୁଥିଲେ । ସେତେବେଳର ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି ଦେବକାନ୍ତ ବରୁଆ ଓ ପଶ୍ଚିମବଂଗର ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥଶଙ୍କର ରାୟ ନନ୍ଦିନୀଦେବୀଙ୍କ ସପକ୍ଷରେ ଇନ୍ଦିରାଗାନ୍ଧି ଓ ସଞ୍ଜୟଗାନ୍ଧିଙ୍କୁ ପ୍ରଭାବିତ କରିବାରେ ବିଫଳ ହୋଇଥିଲେ । ଇନ୍ଦିରାଗାନ୍ଧିଙ୍କୁ ଧାରଣା ଦିଆଯାଇଥିଲା ଯେ ନନ୍ଦିନୀଦେବୀ ତାଙ୍କର ଉତ୍ତରାଧିକାରିଣୀ ହୋଇ ଭାରତବର୍ଷର ପ୍ରଧାନମନ୍ତ୍ରୀ ହେବା ଚେଷ୍ଟାରେ ଅଛନ୍ତି । ସେତେବେଳକାର ଗୃହ ରାଷ୍ଟ୍ରମନ୍ତ୍ରୀ ଓଁ ମେହେଟା ନନ୍ଦିନୀଦେବୀଙ୍କୁ ଇସ୍ତଫା ଦେବା ପାଇଁ କହିଥିଲେ ମାତ୍ର ନନ୍ଦିନୀଦେବୀ ଇସ୍ତଫା ଦେଇ ନଥିଲେ । ମୁଁ, ଶ୍ରୀ ବଲ୍ଲଭ ପାଣିଗ୍ରାହୀ ଓ ଲକ୍ଷ୍ମଣ ମଲ୍ଲିକ ଦିଲ୍ଲୀ ଯାଇଥିଲୁ ଇନ୍ଦିରାଗାନ୍ଧିଙ୍କୁ ଭେଟି ନନ୍ଦିନୀଦେବୀଙ୍କ ସପକ୍ଷରେ କହିବା ପାଇଁ । ତାଙ୍କୁ ସାକ୍ଷାତ୍ କଲୁ । ଆମେ କାହିଁକି ଯାଇଛୁ ବୋଲି ସେ ଆମକୁ ପଚାରିଲେ । ଓଡ଼ିଶା ବିଷୟରେ ଆଲୋଚନା କରିବୁ ବୋଲି ଆମେ କହିଲୁ । ସେ କହିଲେ- "ଓଡ଼ିଶା ବିଷୟରେ ଆଲୋଚନା କର କିନ୍ତୁ ନନ୍ଦିନୀ ଶତପଥୀ ବିଷୟରେ କିଛି

ଆଲୋଚନା କରିବ ନାହିଁ ।" ତାଙ୍କଠୁ ଏହା ଶୁଣି ଆମେ ଫେରିଆସିଲୁ । ଦିଲ୍ଲୀରୁ ଫେରିବା ପରେ ଶ୍ରୀ ବଲ୍ଲଭବାବୁ ଓ ଲକ୍ଷ୍ମଣବାବୁ ମନ୍ତ୍ରୀପଦରୁ ଇସ୍ତଫା ଦେଇଥିଲେ ।

ତା ୧୬।୧୨।୧୯୭୬ରିଖରେ ପୁନର୍ବାର ଓଁ ମେହେଟା ଭୁବନେଶ୍ୱରରେ ଆସି ପହଞ୍ଚିଥିଲେ । ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରାଯିବାର ଯୋଜନା ଥିଲା । ବରଖାସ୍ତ କରାଗଲେ ଶାନ୍ତି ଶୃଙ୍ଖଳା ବ୍ୟାହତ ହେବା ଆଶଙ୍କାରେ ସେ ଉଡ଼ାଜାହାଜ ଭର୍ତ୍ତି କେନ୍ଦ୍ର ସଶସ୍ତ୍ର ବାହିନୀ ଆଣିଥିଲେ । ଭୁବନେଶ୍ୱରରେ ଆତଙ୍କର ବାତାବରଣ ଖେଳିଯାଇଥିଲା । ଏଣୁ ମୁଁ, ଗଙ୍ଗାଧର ମହାପାତ୍ର, ଡକ୍ଟର କୃପାସିନ୍ଧୁ ଭୋଇ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଯାଇ ତାଙ୍କୁ ଇସ୍ତଫା ଦେବା ପାଇଁ ପରାମର୍ଶ ଦେଇଥିଲୁ । ସେ ରାଜି ହୋଇଥିଲେ ଓ ରାଜ୍ୟପାଳଙ୍କୁ ଜଣାଇ ଦେଇଥିଲେ ଅପରାହ୍ନ ୪ଟା ସୁଦ୍ଧା ତାଙ୍କ ଇସ୍ତଫାପତ୍ର ରାଜ୍ୟପାଳଙ୍କ ପାଖରେ ପହଞ୍ଚିବ । ତା'ପରେ ସେ ଢେଙ୍କାନାଳ ଯାଇଥିଲେ, ତାଙ୍କ ଲୋକମାନଙ୍କୁ ଏସବୁ କଥା ଜଣାଇବା ପାଇଁ । ଢେଙ୍କାନାଳରୁ ଫେରି ଚାରିଟାବେଳେ ରାଜ୍ୟପାଳଙ୍କୁ ତାଙ୍କ ଇସ୍ତଫାପତ୍ର ଦେଇଥିଲେ ଓ ତାହା ଗୃହୀତ ହୋଇଥିଲା ।

ତା ୨୯।୧୨।୧୯୭୬ରିଖରେ ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ଭାବେ ଶପଥ ଗ୍ରହଣ କରିଥିଲେ । ଆମେ ଯେଉଁମାନେ ଶେଷ ପର୍ଯ୍ୟନ୍ତ ନନ୍ଦିନୀ ଦେବୀଙ୍କୁ ସମର୍ଥନ କରୁଥିଲୁ ଆମକୁ ଅର୍ଥାତ୍ ମୋତେ, ଗଙ୍ଗାଧର ମହାପାତ୍ର ଓ ଡକ୍ଟର କୃପାସିନ୍ଧୁ ଭୋଇ ପ୍ରମୁଖଙ୍କୁ ମନ୍ତ୍ରିମଣ୍ଡଳରେ ନିଆଯାଇ ନଥିଲା । ଲକ୍ଷ୍ମଣ ମଲ୍ଲିକ, ଶ୍ରୀ ବଲ୍ଲଭ ପାଣିଗ୍ରାହୀ, କାହ୍ନୁଚରଣ ଲେଙ୍କା, ରାମଚନ୍ଦ୍ର ଉଲାକା, ଭାଗୀରଥି ଗମାଙ୍ଗୋ, ବେଣୁଧର ବଳିଆର ସିଂହ କେବିନେଟ୍ ମନ୍ତ୍ରୀ ଓ ଜଗନ୍ନାଥ ପଟ୍ଟନାୟକ, ଶେଖ୍ ମତ୍‌ଲୁବ୍ ଅଲ୍ଲୀ ଓ ଭଜମନ ବେହେରା ପ୍ରମୁଖ ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ତାଙ୍କରି ମନ୍ତ୍ରିମଣ୍ଡଳ ସମୟରେ କେନ୍ଦ୍ରରେ ଉପମନ୍ତ୍ରୀ ଥିବା ଜାନକୀବାବୁ ସଞ୍ଜୟଗାନ୍ଧିଙ୍କର ଏକ ଦୁଇଦିନିଆ କାର୍ଯ୍ୟକ୍ରମ ଓଡ଼ିଶାରେ କରାଇଥିଲେ । ୧୯୭୭ ମସିହା ଜାନୁଆରୀ ୨୯/୩୦ ତାରିଖରେ ଓଡ଼ିଶାର ଭବାନୀପାଟଣା, ବ୍ରହ୍ମପୁର ଓ କଟକରେ ତାଙ୍କ ପାଇଁ ସାଧାରଣ ସଭାର ଆୟୋଜନ କରାଯାଇଥିଲା । କଟକର କିଲା ମଇଦାନର ସଭାକୁ ମୁଁ ଯାଇଥିଲି । ଏହି ସଭାରେ ଜାନକୀବାବୁ ସଞ୍ଜୟଗାନ୍ଧିଙ୍କୁ 'ଋତୁରାଜ ବସନ୍ତ' ଭାବେ ବର୍ଣ୍ଣନା କରି ତାଙ୍କୁ ସ୍ୱାଗତ ଜଣାଇଥିଲେ ।

ସେହିବର୍ଷ ୧୯୭୭ ମସିହା ଏପ୍ରିଲ ମାସରେ ବିନାୟକ ଆଚାର୍ଯ୍ୟ ଇସ୍ତଫା ଦେଇଥିଲେ ଓ ଜୁନ୍‌ମାସରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ନିର୍ବାଚନରେ

କଂଗ୍ରେସ ଦଳର ଶୋଚନୀୟ ପରାଜୟ ହୋଇଥିଲା ଓ ଜନତା ଦଳର ବିପୁଳ ବିଜୟ ହୋଇଥିଲା । ଜନତା ଦଳ ୧୧୦ଟି ସ୍ଥାନରେ, କଂଗ୍ରେସ ୨୬, ସ୍ୱାଧୀନ ପ୍ରାର୍ଥୀ ୯, ମାର୍କସ୍‌ବାଦୀ କମ୍ୟୁନିଷ୍ଟ ଓ କମ୍ୟୁନିଷ୍ଟ ଦଳ ଗୋଟିଏ ଗୋଟିଏ ଜାଗାରେ ଜିତିଥିଲେ । ନନ୍ଦିନୀଦେବୀ ଢେଙ୍କାନାଳରୁ ଜନତାଦଳ ଟିକେଟ୍‌ରେ ଜିତିଥିଲେ । ଏହି ନିର୍ବାଚନରେ ମୁଁ ପ୍ରତିଦ୍ୱନ୍ଦ୍ୱିତା କରି ନଥିଲି । ଓଡ଼ିଶାରେ ଜନତାଦଳ ମନ୍ତ୍ରିମଣ୍ଡଳ ଗଠନ କରିଥିଲା ଓ ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ହୋଇଥିଲେ ।

କେନ୍ଦ୍ରରେ ମଧ୍ୟ କଂଗ୍ରେସ ପରାଜୟବରଣ କରିଥିଲା । ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହୋଇଥିଲେ । ବିଜୁ ପଟ୍ଟନାୟକ କେନ୍ଦ୍ରରେ କେବିନେଟ୍ ମନ୍ତ୍ରୀ ହୋଇଥିଲେ ।



# ଶିଶୁସାହିତ୍ୟ ପାଇଁ ଏକାଡ଼େମୀ ପୁରସ୍କାର

ସେତେବେଳେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରବନ୍ଧ, ଉପନ୍ୟାସ, କ୍ଷୁଦ୍ରଗଳ୍ପ, କବିତା ଓ ନାଟକ ପାଇଁ ଲେଖକ ଲେଖିକାଙ୍କ ପାଇଁ ସମ୍ମାନ ଓ ପୁରସ୍କାର ପ୍ରଦାନ କରୁଥିଲା । ଶିଶୁ ସାହିତ୍ୟ ପାଇଁ ପୁରସ୍କାରର ବ୍ୟବସ୍ଥା ନଥିଲା । ୧୯୭୬ ମସିହାଠାରୁ ବ୍ୟବସ୍ଥା ପ୍ରଚଳିତ ହେଲା । ଏହା କିପରି କରାଗଲା ସେ ବିଷୟରେ କ୍ଷୀରୋଦ ଚନ୍ଦ୍ର ପୋଥାଳ ତାଙ୍କ ଲିଖିତ ନିବନ୍ଧ 'ମୋ ଜୀବନର ଅଭୁଲା ଘଟଣା'ରେ ଲେଖିଛନ୍ତି । ତାଙ୍କର ସେ ନିବନ୍ଧଟି ବାଲେଶ୍ୱରରୁ ପ୍ରକାଶ ପାଉଥିବା ଦୈନିକ ସମ୍ବାଦପତ୍ର 'ଧ୍ୱନିପ୍ରତିଧ୍ୱନି'ର ତା ୪।୧୨।୨୦୦୪ରିଖ ସଂଖ୍ୟାରେ ପ୍ରକାଶ ପାଇଥିଲା । ସେ ଲେଖିଛନ୍ତି- "ମୁଁ ୧୯୬୫ ମସିହାରେ 'ଦୈନିକ ମାତୃଭୂମି'ରେ ମୋର କର୍ମମୟ ଜୀବନ ଆରମ୍ଭ କରିବାରୁ କଟକ ମୋର ସାଧନାପୀଠ ହୋଇଗଲା ଓ ମୋର ପ୍ରତିଭାର ବିକାଶ ପାଇଁ ମୁଁ ଏକ ଅନୁକୂଳ ପରିବେଶ ପାଇଗଲି ।

'ମାତୃଭୂମି'ରେ ମୁଁ 'ପ୍ରୁଫ୍‌ରିଡର' ଭାବେ କାର୍ଯ୍ୟ କରୁଥାଏ । ୧୯୭୫ ମସିହାର କଥା । ଦିନେ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ'ର ପୁରସ୍କାର ସଂପର୍କରେ ସମ୍ବାଦଟି ଆସିଲା । ସେବର୍ଷ କେଉଁ ବିଭାଗରେ କେଉଁ ଲେଖକଲେଖିକାମାନେ ପୁରସ୍କୃତ ହୋଇଛନ୍ତି ତାହା ପ୍ରକାଶ ପାଇଁ ଆସିଥାଏ । ସେହି ସମ୍ବାଦଟିର ପ୍ରୁଫ୍ ପଢ଼ି ସଂଶୋଧନ କରିସାରିଲା ପରେ ଭାବିଲି- ଏଥିରେ ଶିଶୁସାହିତ୍ୟରେ କିଏ ପୁରସ୍କାର ପାଇଲେ ସେ କଥା ତ ଉଲ୍ଲେଖ କରାଯାଇନାହିଁ ।

ପରେ ଜାଣିଲି- ପ୍ରବନ୍ଧ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ କାବ୍ୟକବିତା ପ୍ରଭୃତି ବିଭାଗ ପରି 'ଶିଶୁସାହିତ୍ୟ'କୁ ଗୋଟିଏ 'ସ୍ୱତନ୍ତ୍ର ବିଭାଗ' ଭାବରେ ରଖାଯାଇନାହିଁ । ତେଣୁ ପ୍ରତିବର୍ଷ ଶିଶୁସାହିତ୍ୟ ପାଇଁ ପୁରସ୍କାର ଦିଆଯାଏ ନାହିଁ । ଶିଶୁସାହିତ୍ୟକୁ କିପରି ଏକ ସ୍ୱତନ୍ତ୍ର ବିଭାଗ ରୂପେ ରଖାଯିବ ଓ ପ୍ରତିବର୍ଷ ଜଣେ ଶିଶୁ ସାହିତ୍ୟିକ

ଏକାଡ଼େମୀ ପୁରସ୍କାର ପାଇବେ, ସେଇ ଦାବି ଉପସ୍ଥାପିତ କରିବା ପାଇଁ ମୋ ମନ ବିଦ୍ରୋହୀ ହୋଇଉଠିଲା । ତହିଁ ଆରଦିନ ଯାଇ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ସାକ୍ଷାତ୍ କରି ଏ ବିଷୟରେ ତାଙ୍କ ପରାମର୍ଶ ଲୋଡ଼ିଲି । ଡଃ ଦାଶ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନର ମୁଖ୍ୟ ଅଧ୍ୟାପକ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଜଣେ ସଦସ୍ୟ ଥାଆନ୍ତି ।

ଡଃ ଦାଶ ମୋ'ଠାରୁ ସବୁକଥା ଶୁଣିସାରି କହିଲେ- "ଶୋଇଲା ପୁଅର ଭାଗ ନାହିଁ । ଶିଶୁସାହିତ୍ୟ ପାଇଁ କାହାରି ତୁଣ୍ଡ ଖୋଲି ନାହିଁ । ତେଣୁ ଶିଶୁସାହିତ୍ୟ ଏକାଡ଼େମୀ ପୁରସ୍କାରଭୁକ୍ତ ହୋଇପାରି ନାହିଁ । ତୁମେ ଏତେକାଳେ ଯଦି ତୁଣ୍ଡ ଖୋଲିଲ, ତା'ହେଲେ ଗୋଟିଏ ଦରଖାସ୍ତ ଲେଖି, ସଭାପତିଙ୍କୁ ଦେଇଆସ । ଆଗାମୀ ବୈଠକରେ ତୁମ ଦରଖାସ୍ତ କଥା ଆଲୋଚନା ହେଲେ, ଆମେ ତୁମ ସପକ୍ଷରେ ଲଢ଼ିବା ।"

ଡଃ ଦାଶଙ୍କଠାରୁ ଏଇ ଅଭୟବାଣୀ ଶୁଣିବା ପରେ ଦରଖାସ୍ତଟିଏ ଲେଖି ଏକାଡ଼େମୀର ସଭାପତିଙ୍କ ବାସଭବନକୁ ଗଲି । ସେତେବେଳେ ଓଡ଼ିଶାର ସ୍ୱନାମଧନ୍ୟ ନାଟ୍ୟକାର, କବି ଓ ଶିଶୁସାହିତ୍ୟ ଲେଖକ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ର ରାଜ୍ୟ ଶିକ୍ଷାମନ୍ତ୍ରୀ ଓ ସାହିତ୍ୟ ଏକାଡ଼େମୀର ସଭାପତି ଏଇ ଦୁଇଟି ପଦବୀରେ ଥାଆନ୍ତି ।

ସେ ମହାଶୟ ମୋ ଦରଖାସ୍ତ ପଢୁ ପଢୁ କହିଉଠିଲେ- "ବାଃ, ଭଲ କଥାଟିଏ ଉଠେଇଛନ୍ତି କ୍ଷୀରୋଦବାବୁ ! ଆପଣଙ୍କର ଏ ଦାବୀ ଯଥାର୍ଥ । ଯାକୁ ନିଶ୍ଚୟ କାର୍ଯ୍ୟକାରୀ କରିବା । ଆପଣ ଏ ଦରଖାସ୍ତଟି ସେକ୍ରେଟାରୀଙ୍କୁ ଦେଇ ଆଗାମୀ ବୈଠକରେ ଆଲୋଚନା ପାଇଁ କାର୍ଯ୍ୟସୂଚୀରେ ରଖିବାକୁ କହିବେ ।" ଏହା କହି ସେ ଦରଖାସ୍ତରେ ଦସ୍ତଖତ କରି ମୋତେ ଦେଇଦେଲେ ।

ମୁଁ ଦରଖାସ୍ତଟି ନେଇ ଏକାଡ଼େମୀର ସେକ୍ରେଟାରୀଙ୍କୁ ଦେଇ ସବୁକଥା କହିଲି । ସେତେବେଳକୁ ଆକାଶବାଣୀ କେନ୍ଦ୍ରରୁ ନାଟ୍ୟକାର ଶ୍ରୀଯୁକ୍ତ ମନୋରଂଜନ ଦାସ ସାହିତ୍ୟ ଏକାଡ଼େମୀର ସଂପାଦକ ଭାବେ ଡେପୁଟେସନ୍‌ରେ ଯାଇ ଦାୟିତ୍ୱ ତୁଲାଉଥାନ୍ତି । ସେ ଖୁବ୍ ଖୁସି ହୋଇ ଦରଖାସ୍ତଟି ରଖିଲେ ଏବଂ କିଛିଦିନ ପରେ ମୋ ଦରଖାସ୍ତଟିର ପ୍ରାପ୍ତିସ୍ୱୀକାର କରି ଚିଠିଟିଏ ମୋ ପାଖକୁ ପଠେଇଦେଲେ । ସେ ଚିଠିଟି ମୁଁ ଆଜିଯାଏ ସାଇତି ରଖିଚି ।

ତା'ପରେ ସାହିତ୍ୟ ଏକାଡ଼େମୀର କାର୍ଯ୍ୟନିର୍ବାହିକା କମିଟିର ବୈଠକରେ ମୋ ଦରଖାସ୍ତ ଉପରେ ଆଲୋଚନା ହେଲା ଏବଂ ସର୍ବସମ୍ମତି କ୍ରମେ ମୋ ପ୍ରସ୍ତାବ ଗୃହୀତ ହୋଇଗଲା ।

କିଛିଦିନ ପରେ ମୋ ପ୍ରସ୍ତାବ ଗୃହୀତ ହୋଇଛି ଓ ଆସନ୍ତାବର୍ଷଠାରୁ ଶିଶୁସାହିତ୍ୟକୁ ଏକ ସ୍ୱତନ୍ତ୍ର ବିଭାଗ ଭାବେ ରଖାଯାଇ ପୁରସ୍କାର ପାଇଁ ଲେଖକ/ଲେଖିକା ଓ ପ୍ରକାଶକଙ୍କଠାରୁ ପୁସ୍ତକ ଆହ୍ୱାନ କରାଯିବ, ଏଇ ମର୍ମରେ ଏକ ଚିଠି ମୋ ପାଖକୁ ଆସିଲା । ସେ ଚିଠିଟି ମଧ୍ୟ ଏଯାବତ୍ ମୋ ପାଖରେ ରହିଛି ।

ସୁଖର କଥା ୧୯୭୬ ମସିହା ଠାରୁ ଏଯାବତ୍ 'ଶିଶୁସାହିତ୍ୟ' ବିଭାଗରେ ପ୍ରତିବର୍ଷ ଜଣେ ଲେଖକ/ଲେଖିକା ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବାର ଗୌରବ ଅର୍ଜନ କରୁଛନ୍ତି ।

୧୯୮୬ ମସିହାରେ ମୋ ଅଜଣାରେ ମୋର ଗୋଟିଏ ବହି 'ମନହୁଏ ମୋର ହେବାକୁ ମୀନା'କୁ ଏକାଡ଼େମୀ କର୍ତ୍ତୃପକ୍ଷ କିଣିନେଇ ସମୀକ୍ଷା ପାଇଁ ପଠେଇଥିଲେ ଓ ସେ ବହିଟି ସେ ବର୍ଷ ପୁରସ୍କାର ପାଇଥିଲା । ଏହି ସମ୍ବାଦ ମୁଁ ଗଣମାଧ୍ୟମରୁ ଜାଣିବା ପରେ ଖଣ୍ଡିଏ ବହି ଶ୍ରୀଯୁକ୍ତ ଯଦୁନାଥ ଦାଶମହାପାତ୍ରଙ୍କୁ ଉପହାର ଦେଇ, ସୌଜନ୍ୟ ସାକ୍ଷାତ କଲାବେଳେ ସେ ମହାଶୟ ପୂର୍ବକଥାକୁ ସ୍ମରଣ କରି ହସି ହସି କହିଲେ : "ଯା ହେଉ କ୍ଷୀରୋଦବାବୁ, ଆପଣ ତ ଗଛ ଲଗେଇଥିଲେ, ଏତେଦିନ ପରେ ଫଳ ଖାଇଲେ ।"

ମୋର ଦୀର୍ଘ ପଚାଶ ବର୍ଷର ସାହିତ୍ୟ ସାଧନା ମଧ୍ୟରେ ଏଇ ଘଟଣାଟି ମୋ ପାଇଁ ଚିର ସ୍ମରଣୀୟ ହୋଇ ରହିଛି ।

('ଧ୍ୱନି ପ୍ରତିଧ୍ୱନି' ସୌଜନ୍ୟରୁ)



# ସୋରରେ କମ୍ୟୁନିଷ୍ଟଙ୍କ କଂଗ୍ରେସରେ ଯୋଗଦାନ

୧୯୭୪ ମସିହାରେ ବିଧାନସଭାର ବାଚସ୍ପତି ଥିଲେ ବ୍ରଜମୋହନ ମହାନ୍ତି ଓ ଉପବାଚସ୍ପତି ଥିଲେ ଚିନ୍ତାମଣି ଜେନା । ୧୯୭୭ ମସିହା ବେଳକୁ ଚିନ୍ତାମଣିବାବୁ ଥିଲେ ପ୍ରଦେଶ କଂଗ୍ରେସ କମିଟିର ସଭାପତି । କଂଗ୍ରେସ ଅଫିସ୍ ନନ୍ଦିନୀଦେବୀଙ୍କ ସମୟରେ ନିର୍ମିତ ହୋଇଥିଲା । ମୁଁ ମଝିରେ ମଝିରେ ଯାଇ ନିର୍ମାଣ କାର୍ଯ୍ୟ ଦେଖୁଥିଲି ।

ଚିନ୍ତାମଣିବାବୁ ଏଓଲି ସେଓଲି ଯାଇ ଅଫିସ୍‌ରେ ବସନ୍ତି । ସେ ଥିଲେ ଆମ ବାଲେଶ୍ୱର ଜିଲ୍ଲା ବସ୍ତା ନିର୍ବାଚନମଣ୍ଡଳୀର ବିଧାୟକ ଓ ମୋର ପରମ ବନ୍ଧୁ ।

୧୯୭୨ ମସିହାରେ ଭୁବନେଶ୍ୱରର ଉଡ଼ାଜାହାଜ ପଡ଼ିଆ ପାଖରେ ଗୋଟିଏ ଜାଗା ଲିଙ୍ଗରାଜ ମନ୍ଦିର ଟ୍ରଷ୍ଟବୋର୍ଡଠାରୁ କିଣିଥିଲି ମୋ ବଡ଼ପୁଅ ବିଶ୍ୱଜିତ୍ ନାଆଁରେ । ସେ ଜାଗାଟା ବିଜୁ ପଟ୍ଟନାୟକଙ୍କ 'ନବୀନ ନିବାସ'ର ପଛ ପାଖରେ । ସେ ସମୟରେ ଅନେକ ଭଦ୍ରବ୍ୟକ୍ତି ମନ୍ଦିର ଜାଗା କିଣିଥିଲେ । ଏଇ ଜାଗାରେ ଆଜ୍‌ବେଷ୍ଟସ୍ ପକାଯାଇଥିବା ଘର ତିଆରି କଲି । ଏଥିପାଇଁ ବାପୁଜୀନଗର ଇଉକୋ ବେଙ୍କ୍‌ରୁ କିଛି ଟଙ୍କା ଋଣ କରାଗଲା । ବାଲେଶ୍ୱରରୁ ଶ୍ରୀ ଲକ୍ଷ୍ମୀ ପ୍ରେସ୍‌କୁ ଅଣାଯାଇ ଏହିଠାରେ ସ୍ଥାପନା ହେଲା । ମୋ ସ୍ତ୍ରୀ ପ୍ରେସ୍ ଖବର ବୁଝୁଥିଲେ ।

ମୁଁ ସୋର ଯାଉଥିଲି । ଲୋକଙ୍କ ସୁବିଧା ଅସୁବିଧା ବୁଝୁଥିଲି । ସୋରରେ କମ୍ୟୁନିଷ୍ଟ ଦଳ ଅଧିକ ସକ୍ରିୟ ହେବାର ଚେଷ୍ଟାରେ ଥିଲେ । ପୂର୍ବରୁ କମ୍ୟୁନିଷ୍ଟ ଦଳରୁ ଗଜେନ୍ଦ୍ର ପ୍ରସାଦ ଦାଶ ପ୍ରାର୍ଥୀ ହୋଇ ପରାଜିତ ହୋଇଥିଲେ । ସେ ଜଣେ ପ୍ରତିଷ୍ଠିତ ଓକିଲ ଥିବାରୁ ରାଜନୀତି ପାଇଁ ବିଶେଷ ସମୟ ଦେଇପାରୁ ନଥିଲେ । ତେଣୁ ତାଙ୍କ ଭଣଜା ପୀତାମ୍ବର ପଣ୍ଡା ସୋରରେ କମ୍ୟୁନିଷ୍ଟ ଦଳ ପାଇଁ କାର୍ଯ୍ୟ କରୁଥିଲେ । କିଛି ଶିକ୍ଷିତ ଯୁବକ ମଧ୍ୟ ତାଙ୍କ ସହିତ ସାମିଲ୍ ହୋଇଥିଲେ ।

କାର୍ତ୍ତିକ ମହାପାତ୍ର ଓ ସଲିମୁଦ୍ଦିନ ମହମ୍ମଦ ସୋର ଉପେନ୍ଦ୍ରନାଥ କଲେଜର ଛାତ୍ରନେତା ଥିଲେ । କଲେଜ ଶିକ୍ଷା ପରେ ସେମାନେ କମ୍ୟୁନିଷ୍ଟ ଦଳରେ ଯୋଗ ଦେଇଥିଲେ । ସ୍ଥିର କଲି ସେମାନଙ୍କୁ କମ୍ୟୁନିଷ୍ଟ ଦଳରୁ ଆଣି କଂଗ୍ରେସରେ ମିଶେଇବାକୁ ପଡ଼ିବ । ସେତେବେଳେ ସୋର ପଞ୍ଚାୟତ ସମିତିର ଚେୟାରମେନ୍ ଥିଲେ ଘନଶ୍ୟାମ ଲେଙ୍କା । ମାଣତ୍ରି ଗ୍ରାମ ପଞ୍ଚାୟତର ସରପଞ୍ଚ ଶକୁନ୍ତଳା ପଣ୍ଡା, ଭାଗବତ ମହାନ୍ତି, ଅନନ୍ତ ପ୍ରସାଦ ପଣ୍ଡା ପ୍ରମୁଖ ମୋର ଏଇ ଭାବନାକୁ ବିରୋଧ କରୁଥିଲେ । ୧୯୭୦ ମସିହା ସରପଞ୍ଚ ନିର୍ବାଚନରେ କାର୍ତ୍ତିକ ମହାପାତ୍ରଙ୍କୁ ହରାଇ ଶକୁନ୍ତଳା ପଣ୍ଡା ନିର୍ବାଚିତ ହୋଇଥିଲେ । ଅନେକଙ୍କ ବିରୋଧ ସତ୍ତ୍ୱେ ମୁଁ ନିଷ୍ପତ୍ତି କଲି ସେ ଦୁହିଁଙ୍କୁ କଂଗ୍ରେସକୁ ଆଣିବି । ୧୯୭୯ ମସିହାରେ ନଦୀଗାଁ ଠାରେ ଏକ ସାଧାରଣ ସଭା କରାଗଲା । ଜାନକୀ ବଲ୍ଲଭ ପଟ୍ଟନାୟକ ଉକ୍ତ ସଭାକୁ ଯାଇ ଭାଷଣ ଦେଇଥିଲେ । ଉକ୍ତ ସଭାରେ ସୋରର ବିଭିନ୍ନ ସ୍ଥାନରୁ କଂଗ୍ରେସ କର୍ମୀମାନେ ଆସି ଯୋଗ ଦେଇଥିଲେ । ସେହି ସଭାରେ ହିଁ କାର୍ତ୍ତିକ ମହାପାତ୍ର ଓ ସଲିମୁଦ୍ଦିନ ମହମ୍ମଦ କମ୍ୟୁନିଷ୍ଟ ଦଳ ଛାଡ଼ି କଂଗ୍ରେସରେ ଯୋଗଦେଲେ ବୋଲି ଘୋଷଣା କରିଥିଲେ । ସେହି ସଭାର ଆୟୋଜନ କରିଥିଲେ ନଦୀ ଗାଁ ଗ୍ରାମପଞ୍ଚାୟତର ସରପଞ୍ଚ, ମୋ କକାଙ୍କ ପୁଅ ଗୋଲକନାଥ ଦାଶ ମହାପାତ୍ର ।

କାର୍ତ୍ତିକ ମହାପାତ୍ରଙ୍କୁ କଂଗ୍ରେସରେ ମିଶାଇବା ପରେ ନାରୀନେତ୍ରୀ ଶକୁନ୍ତଳା ପଣ୍ଡାଙ୍କ କ୍ରୋଧ ବୃଦ୍ଧି ପାଇଥିଲା । ଯଦିଓ ଏ ଘଟଣା ପୂର୍ବରୁ ଶକୁନ୍ତଳାଙ୍କ ନେତୃତ୍ୱରେ ଏବଂ ମୋ ସାହାଯ୍ୟରେ ମାଣତ୍ରି ଗ୍ରାମପଞ୍ଚାୟତ ମହିଳା ପଞ୍ଚାୟତ ହୋଇଥିଲା ଏବଂ ସବୁ ୱାର୍ଡରୁ ମହିଳା ସଭ୍ୟାଙ୍କୁ ନିର୍ବାଚିତ କରାଯାଇଥିଲା । ମୁଁ ଓ ତତ୍କାଳୀନ ପଞ୍ଚାୟତିରାଜ ମନ୍ତ୍ରୀ ମୋହନ ନାୟକ ଏହି ମହିଳା ପଞ୍ଚାୟତ ଉଦ୍‌ଘାଟନ ଉତ୍ସବରେ ଯୋଗଦେଇଥିଲେ ।

ଏ ସମୟରେ ଯେଉଁସବୁ ଅଞ୍ଚଳକୁ ବା ସଭାକୁ ମୁଁ ଯାଉଥିଲି କାର୍ତ୍ତିକ ଓ ସଲିମ ମୋ ସାଙ୍ଗରେ ଯାଉଥିଲେ । ପରବର୍ତ୍ତୀ ସମୟରେ କାର୍ତ୍ତିକକୁ ସୋର ପଞ୍ଚାୟତ ସମିତିର ଓ ସଲିମ୍‌କୁ ସୋର ବିଜ୍ଞାପିତ ଅଞ୍ଚଳ ପରିଷଦର ଚେୟାରମେନ୍ କରାଯାଇଥିଲା ।



# ୧୯୮୦ ନିର୍ବାଚନ

୧୯୮୦ ମସିହାରେ ବିଧାନସଭା ନିର୍ବାଚନର ଘୋଷଣା ପ୍ରକାଶ ପାଇଲା । ସେତେବେଳେ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥିଲେ ଯୁଗଳ କିଶୋର ପଟ୍ଟନାୟକ । ସୋର ଆସନରୁ ପ୍ରାର୍ଥୀ ହେବା ପାଇଁ ମୁଁ ଦରଖାସ୍ତ କଲି । ପ୍ରାର୍ଥୀ ହେବା ପାଇଁ ଅନ୍ୟ ଯେଉଁମାନେ ଦରଖାସ୍ତ କରିଥିଲେ, ସେମାନେ ହେଲେ ଶକୁନ୍ତଳା ପଣ୍ଡା, ଘନଶ୍ୟାମ ଲେଙ୍କା, ବିଷ୍ଣୁପ୍ରସାଦ ମହାପାତ୍ର ଓ ଗୋବିନ୍ଦ ପଟ୍ଟନାୟକ । ପ୍ରାର୍ଥୀ ଚୟନ ପାଇଁ ଭଦ୍ରକରେ ଜିଲ୍ଲା କଂଗ୍ରେସ କମିଟିର ବୈଠକ ଅନୁଷ୍ଠିତ ହୋଇଥିଲା । ପ୍ରଦେଶ କଂଗ୍ରେସ କମିଟିରୁ ପର୍ଯ୍ୟବେକ୍ଷକ ଭାବେ ଆସିଥିଲେ ବସନ୍ତ କୁମାର ବିଶ୍ୱାଳ । ଜିଲ୍ଲା କମିଟି ପ୍ରଦେଶ କମିଟିକୁ ଦୁଇଟି ନାମ ସୁପାରିସ୍ କରିଥିଲା । କିନ୍ତୁ ପ୍ରଦେଶ କଂଗ୍ରେସ କମିଟି ମୋତେ ପ୍ରାର୍ଥୀ ନ କରି ଶକୁନ୍ତଳା ପଣ୍ଡାଙ୍କୁ ପ୍ରାର୍ଥୀ କରିବାର ନିଷ୍ପତ୍ତି ନେଇଥିଲା । ବନ୍ଧୁ ଚିନ୍ତାମଣି ଜେନା ଏଥିପାଇଁ ବ୍ୟଥିତ ହୋଇଥିଲେ । ସେତେବେଳକୁ ସେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନଥିଲେ । ସେ ଆଉ ମୁଁ ବସି ସ୍ଥିର କଲୁ ଆମେ ଦିଲ୍ଲୀ ଯିବୁ । ସୋରରେ କମଳା ରାଉତର ଗୋଟେ ଟ୍ରେକର୍ ଚାଲୁଥିଲା । ସେଇ ଟ୍ରେକରରେ ମୁଁ ଓ ଚିନ୍ତାମଣିବାବୁ କଲିକତା ଯାଇ ସେଇଠୁ ଉଡ଼ାଜାହାଜରେ ଦିଲ୍ଲୀ ଗଲୁ । ଦିଲ୍ଲୀରେ ପହଞ୍ଚି ନିଖିଳ ଭାରତ କଂଗ୍ରେସ କମିଟି ଅଫିସ୍‌କୁ ଗଲୁ । ଚିନ୍ତାମଣିବାବୁ ମୋ ପ୍ରାର୍ଥିତ୍ୱ ବିଷୟରେ କୁହାକୁହି କଲେ । ଫେରିଲୁ ଓଡ଼ିଶା ଭବନ । ମୋର ମନେପଡ଼ିଲା ପ୍ରଖ୍ୟାତ ହିନ୍ଦୀ ଲେଖିକା ଅମ୍ରିତା ପ୍ରୀତମ୍‌ଙ୍କ କଥା । ଇନ୍ଦିରାଗାନ୍ଧିଙ୍କ ସହିତ ତାଙ୍କର ନିବିଡ଼ ବନ୍ଧୁତ୍ୱ ରହିଛି । ନନ୍ଦିନୀ ଶତପଥୀଙ୍କର ମଧ୍ୟ ସେ ଜଣେ ଘନିଷ୍ଠ ବନ୍ଧୁ । ନନ୍ଦିନୀ ଶତପଥୀଙ୍କ ସହ ମୁଁ ତାଙ୍କ ଘରକୁ ଯାଇଛି । ମୁଁ ଅପରାହ୍ଣରେ ତାଙ୍କ ଘରକୁ ଯାଇ ସବୁକଥା କହିଲି । ସେ ମୋତେ ଆଶ୍ୱାସନା ଦେଲେ ମୁଁ ନିଶ୍ଚୟ ପ୍ରାର୍ଥୀ ହେବି । ମୁଁ ତାଙ୍କ

ଘରୁ ଚାଲିଆସିଲି । ମୁଁ ଆସିବା ପରେ ସେ ଇନ୍ଦିରାଗାନ୍ଧିଙ୍କ ଘରକୁ ଗଲେ ଓ ସେଠୁ ଫେରି ଓଡ଼ିଶା ଭବନକୁ ଫୋନ୍ କରି ମୋତେ ତାଙ୍କ ଘରକୁ ଡକେଇଲେ । ମୁଁ ଗଲି । ହସି ହସି ସେ ମୋତେ କହିଲେ- "ଆପ୍‌କା ହୋଗୟା ।"

କୃତଜ୍ଞତାରେ ମୋ ମୁଣ୍ଡ ନଇଁଗଲା । ମୁଁ ତାଙ୍କଠୁ ଚାଲିଆସିଲି । ନିଖିଳ ଭାରତ କଂଗ୍ରେସ କମିଟି ଅଫିସ୍‌ରେ ପ୍ରାର୍ଥି ଚୟନ କାର୍ଯ୍ୟ ରାଜ୍ୟ ପରେ ରାଜ୍ୟର ହେଉଥାଏ । ଦୁଇଦିନ ବା ତିନିଦିନ ପରେ ଓଡ଼ିଶା ଆଲୋଚନାକୁ ଆସିବ । ଯଦି ମୋତେ ପ୍ରାଥୀ କରାଯାଏ ପ୍ରାର୍ଥୀପତ୍ର ଦାଖଲ ପାଇଁ ମୋତେ ବ୍ୟବସ୍ଥା କରିବାକୁ ପଡ଼ିବ । ତେଣୁ ଚିନ୍ତାମଣିବାବୁ ଦିଲ୍ଲୀରେ ରହିଲେ । ମୁଁ ଟ୍ରେନ୍ ଯୋଗେ ଭୁବନେଶ୍ୱର ଫେରିଆସିଲି । ମନର ଉତ୍କଣ୍ଠା ଆହୁରି ବଢ଼ିଯାଇଥାଏ । ଭୁବନେଶ୍ୱରରେ ପହଞ୍ଚିବା ପରଦିନ ଖବର ଆସିଲା- ମୁଁ ସୋରରୁ ପ୍ରାର୍ଥୀ ହୋଇଛି । ପ୍ରଦେଶ କଂଗ୍ରେସ ଅଫିସ୍‌କି ଯାଇ ବୁଝିଲି ସୋରରୁ ମୁଁ ପ୍ରାର୍ଥୀ । ପ୍ରାର୍ଥୀପତ୍ର ଦାଖଲ କରିବା ପାଇଁ ମୁଁ ସୋର ଆସିଲି ଓ ନିର୍ଦ୍ଧାରିତ ସମୟରେ ପ୍ରାର୍ଥୀପତ୍ର ଦାଖଲ କଲି । ଶକୁନ୍ତଳା ପଣ୍ଡା ମଧ ସ୍ୱାଧୀନ ପ୍ରାର୍ଥିନୀ ହୋଇ ପ୍ରାର୍ଥୀପତ୍ର ଦାଖଲ କଲେ । ମୁଁ, ଚିନ୍ତାମଣି ଜେନା, ଜଗବନ୍ଧୁ ଦାସ ତାଙ୍କ ପାଖକୁ ଯାଇ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାକୁ ଅନେକ ବୁଝାଇଥିଲୁ; କିନ୍ତୁ ସେ ତାଙ୍କ ଜିଦ୍‌ରେ ଅଟଳ ରହିଲେ । ପ୍ରାର୍ଥୀପତ୍ର ପ୍ରତ୍ୟାହାର କଲେ ନାହିଁ । ଅନ୍ୟତମ ପ୍ରାର୍ଥୀ ଥିଲେ କମ୍ୟୁନିଷ୍ଟ ଦଳର ପୀତାମ୍ବର ପଣ୍ଡା । ଭୋଟ ପ୍ରଚାର ଜୋରସୋର୍ ଚାଲିଲା । ଭୋଟ୍ ଦେବା ତାରିଖର ଆଠ ନ ଦିନ ପୂର୍ବରୁ ବାସୁଦେବପୁର ନିର୍ବାଚନମଣ୍ଡଳୀରୁ ନିର୍ବାଚନ ଲଢୁଥିବା ଜଗବନ୍ଧୁ ଦାସ ବସନ୍ତ ରୋଗରେ ପୀଡ଼ିତ ହୋଇ ଶଯ୍ୟାଶାୟୀ ହୋଇପଡ଼ିଲେ । ଜାନକୀବାବୁ ମୋତେ କହିଲେ- "ଯଦୁବାବୁ; ସୋରରୁ ତ ଆପଣ ନିଶ୍ଚୟ ଜିତିବେ । ଜଗବନ୍ଧୁ ଅସୁବିଧାରେ ପଡ଼ିଗଲା । ଆପଣ ପାଞ୍ଚ ଛ'ଦିନ ପାଇଁ ବାସୁଦେବପୁର ଯାଇ ତା' ପାଇଁ ପ୍ରଚାର କରନ୍ତୁ ।"

ମନା କରିବା ସମ୍ଭବ ନଥିଲା, କାରଣ- ଜଗବନ୍ଧୁ ଥିଲା ମୋର ଅତି ଘନିଷ୍ଠ ଏବଂ ମୋର ଜଣେ ପ୍ରଧାନ ସମର୍ଥକ । ମଁ ବାସୁଦେବପୁର ଯାଇ ତା' ପାଇଁ ସଭା କରି ତା' ରୋଗ ବିଷୟରେ କହି ପ୍ରଚାର କଲି । ବାସୁଦେବପୁର ନିର୍ବାଚନ ମଣ୍ଡଳୀ ସୋର ନିର୍ବାଚନ ମଣ୍ଡଳୀକୁ ଲାଗିଛି । ନନ୍ଦିନୀଦେବୀଙ୍କ ସମୟରେ ଜଗବନ୍ଧୁଙ୍କୁ ମୁଁ ଟିକେଟ୍ ଦେଇ ଜିତାଇଥିଲି ଓ ସେତେବେଳର ଶିକ୍ଷାମନ୍ତ୍ରୀ ହିସାବରେ

ଏହି ନିର୍ବାଚନ ମଣ୍ଡଳୀରେ ଅନେକ ଶିକ୍ଷାନୁଷ୍ଠାନ ସ୍ଥାପନ ଓ ଅନେକ ଉନ୍ନୟନମୂଳକ କାର୍ଯ୍ୟ କରାଇଥିଲି । ବାସୁଦେବପୁରବାସୀ ମୋତେ ସମ୍ମାନ କରୁଥିଲେ । ତେଣୁ ମୋ ପ୍ରଚାର ଫଳପ୍ରଦ ହେବ ଭାବି ମୁଁ ବାସୁଦେବପୁର ଗଲି । ବିଭିନ୍ନ ସ୍ଥାନରେ ସଭା ସମିତି କରି ଜଗବନ୍ଧୁଙ୍କୁ ଜିତାଇବା ପାଇଁ ନିବେଦନ କଲି । ଜଗବନ୍ଧୁ ଏକ ସାଧାରଣ ପରିବାରରୁ ଆସିଥିଲା । ୧୯୭୪ରେ ବିଧାୟକ ଥିବାବେଳେ ଲୋକମାନଙ୍କ ସହିତ ଭଲ ସଂପର୍କ ରଖିଥିଲା । ସେଠିକାର ପ୍ରଚାର କାର୍ଯ୍ୟ ସାରି ଭୋଟ୍ ଦିନର ତିନିଦିନ ପୂର୍ବରୁ ମୋ ନିର୍ବାଚନ ମଣ୍ଡଳୀ ସୋରକୁ ଫେରିଲି ।

ମୋର ଦୃଢ଼ ବିଶ୍ୱାସ ମୁଁ ଜିତିବି । ଭୋଟ୍ ଦିନ ମଧ୍ୟାହ୍ନରେ ଅସରାଏ ବର୍ଷା ହୋଇଗଲା । ମୁଁ ବିଭିନ୍ନ ଭୋଟ୍ କେନ୍ଦ୍ରକୁ ଯାଇ ଅବସ୍ଥା ଅନୁଧ୍ୟାନ କରୁଥିଲି । ଭୋଟ୍‌ଦାନ ଶେଷ ହେବାକୁ ଆଉ ଘଣ୍ଟାଏ ଥାଏ, ଖବର ଆସିଲା ତେଣ୍ଟେଇ ଗାଆଁର ଅନେକ ଲୋକ ଭୋଟଦାନରୁ ବିରତ ରହିବେ ବୋଲି ସିଦ୍ଧାନ୍ତ କରି ଗାଆଁ ମୁଣ୍ଡରେ ବସିରହିଛନ୍ତି । ମୁଁ ତତ୍‌କ୍ଷଣାତ୍ ସେଠାକୁ ଗଲି । ସରପଞ୍ଚ ଭାଗବତ ମହାନ୍ତି ସେମାନଙ୍କୁ ବୁଝାସୁଝା କରି ଭୋଟ୍ ଦେବାକୁ ପ୍ରବର୍ତ୍ତାଉଛନ୍ତି । ସେମାନଙ୍କର ଜିଦ୍ ପ୍ରାର୍ଥୀ ନିଜେ ଯାଇ ତାଙ୍କ ସମସ୍ୟା ସମାଧାନ କରିବାର ପ୍ରତିଶ୍ରୁତି ଦିଅନ୍ତୁ । ସେମାନଙ୍କ ଦାବୀ ଥିଲା ଯେଉଁ ପୋଖରି ପାଖରେ ସେମାନେ ବସିଥିଲେ ତା'ର ଉନ୍ନତି ବିଧାନ ଏବଂ ଅନ୍ୟ କିଛି କାର୍ଯ୍ୟକ୍ରମ । ମୁଁ କରିବାକୁ ପ୍ରତିଶ୍ରୁତି ଦେଲି । ସମୟ ଗଡ଼ିଯାଉଥାଏ । ମୋ କଥାରେ ରାଜି ହୋଇ ସେଠି ବସିଥିବା ଲୋକେ ଯାଇ ଭୋଟ୍ ଦେଲେ । କିନ୍ତୁ ଗାଆଁ ଭିତରେ ଥିବା ବୁଢ଼ାବୁଢ଼ୀ ଓ ସ୍ତ୍ରୀଲୋକମାନେ ଭୋଟ୍ ଦେଇପାରିଲେ ନାହିଁ । କହିବାକୁ ଗଲେ ଏ ଗାଆଁ ସମେତ ବହୁ ଗାଆଁ ଥିଲା ମୋର ଭୋଟ୍‌ବେଙ୍କ୍ । ଭାଗ୍ୟର ବିଡ଼ମ୍ବନା ୧୦୮ ଖଣ୍ଡ ଭୋଟ୍‌ରେ ଏ ନିର୍ବାଚନରେ ମୁଁ ପରାଜିତ ହେଲି ।

ଜାନକୀ ବଲ୍ଲଭ ପଟ୍ଟନାୟକ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଦିନେ ତାଙ୍କ ମନ୍ତ୍ରୀମଣ୍ଡଳରେ ଶିକ୍ଷାମନ୍ତ୍ରୀ ଥିବା ଗଙ୍ଗାଧର ମହାପାତ୍ରଙ୍କ ସାଙ୍ଗରେ ଯାଇ ଜାନକୀବାବୁଙ୍କୁ ସାକ୍ଷାତ୍ କଲି ଓ କହିଲି- "ଭାବୁଚି, ନିର୍ବାଚନ ମୋକଦ୍ଦମା କରିବି । କାରଣ ହେଲା- ଭୋଟ୍ ଗଣତିରେ ଅସନ୍ତୁଷ୍ଟ ହୋଇ, ମୁଁ ପୁନର୍ଗଣତି ପାଇଁ ଗଣତି କରିଥିବା ସବ୍‌କଲେକ୍ଟରଙ୍କୁ ଦରଖାସ୍ତ ଦେଇଥିଲି । ମାତ୍ର ସେ ଗଣତି ନ କରି ନିର୍ବାଚନ ଫଳ ଘୋଷଣା କରିଦେଲେ ।"

ମୁଖ୍ୟମନ୍ତ୍ରୀଙ୍କୁ ଏ କଥା କହି ଗଙ୍ଗାଧରବାବୁଙ୍କୁ ସାଙ୍ଗରେ ନେଇ କଟକ ଗଲି । ଦୁହେଁ ଗଲୁ ବାରିଷ୍ଟର ରଣଜିତ୍ ମହାନ୍ତିଙ୍କ ପାଖକୁ । ସେ ମଧ୍ୟ ମୋକଦ୍ଦମା କରିବାକୁ ପରାମର୍ଶ ଦେଲେ ।

ସେତେବେଳେ ନିର୍ବାଚନ ସଂକ୍ରାନ୍ତୀୟ ମୋକଦ୍ଦମା ହାଇକୋର୍ଟରେ ହେଉଥିଲା । ଓଡ଼ିଶା ହାଇକୋର୍ଟରେ ମୋକଦ୍ଦମା ଦାଏର୍ କରାଗଲା ।

କିଛିଦିନ ପରେ ଜାଣିବାକୁ ପାଇଲି ମୋକଦ୍ଦମା ଶେଷ ହେବାକୁ ଲକ୍ଷାଧିକ ଟଙ୍କା ଖର୍ଚ୍ଚ ହେବ ଓ ଅନ୍ୟୁନ ତିନିବର୍ଷ ସମୟ ଲାଗିବ । ହାଇକୋର୍ଟଙ୍କ ରାୟ ବିରୁଦ୍ଧରେ ଯଦି କୌଣସି ପକ୍ଷ ଅପିଲ୍ କରିବାକୁ ଚାହିଁବେ ତାହାହେଲେ ତାଙ୍କୁ ସୁପ୍ରିମ୍‌କୋର୍ଟ ଯିବାକୁ ପଡ଼ିବ । ମୋକଦ୍ଦମା ଶେଷ ବେଳକୁ ଆଗାମୀ ବିଧାନସଭା ନିର୍ବାଚନ ପାଖେଇ ଆସିଥିବ । ଅନେକ ହିତାକାଂକ୍ଷୀ ବନ୍ଧୁ ମୋତେ କହିଲେ- ମୋକଦ୍ଦମା ଟଙ୍କା ଖର୍ଚ୍ଚ ନ କରି, ସେହି ଟଙ୍କାକୁ ନିର୍ବାଚନ ମଣ୍ଡଳୀରେ ବୁଲାବୁଲି ଓ ସଙ୍ଗଠନ ପାଇଁ ଯଦି ଖର୍ଚ୍ଚ କରାଯାଏ, ଆଗାମୀ ନିର୍ବାଚନ ସହଜରେ ଜିତିହେବ । ତିନି ଚାରିବର୍ଷ ମୋକଦ୍ଦମା ପଛରେ ଦଉଡ଼ି ଲାଭ କ'ଣ ?

ସେୟା କରାଗଲା । ମୁଁ ଆଉ ମୋକଦ୍ଦମା ନ ଲଢ଼ି ନିର୍ବାଚନ ମଣ୍ଡଳୀରେ ନିର୍ଦ୍ଧୁମ୍ ବୁଲି ଭୋଟରମାନଙ୍କ ସହିତ ସଂଯୋଗ ସ୍ଥାପନ କଲି । ମୋର ମନେଅଛି ପନ୍ଦର କୋଡ଼ିଏ ଖଣ୍ଡ ସାଇକେଲ୍‌ରେ ମୁଁ ଘନଶ୍ୟାମ ଲେଙ୍କା, କାର୍ତ୍ତିକ ମହାପାତ୍ର ପ୍ରମୁଖ ଗାଆଁକୁ ଗାଆଁ ବୁଲୁଥିଲୁ ।



# ଦୁର୍ଲଭ ଚିଠି

ପ୍ରଥମେ ଓଡ଼ିଶାରେ ସବୁଜ କବି, ପରେ ବଙ୍ଗଳା ସାହିତ୍ୟରେ ଉଚ୍ଚକୋଟୀର ଉପନ୍ୟାସ ରଚନା କରି ପ୍ରସିଦ୍ଧି ଲାଭ କରିଥିବା ପୂର୍ବତନ ଆଇ.ସି.ଏସ୍. ଅଫିସର ଅନ୍ନଦା ଶଙ୍କର ରାୟଙ୍କ ସହିତ କଟକରେ ଅନୁଷ୍ଠିତ ବଙ୍ଗୀୟ ନବବର୍ଷ ସମାରୋହରେ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ଅନ୍ନଦାବାବୁଙ୍କ ଘର ଢେଙ୍କାନାଳରେ । ତାଙ୍କର ବାପା ଢେଙ୍କାନାଳ ରାଜାଙ୍କର ଜଣେ କର୍ମଚାରୀ ଥିଲେ ।

ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳ ଭାଂଗିଯିବା ପରେ ୧୯୭୮ ମସିହାରେ ମୁଁ ତାଙ୍କୁ ତାଙ୍କ କଲିକତା ବାସଭବନରେ ଭେଟି ସାହିତ୍ୟ ସଂପର୍କରେ ଅନେକ ଆଲୋଚନା କରିଥିଲି ।

ତାଙ୍କୁ କହିଥିଲି- "ଆପଣ ଆମ ଓଡ଼ିଶାର ଢେଙ୍କାନାଳର ଲୋକ । ସବୁଜ ସାହିତ୍ୟ ସମିତି ଏବଂ ନନ୍‌ସେନ୍‌ସ କ୍ଲବ୍‌ର ପ୍ରତିଷ୍ଠାତା ସଦସ୍ୟ ଥିଲେ । ପ୍ରଥମେ ଓଡ଼ିଆ ଭାଷାରେ କବିତା ଲେଖି ପରେ ବଙ୍ଗଳା ଭାଷାରେ ଅନେକ ଉପନ୍ୟାସ ରଚନା କରିଛନ୍ତି । ଆପଣ ସାହିତ୍ୟ ଜଗତରେ ଚିର ସ୍ମରଣୀୟ ହୋଇ ରହିବେ । ମୋର ଦୁଃଖ ଯେ ଆପଣଙ୍କ କୌଣସି ବହିର ଓଡ଼ିଆ ଅନୁବାଦ ହୋଇ ନାହିଁ । ଆପଣଙ୍କର କିଛି ଉପନ୍ୟାସ ଓଡ଼ିଆରେ ଅନୁବାଦିତ ହେବା ଉଚିତ ।"

ସେ ସଂଗେ ସଂଗେ ମୋତେ ପଚାରିଲେ- "ଆପଣ ଅନୁବାଦ କରିପାରିବେ ?"

ମୁଁ 'ହଁ' କହିଲି ।

ମୋଠୁ 'ହଁ' ଶୁଣି ସେ ଆଲମାରି ଭିତରୁ ଖଣ୍ଡେ ଉପନ୍ୟାସ ଆଣି ମୋ' ହାତକୁ ବଢ଼େଇଦେଲେ ଏବଂ କହିଲେ- "ମୋର ଏଇ ଉପନ୍ୟାସଟା ଆପଣ ଅନୁବାଦ କରନ୍ତୁ । ଅନୁବାଦ କରି ପାଣ୍ଡୁଲିପି ମୋ ପାଖକୁ ପଠାଇଦେବେ । ମୁଁ

ଦେଖିବି । ତା'ପରେ ଛାପିବା ପାଇଁ ପ୍ରକାଶକଙ୍କୁ ଦେଇଦେବେ । ସେ ଯେଉଁ ଉପନ୍ୟାସଟି ଦେଲେ, ତା'ର ନାମ ହେଉଛି 'ସୁଖ' । ମୋ ସହିତ ତାଙ୍କର ସମସ୍ତ କଥାବାର୍ତ୍ତା ଓଡ଼ିଆରେ ଥିଲା ।

୧୯୭୭ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ନଥିଲି ବୋଲି ଆଗରୁ କହିଚି । 'ସୁଖ' ଉପନ୍ୟାସର ଓଡ଼ିଆ ଅନୁବାଦ କରି ପାଣ୍ଡୁଲିପି ତାଙ୍କ ପାଖକୁ ପଠାଇଦେଲି । ପାଣ୍ଡୁଲିପି ତାଙ୍କ ପାଖରେ ଥାଏ । ମୁଁ ୧୯୮୦ ନିର୍ବାଚନରେ ହାରିଯିବା ପରେ ଅନ୍ନଦାଶଙ୍କର ରାୟ ଓଡ଼ିଆ ଭାଷାରେ ମୋତେ ଯେଉଁ ଚିଠି ଲେଖିଥିଲେ ତାହା ମୁଁ ନିମ୍ନରେ ପ୍ରଦାନ କରୁଛି ।

୨୩୩ ଯୋଧପୁର ପାର୍କ<br>କଲିକତା-୬୮<br>୧୩।୬।୮୦

ଶ୍ରଦ୍ଧାସ୍ପଦେଷୁ;

ଆପଣଙ୍କୁ ଚିଠି ଲେଖିବା କଥା ମୁଁ ଅନେକ ଦିନରୁ ଭାବୁଥିଲି । ମୋର ଇଚ୍ଛା ଥିଲା ଆପଣଙ୍କ ନିର୍ବାଚନ ପରେ ଆପଣଙ୍କୁ ମୋର ଅଭିନନ୍ଦନ ଜଣାଇ ଚିଠି ଲେଖିବି । ଦୁଃଖର ବିଷୟ ଆପଣ କେତେଟା ଭୋଟ୍ ଅଭାବରେ ଜୟଲାଭରୁ ବଂଚିତ ହେଲେ । ଏଥିରେ ମୁଁ ବିସ୍ମିତ ଓ ବିଷଣ୍ଣ ହେଇଛି । ସୁତରାଂ ଅଭିନନ୍ଦନ ବଦଳରେ ଜଣାଉଛି ସମବେଦନା ।

ଆପଣଙ୍କ ପାଖରେ ମୋର ଲଜ୍ଜାର ସୀମା ନାହିଁ । ଇତି ମଧ୍ୟରେ ଗୋଟିଏ ବଡ଼ ଉପନ୍ୟାସରେ ହାତ ଦେଇ ମୁଁ ସର୍ବଦା ବ୍ୟସ୍ତ ରହିଛି । ଟିକିଏ ଫୁର୍‌ସତ ମିଳିଲେ 'ସୁଖ'ର ଅନୁବାଦ ଅନୁମୋଦନ କରି ପଠାଇଦେବି । କ୍ଷମା କରିବେ ।

ମୋର ପ୍ରୀତି ନମସ୍କାର ଜାଣିବେ । ଆଶାକରେ ସବୁ କୁଶଳ ।

ଇତି<br>ଭବଦୀୟ<br>ଅନ୍ନଦାଶଙ୍କର ରାୟ

'ସମାଜ'ରେ ଭୋଟ୍ ଗଣନାର ଫଳାଫଳ ଦେଖିଲି ।

Very narrow margin.

ଏହା ଥିଲା ମୋ ପ୍ରତି ଅନ୍ନଦାଶଙ୍କର ରାୟଙ୍କର ସମବେଦନାର ଚିଠି ।

ଏହାର କିଛିଦିନ ପରେ 'ସୁଖ'ର ମୁଖବନ୍ଧ ଲେଖି ପାଣ୍ଡୁଲିପି ପଠାଇଦେଲେ । ମୁଁ ପ୍ରକାଶ ପାଇଁ ପାଣ୍ଡୁଲିପିଟି ମୋର ଅନେକ ବହି ପ୍ରକାଶ କରିଥିବା 'ଗ୍ରନ୍ଥ ମନ୍ଦିର'ର ବନ୍ଧୁ ଅଭିରାମ ମହାପାତ୍ରଙ୍କୁ ଦେଲି । ସେ ମୋର ଅନେକ ନାଟକ, ଉପନ୍ୟାସ, ଗଳ୍ପ ଓ କବିତା ପୁସ୍ତକ ପ୍ରକାଶ କରିଛନ୍ତି । ସେ ବହିଟିକୁ ପ୍ରକାଶ କଲେ । ସେ ବହି ନେଇ ମୁଁ ଅନ୍ନଦାବାବୁଙ୍କୁ ଦେଲି । ବହିଟିକୁ ଦେଖି ସେ ଭାରି ଖୁସି ହେଲେ ଓ ଆଉ ଖଣ୍ଡେ ଉପନ୍ୟାସ 'ରାଜଅତିଥି' ଅନୁବାଦ କରିବାକୁ ଦେଲେ । ତାହା ମୁଁ ଅନୁବାଦ କଲି ଓ 'ଗ୍ରନ୍ଥମନ୍ଦିର' ପ୍ରକାଶ କଲେ ।

ଅନ୍ନଦାଶଙ୍କର ରାୟ ଆଜି ସ୍ୱର୍ଗରେ। ତାଙ୍କର ଏଇ ହାତଲେଖା ଚିଠିଟି ମୁଁ ସାଇତି ରଖିଛି ।



# ଭାରତ ରାଜନୀତିର ନୂଆମୋଡ଼୍

ପଞ୍ଜାବରେ ଅକାଳୀ ଦଳର ପ୍ରଭାବକୁ ହ୍ରାସ କରିବା ପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ଯେଉଁସବୁ କାର୍ଯ୍ୟପନ୍ଥା ଗ୍ରହଣ କଲେ, ଶେଷରେ ତାହା ତାଙ୍କ ପାଇଁ ବୁମେରାଙ୍ଗ୍ ହେବ ବୋଲି ସେ କେବେ ଆଶା କରି ନଥିଲେ । ସନ୍ଥ ଭିନ୍ଦରନ୍‌ୱାଲେ ନାମକ ଜଣେ ବ୍ୟକ୍ତିଙ୍କୁ ସେ ଅକାଳୀ ଦଳକୁ ଦମନ କରିବାର ଦାୟିତ୍ୱ ଦେଇଥିଲେ । କିନ୍ତୁ ଭିନ୍ଦରନ୍‌ୱାଲେ ଉଗ୍ରବାଦର ନାୟକ ସାଜିଥିଲେ । ଖଲିସ୍ତାନ ଗଠନ କରି ପଞ୍ଜାବକୁ ଏକ ସ୍ୱତନ୍ତ୍ର ରାଷ୍ଟ୍ରରେ ପରିଣତ କରିବା ପାଇଁ ସେ ଶିଖ୍‌ମାନଙ୍କୁ ଉସ୍କେଇଥିଲେ । ପବିତ୍ର ସ୍ୱର୍ଣ୍ଣମନ୍ଦିରକୁ ଏକ ସୈନ୍ୟ ଛାଉଣିରେ ପରିଣତ କରିଦେଇଥିଲେ । ଇନ୍ଦିରାଗାନ୍ଧିଙ୍କ ନିର୍ଦ୍ଦେଶକ୍ରମେ ଭାରତୀୟ ସୈନ୍ୟବାହିନୀ ସ୍ୱର୍ଣ୍ଣ ମନ୍ଦିରକୁ ମୁକ୍ତ କରିବା ପାଇଁ ମନ୍ଦିର ଭିତରକୁ ପ୍ରବେଶ କରିଥିଲେ । ଗୁଳି ବିନିମୟରେ ନିଜକୁ ଶିଖ୍‌ମାନଙ୍କର ଗୁରୁ ବୋଲାଉଥିବା ସନ୍ଥ ଭିନ୍ଦରନ୍‌ୱାଲେ ନିହତ ହୋଇଥିଲେ । ମନ୍ଦିର ପରିସରରେ ଅନେକ ଶିଖ୍ ମୃତ୍ୟୁବରଣ କରିଥିଲେ । ମନ୍ଦିର ଭିତରେ ଏପରି ଘଟଣା ଘଟିବା ଦ୍ୱାରା ଶିଖ୍ ସଂପ୍ରଦାୟ ଅତି ମାତ୍ରାରେ କ୍ରୋଧାନ୍ୱିତ ହୋଇପଡ଼ିଥିଲେ ।

ସେତେବେଳକୁ ସଞ୍ଜୟ ଗାନ୍ଧି ନିଜେ ଚଳାଉଥିବା ଉଡ଼ାଜାହାଜର ଦୁର୍ଘଟଣାରେ ମୃତ୍ୟୁବରଣ କରିସାରିଥିଲେ । ରାଜୀବ ଗାନ୍ଧି ଥିଲେ ଇନ୍ଦିରାଜୀଙ୍କର ଏକମାତ୍ର ସମ୍ବଳ । ସଞ୍ଜୟଙ୍କ ମୃତ୍ୟୁ ପୂର୍ବରୁ ରାଜୀବଗାନ୍ଧି ରାଜନୀତି କରୁ ନଥିଲେ । ସେ ଥିଲେ ଇଟାଲୀରେ ଜଣେ ବିମାନ ଚାଳକ । ସେହି ଇଟାଲୀରେ ହିଁ ସେ ସୋନିଆ ଗାନ୍ଧିଙ୍କୁ ବିବାହ କରିଥିଲେ ।

ପଞ୍ଜାବର ଏଇ ଘଟଣା ପରେ ଦିଲ୍ଲୀସ୍ଥିତ ପ୍ରଧାନମନ୍ତ୍ରୀଙ୍କ ବାସଭବନ ଶିଖ୍‌ମାନଙ୍କ କୋପ ଦୃଷ୍ଟିରେ ପଡ଼ିଥିଲା । ୧୯୮୪ ମସିହା ଡିସେମ୍ବର ମାସରେ

ଲୋକସଭା ନିର୍ବାଚନ ହେବାର କଥା । ତେଣୁ ଇନ୍ଦିରା ଗାନ୍ଧି ଦେଶର ବିଭିନ୍ନ ସ୍ଥାନକୁ ଯାଇ ନିର୍ବାଚନ ସଭାରେ ଭାଷଣ ଦେଉଥାନ୍ତି । ୧୯୮୪ ଅକ୍ଟୋବର ୩୧ ତାରିଖରେ ଭୁବନେଶ୍ୱର ସଚିବାଳୟ ସାମ୍ନା ପଡ଼ିଆରେ ଇନ୍ଦିରାଗାନ୍ଧି ଏକ ବିରାଟ ଜନସଭାରେ ଭାଷଣ ଦେଇ ଦିଲ୍ଲୀ ଫେରିଯାଇଥିଲେ । ପରଦିନ ପୂର୍ବାହ୍ଣରେ ଦିଲ୍ଲୀସ୍ଥିତ ତାଙ୍କ ବାସଭବନରେ ତାଙ୍କ ଦେହରକ୍ଷୀ ଯେ କି ଥିଲେ ଜଣେ ପଞ୍ଜାବୀ ତାଙ୍କରି ଗୁଳିରେ ଇନ୍ଦିରାଗାନ୍ଧି ମୃତ୍ୟୁବରଣ କରିଥିଲେ । ତାଙ୍କ ମୃତ୍ୟୁ ପରେ ରାଜୀବ ଗାନ୍ଧି ପ୍ରଧାନମନ୍ତ୍ରୀ ହୋଇଥିଲେ । ଡିସେମ୍ବର ମାସରେ ଅନୁଷ୍ଠିତ ଲୋକସଭା ନିର୍ବାଚନରେ ଇନ୍ଦିରାଜୀଙ୍କ ହତ୍ୟା ହିଁ କଂଗ୍ରେସ ପ୍ରତି ଲୋକମାନଙ୍କର ସମର୍ଥନକୁ ଦ୍ୱିଗୁଣିତ କରିଦେଇଥିଲା । ବିଶେଷ କରି ଓଡ଼ିଶାରେ ତାହା ବହୁଗୁଣିତ ହୋଇଥିଲା କାରଣ ଓଡ଼ିଶା ମାଟିରେ ହିଁ ଥିଲା ତାଙ୍କର ଶେଷ ସଭା । ନିର୍ବାଚନରେ କଂଗ୍ରେସର ବିପୁଳ ବିଜୟ ପରେ ରାଜୀବ ଗାନ୍ଧି ହିଁ ପୁନର୍ବାର ପ୍ରଧାନମନ୍ତ୍ରୀ ଆସନ ଅଳଂକୃତ କରିଥିଲେ ।

ଇନ୍ଦିରାଜୀ ଭୁବନେଶ୍ୱରରେ ଯେଉଁ ପଡ଼ିଆରେ ଶେଷ ସଭା କରିଥିଲେ, ସେହି ପଡ଼ିଆଟିକୁ ଇନ୍ଦିରା ପାର୍କରେ ପରିଣତ କରାଯାଇଥିଲା ।



# ଓଡ଼ିଶା ୧୯୮୦-୧୯୮୫

ଓଡ଼ିଶାରେ ୧୯୮୦ ନିର୍ବାଚନରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବିପୁଳ ବିଜୟଲାଭ କଲା । ଜାନକୀବାବୁ ହେଲେ ମୁଖ୍ୟମନ୍ତ୍ରୀ । ତାଙ୍କ ମନ୍ତ୍ରିମଣ୍ଡଳରେ ଗଙ୍ଗାଧର ମହାପାତ୍ର ଶିକ୍ଷାମନ୍ତ୍ରୀ ହେଲେ । ଟେକ୍ସଟବୁକ୍ ବ୍ୟୁରୋର ସେ ମୋତେ ଜଣେ ସଭ୍ୟ କରିଥିଲେ । କୋରାପୁଟ ଜିଲ୍ଲା ଜୟପୁର ନିର୍ବାଚନ ମଣ୍ଡଳୀର ବିଧାୟକ ରଘୁନାଥ ପଟ୍ଟନାୟକ ହୋଇଥିଲେ ଅର୍ଥମନ୍ତ୍ରୀ । ଭଦ୍ରକ ନିର୍ବାଚନ ମଣ୍ଡଳୀର ବିଧାୟକ ଯୁଗଳ କିଶୋର ପଟ୍ଟନାୟକ, ବସନ୍ତ କୁମାର ବିଶ୍ୱାଳ ପ୍ରମୁଖ ରାଷ୍ଟ୍ରମନ୍ତ୍ରୀ ଥିଲେ । ବସନ୍ତ କୁମାର ବିଶ୍ୱାଳ ଜାନକୀବାବୁଙ୍କର ଖୁବ୍ ଅନୁରକ୍ତ ଥିଲେ ।

ବସନ୍ତବାବୁଙ୍କ ବିଷୟରେ ନନ୍ଦିନୀଦେବୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ମୁଁ ଯାହା ଜାଣିବାକୁ ପାଇଥିଲି, ତାହା ଉଲ୍ଲେଖ କରୁଛି ।

୧୯୭୬ ମସିହାରେ ଆଇ.ଏନ୍.ଏସ୍. ଚିଲିକାର ଭିତ୍ତିପ୍ରସ୍ତର ସ୍ଥାପନ କରିବା ପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ବଡ଼କୁଳ ପାର୍ଶ୍ୱସ୍ଥ ଚିଲିକା ହ୍ରଦ ଉପକଣ୍ଠକୁ ଆସିଥିଲେ । ତାଙ୍କ ସହିତ ଆସିଥିଲେ ପ୍ରତିରକ୍ଷା ଉପମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ଭୁବନେଶ୍ୱରରୁ ମୁଖ୍ୟମନ୍ତ୍ରୀ ଓ ଆମେ କିଛି ମନ୍ତ୍ରୀ ଯାଇଥିଲୁ । ଶାନ୍ତି ଶୃଙ୍ଖଳାର ସହ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଲା । ଉତ୍ସବ ପରେ ପ୍ରଧାନମନ୍ତ୍ରୀ ଓ ଜାନକୀବାବୁ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କଲେ । ନନ୍ଦିନୀଦେବୀ ମଧ୍ୟ ତାଙ୍କ ସହିତ ଦିଲ୍ଲୀ ଗଲେ ।

ଆମ୍ଭମାନଙ୍କ ପାଇଁ ବଡ଼କୁଳ ଡାକବଙ୍ଗଳାରେ ଖାଇବା ବ୍ୟବସ୍ଥା କରାଯାଇଥିଲା । ଗଙ୍ଗୁଭାଇନା ଓ ମୁଁ ପାଖରେ ପାଖରେ ବସି ଖାଉଥିଲୁ । ସେଠି ଦେଖିଲି ପାଇଜାମା ପଞ୍ଜାବି ପିନ୍ଧିଥିବା ଜଣେ ଭଦ୍ରଲୋକ ଖାଇବା କଥା ବୁଝୁଥିଲେ । ମୁଁ ତାଙ୍କୁ ଚିହ୍ନି ନଥିଲି । ପାଖରେ ବସି ଖାଉଥିବା ଗଙ୍ଗୁଭାଇନାଙ୍କୁ ପଚାରିଲି- "ଏ ଭଦ୍ରଲୋକ କିଏ ?" ସେ ବି ତାଙ୍କୁ ଚିହ୍ନିନାହାନ୍ତି ବୋଲି କହିଲେ ।

ଖାଇସାରି ମୁହଁ ହାତ ଧୋଇ ଖାଇବା ଦାୟିତ୍ୱରେ ଥିବା ସରକାରୀ ଲୋକଙ୍କୁ ପଚାରିଲି ସେ ଭଦ୍ରଲୋକ କିଏ ?

ସେ କହିଲେ- "ସେ ହେଉଛନ୍ତି ବସନ୍ତ ବିଶ୍ୱାଳ । କଟକର ଜଣେ ପେଟି କଣ୍ଟ୍ରାକ୍ଟର । ଜାନକୀବାବୁଙ୍କ ଖାସ୍ ଲୋକ । ଆଜି ଏ ଖାଇବା ବ୍ୟବସ୍ଥା ସେ କରିଛନ୍ତି ।"

"ଖାଇବା ବ୍ୟବସ୍ଥା ସେ କରିଛନ୍ତି ? ସେ କାହିଁକି କରିଛନ୍ତି ?"

ମୋର ଏ ପ୍ରଶ୍ନର ଉତ୍ତରରେ ହସି କହିଲେ- "ଆଜ୍ଞା, କଣ୍ଟ୍ରାକ୍ଟର ଲୋକ ତ । ଏଠି ଯେଉଁ କାମ ହେବ ତାକୁ ତା'ର ମନ୍ତ୍ରୀ ତ ଜାନକୀବାବୁ । କିଛି କାମ ୟାଙ୍କୁ ଦେବେ ।

୧୯୮୦ ମସିହାରେ ସେ ରାଷ୍ଟ୍ରମନ୍ତ୍ରୀ ହେବା ପରେ ସେ ଜାନକୀବାବୁଙ୍କ ବାସଭବନ ପାଖରେ ଥିବା ଘରଟିରେ ରହିଲେ । ଅନେକ କାର୍ଯ୍ୟ ପାଇଁ ମୁଖ୍ୟମନ୍ତ୍ରୀ ତାଙ୍କ ଉପରେ ନିର୍ଭର କରୁଥିଲେ । ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଯିବା ପାଇଁ ଉଭୟ ବାସଗୃହ ମଝିରେ ଥିବା ବାଡ଼ରେ ଆଉ ଗୋଟାଏ ଫାଟକ କରାଯାଇଥିଲା । ବିଧାୟକମାନଙ୍କ କଥା ସେ ବୁଝୁଥିଲେ । ତାଙ୍କ ବାସଗୃହ ହତାରେ ସବୁବେଳେ ପାଞ୍ଚ ଛ'ଟା ଟେକ୍ସି ରହୁଥିଲା । ସେହିସବୁ ଟେକ୍ସି ବିଧାୟକମାନଙ୍କ ବ୍ୟବହାରରେ ଲାଗୁଥିଲା । ତାଙ୍କ କାର୍ଯ୍ୟ ଦେଖି ସେତେବେଳେ ତାଙ୍କୁ କୁହାଯାଉଥିଲା 'ସୁପର୍ ଚିଫ୍ ମିନିଷ୍ଟର୍' । ତାଙ୍କର ବ୍ୟବହାର ମଧ୍ୟ ଥିଲା ତଦ୍ରୂପ ।

ସେ ଯାହାହେଉ, କଟକ ସହରବାସୀଙ୍କ ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ । ବହୁଦିନ ତଳେ ତିନିପାଖ ନଦୀଘେରା କଟକ ସହରବାସୀଙ୍କୁ ବନ୍ୟା ଦାଉରୁ ରକ୍ଷା କରିବା ପାଇଁ ନଦୀ ପାଖରେ ବନ୍ଧ ନିର୍ମାଣ କରିଥିଲେ ବାଇମୁଣ୍ଡି । ବସନ୍ତବାବୁ କେନ୍ଦ୍ର ସରକାରଙ୍କଠାରୁ ଆସିଥିବା ବନ୍ୟା ସାହାଯ୍ୟ ପାଣ୍ଠିକୁ ବିନିଯୋଗ କରି ସେ ବନ୍ଧକୁ ସୁଦୃଢ଼ କରିଥିଲେ ଓ ବନ୍ଧ ପାଖରେ ଚଉଡ଼ା ରାସ୍ତା ନିର୍ମାଣ କରାଇଥିଲେ । ତେଣୁ ତାଙ୍କୁ ଦ୍ୱିତୀୟ ବାଇମୁଣ୍ଡି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜାନକୀବାବୁ ତନ୍ତ୍ରମନ୍ତ୍ରରେ ବିଶ୍ୱାସ କରନ୍ତି ବୋଲି ଶୁଣିବାକୁ ମିଳୁଥିଲା । ଝିଙ୍କିଟି ଆଶ୍ରମକୁ ସେ ଯିବା କଥା ଅନେକ ଜାଣିଥିଲେ । ସେଇମିତି ଯୋଗାଶ୍ରମ କରିଥିବା ଦିଲ୍ଲୀର ଧୀରେନ୍ଦ୍ର ବ୍ରହ୍ମଚାରୀ ଥିଲେ ଇନ୍ଦିରା ଗାନ୍ଧିଙ୍କର ଜଣେ ପରାମର୍ଶଦାତା । ଶୁଣାଯାଏ ସେ ମଧ୍ୟ ଜଣେ ତାନ୍ତ୍ରିକ ଥିଲେ । ଗଙ୍ଗାଧର ମହାପାତ୍ରଙ୍କ

ଶିକ୍ଷାମନ୍ତିତ୍ୱ କାଳରେ ଅନେକ ସମୟରେ ମୁଁ ମଧ୍ୟ ତାଙ୍କ ପାଖକୁ ଯାଉଥିଲି । ସେହି ସମୟରେ ସ୍କୁଲ ଛାତ୍ରଛାତ୍ରୀମାନଙ୍କୁ ଯୋଗାଭ୍ୟାସ କରାଇବାର କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । କେତେକ ଶିକ୍ଷକଙ୍କୁ ବଛାଯାଇ ଯୋଗ ସଂପର୍କରେ ତାଲିମ୍ ଦିଆଯାଉଥିଲା । ଏହି ତାଲିମ୍ କାର୍ଯ୍ୟ ସଂପାଦନ କରୁଥିଲେ କିଛି ଅଭିଜ୍ଞ ଯୋଗସାଧକ । ଏସବୁ କରାଯାଉଥିବା ସମୟରେ ହଠାତ୍ ଦିନେ ପ୍ରଧାନମନ୍ତ୍ରୀଙ୍କ ବାସଭବନରୁ ଟେଲିଫୋନ୍ ଆସିଲା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଏସବୁ କାର୍ଯ୍ୟକ୍ରମ ବନ୍ଦ କରିବା ପାଇଁ । ମୁଖ୍ୟମନ୍ତ୍ରୀ କାଳବିଳମ୍ବ ନ କରି ଶିକ୍ଷା ବିଭାଗକୁ ନିର୍ଦ୍ଦେଶ ଦେଲେ ଏ କାର୍ଯ୍ୟକ୍ରମ ବନ୍ଦ କରିବାକୁ । ଏହାକୁ ବନ୍ଦ କରିଦିଆଗଲା । ପରେ ଜଣାପଡ଼ିଲା ଯେ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କ ଅଜାଣତରେ ପିଲାମାନଙ୍କ ପାଇଁ ଯୋଗାଭ୍ୟାସ କାର୍ଯ୍ୟକ୍ରମ ଅନ୍ୟମାନଙ୍କ ଦ୍ୱାରା କରାଇବା ସେ ଚାହୁଁ ନଥିଲେ । ଦିଲ୍ଲୀରେ ଥିବା ତାଙ୍କ ଯୋଗାଶ୍ରମର ସାଧକମାନେ ଆସି ଏହା କରାଇଥିଲେ ସେ ପ୍ରସନ୍ନ ହୋଇଥାନ୍ତେ । ପରବର୍ତ୍ତୀ ସମୟରେ ଇନ୍ଦିରାଗାନ୍ଧି ଯାଙ୍କରି ପାଇଁ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ସାମ୍ବାଦିକ ଜନାର୍ଦ୍ଦନ ଠାକୁର ତାଙ୍କ ପୁସ୍ତକ "All the Prime Minister's Men" ରେ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କୁ ଜଣେ ଭଣ୍ଡବାବା ବୋଲି ବର୍ଣ୍ଣନା କରିଛନ୍ତି ।



# ୧୯୮୫ ବିଧାନସଭା ନିର୍ବାଚନ

୧୯୮୫ ମସିହା ମାର୍ଚ୍ଚ ମାସରେ ବିଧାନସଭା ନିର୍ବାଚନ ମୋ' ପାଇଁ ଥିଲା ଏକ ଆହ୍ୱାନ । ସୋର ନିର୍ବାଚନମଣ୍ଡଳୀରୁ ମୋତେ କଂଗ୍ରେସ ଦଳରୁ ପ୍ରାର୍ଥୀ କରାଗଲା । ଏହି ନିର୍ବାଚନରେ ଗତ ସରକାରରେ ସବୁଠାରୁ ପ୍ରଭାବଶାଳୀ ମନ୍ତ୍ରୀ ଥିବା ବସନ୍ତ କୁମାର ବିଶ୍ୱାଳ ଟିକେଟ୍ ପାଇବାରୁ ବଂଚିତ ହେଲେ । ଜାନକୀବାବୁ ରାଜୀବ ଗାନ୍ଧିଙ୍କୁ ବସନ୍ତବାବୁଙ୍କ ବିରୁଦ୍ଧରେ ଅନେକ କଥା କହି ତାଙ୍କୁ ପ୍ରଭାବିତ କରିଥିଲେ । ରାଜୀବ ଗାନ୍ଧି ଥିଲେ ପ୍ରଧାନମନ୍ତ୍ରୀ ଏବଂ ଅଖିଳ ଭାରତ କଂଗ୍ରେସ କମିଟିର ସଭାପତି । ଗତ ବିଧାନସଭାରେ ବସନ୍ତବାବୁ ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀରୁ ବିଧାୟକ ଥିଲେ । ଏ ନିର୍ବାଚନରେ ସେଠାରୁ ପ୍ରାର୍ଥୀ କରାଗଲା ନିତ୍ୟାନନ୍ଦ ସାମନ୍ତରାୟଙ୍କୁ । ସେ ବସନ୍ତବାବୁଙ୍କର ମାମୁଁ ସଂପର୍କୀୟ ହୁଅନ୍ତି । ନିତ୍ୟାନନ୍ଦବାବୁ ବହୁତ ଭୋଟ୍‌ରେ ବିଜୟୀ ହୋଇଥିଲେ ।

ଏଥର ମଧ୍ୟ ସୋରରୁ ମୋ ବିରୁଦ୍ଧରେ ପ୍ରାର୍ଥୀ ହୋଇଥିଲେ ଗତଥର ବିଧାୟକ ଥିବା ପୀତାମ୍ବର ପଣ୍ଡା । ସୋର ଏନ୍.ଏ.ସି., ସାହାସପୁରା ଓ ଅନ୍ୟ କେତେକ ଗାଆଁରେ ଅନେକ ମୁସଲମାନ ଭୋଟର ଅଛନ୍ତି । ସେମାନେ ମୋତେ ଆଖିବୁଜି ଭୋଟ ଦେଇଥିଲେ । ସେହିଭଳି ଭାବରେ କିଛି ଗାଆଁରୁ ୮୦ ଭାଗରୁ ଅଧିକ ଭୋଟ୍ ମୁଁ ପାଇଥିଲି । ନିର୍ବାଚନରେ ବିଜୟୀ ହେବା ମୋ' ପାଇଁ ସହଜସାଧ ଥିଲା । ମୁଁ ୪୮ ହଜାରରୁ ଅଧିକ ଭୋଟ୍ ପାଇଥିବା ବେଳେ ପ୍ରତିଦ୍ୱନ୍ଦୀ ପୀତାମ୍ବର ପଣ୍ଡା ପ୍ରାୟ ୧୪ ହଜାର ଭୋଟ ପାଇଥିଲେ । ଏହି ନିର୍ବାଚନରେ ତିର୍ତ୍ତୋଲରୁ ଜିତିଥିବା ନିତ୍ୟାନନ୍ଦ ସାମନ୍ତରାୟ ଓଡ଼ିଶାରେ ସର୍ବାଧିକ ଭୋଟ ପାଇଥିଲେ । ସେହିଭଳି ଭାବରେ ଜାନକୀ ବଲ୍ଲଭ ପଟ୍ଟନାୟକ ସର୍ବାଧିକ ବ୍ୟବଧାନରେ ଜିତିଥିଲେ । ମୁଁ ଥିଲି ଏ ଦୁଇ କ୍ଷେତ୍ରରେ ଦ୍ୱିତୀୟ । ପୀତାମ୍ବର ପଣ୍ଡା ଓ ମୋର

ଭୋଟ ବ୍ୟବଧାନ ଥିଲା ପ୍ରାୟ ୩୪ ହଜାରରୁ ଅଧିକ । ମୋର କନିଷ୍ଠ ଭ୍ରାତାପ୍ରତିମ ଜଗବନ୍ଧୁ ଦାସ ଏ ନିର୍ବାଚନରେ ବିଧାୟକ ହୋଇପାରି ନଥିଲେ । ତାଙ୍କ ସ୍ଥାନରେ ସେଠାରୁ କଂଗ୍ରେସ ଦଳର ବିଧାୟକ ହୋଇଥିଲେ ମଧୁସୂଦନ ପାଣିଗ୍ରାହୀ । ବାଲେଶ୍ୱର ଜିଲ୍ଲାରୁ ଅନ୍ୟ ଯେଉଁମାନେ କଂଗ୍ରେସ ଟିକେଟରେ ଜିତିଥିଲେ ସେମାନେ ହେଲେ ଭୋଗରାଇରୁ ଉମାରାଣୀ ପାତ୍ର, ଜଳେଶ୍ୱରରୁ ଯୁଧିଷ୍ଠିର ଜେନା, ବସ୍ତାରୁ ଭୋପାଳ ଚନ୍ଦ୍ର ମହାପାତ୍ର, ନୀଳଗିରିରୁ ସୁକୁମାର ନାୟକ, ସିମୁଳିଆରୁ ପଦ୍ମଲୋଚନ ପଣ୍ଡା, ଭଦ୍ରକରୁ ଯୁଗଳ କିଶୋର ପଟ୍ଟନାୟକ, ଧାମନଗରରୁ ଜଗନ୍ନାଥ ରାଉତ, ଚାନ୍ଦବାଲିରୁ ନେତ୍ରାନନ୍ଦ ମଲ୍ଲିକ, ଭଣ୍ଡାରିପୋଖରୀରୁ ପୁରୁଷୋତ୍ତମ ସେଠୀ । ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଅରୁଣ ଦେ ନିର୍ବାଚିତ ହୋଇଥିଲେ । ଭଦ୍ରକ ନିର୍ବାଚନ ମଣ୍ଡଳୀରୁ ଯୁଗଳବାବୁଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦିତା କରିଥିଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ । ସେ କିନ୍ତୁ ପରାଜୟ ବରଣ କରିଥିଲେ ।

ନିର୍ବାଚନ ପରେ ଜାନକୀବାବୁ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ହେଲେ ଓ ତାଙ୍କର ମନ୍ତ୍ରିମଣ୍ଡଳ ଗଠନ କଲେ । ସେ ମୋତେ ମନ୍ତ୍ରିମଣ୍ଡଳରେ ନେଇ ନଥିଲେ । ଶପଥ ଗ୍ରହଣ ଦିନ ମୁଁ ରାଜଭବନକୁ ଯାଇଥିଲି । ଯୁଗଳ କିଶୋର ପଟ୍ଟନାୟକଙ୍କୁ କେବିନେଟ୍ ମନ୍ତ୍ରୀ କରାଯାଇ ଶିକ୍ଷା ବିଭାଗର ଦାୟିତ୍ୱ ଦିଆଗଲା । ଗଙ୍ଗାଧର ମହାପାତ୍ର ଅର୍ଥମନ୍ତ୍ରୀ ହୋଇଥିଲେ । ଏହି ବିଧାନସଭାର ବାଚସ୍ପତି ହୋଇଥିଲେ ପ୍ରସନ୍ନ କୁମାର ଦାଶ ଓ ଉପବାଚସ୍ପତି ହୋଇଥିଲେ ଚିନ୍ତାମଣି ଦ୍ୟାନ୍‌ସାମନ୍ତରାୟ । ବିଧାନସଭାର କେତେଗୋଟି କମିଟି ଥାଏ । ତନ୍ମଧ୍ୟରୁ ଏକ କମିଟି ହେଉଛି Public Undertaking Committee । ମୋତେ ସେହି କମିଟିର ଅଧ୍ୟକ୍ଷ କରାଯାଇଥିଲା । ବିଧାନସଭାର କମିଟିମାନଙ୍କରେ ଉଭୟ ସରକାରୀ ଓ ବିରୋଧୀ ଦଳର ସଭ୍ୟମାନେ ସଦସ୍ୟ ଥାଆନ୍ତି । ମୁଁ ଅଧ୍ୟକ୍ଷ ରହିଥିବା ଏହି କମିଟିରେ ବିରୋଧୀ ଦଳରୁ ରାମକୃଷ୍ଣ ପଟ୍ଟନାୟକ ଜଣେ ସଭ୍ୟ ଥିଲେ । ଏଇ ନବମ ବିଧାନସଭାର ପ୍ରଥମ ଅଧିବେଶନର କିଛିଦିନ ପରେ କେବିନେଟ୍ ମନ୍ତ୍ରୀ ଥିବା ନିରଂଜନ ପଟ୍ଟନାୟକ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ତାଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆସିଥିଲା । ଅବଶ୍ୟ ମାସ କେଇଟା ପରେ ସେ ପୁଣି ମନ୍ତ୍ରିମଣ୍ଡଳକୁ ଫେରିଥିଲେ ।

ଜଗବନ୍ଧୁ ଦାସ ତାଙ୍କ ସରକାରୀ ବାସଭବନ ଛାଡ଼ି ନଥିଲେ । ତାହା ଥିଲା ପୁରୁଣା ବସ୍‌ଷ୍ଟେଣ୍ଡ ପାଖରେ । ମୁଁ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ସେଠାକୁ ଯାଇ ବସୁଥିଲି । ଦିନେ ରାତି ପ୍ରାୟ ଦଶଟା ବେଳେ ମୋ' ବାସଭବନରେ ମୋତେ ନ ପାଇ ସେଠୁ ଖବର ନେଇ ଜଗବନ୍ଧୁ ଦାସଙ୍କ ବାସଭବନରେ ଆସି ପହଞ୍ଚିଥିଲେ । ତାଙ୍କୁ ଦେଖି ମୁଁ ଓ ଜଗବନ୍ଧୁ ଦି'ଜଣଯାକ ଆଶ୍ଚର୍ଯ୍ୟ ହେଇଗଲୁ ।

ସେ କହିଲେ- "ଯଦୁବାବୁ; ଆପଣ ଏଠି; ମୁଁ ଆପଣଙ୍କୁ ୟାଡ଼େସ୍ୟାଡ଼େ ଖୋଜୁଛି ।"

"କାହିଁକି ଖୋଜୁଛନ୍ତି ?" ମୁଁ ତାଙ୍କୁ ପଚାରିଲି ।

ସେ କହିଲେ- "ମୁଖ୍ୟମନ୍ତ୍ରୀ ଖୋଜୁଛନ୍ତି, ଚାଲନ୍ତୁ ।"

ମୁଖ୍ୟମନ୍ତ୍ରୀ ଖୋଜୁଛନ୍ତି । ମୋତେ ନେଇଯିବା ପାଇଁ ନିରଞ୍ଜନ ପଟ୍ଟନାୟକ ଆସିଛନ୍ତି, ଆଶ୍ଚର୍ଯ୍ୟ ।

ନିରଞ୍ଜନ ପଟ୍ଟନାୟକ ହେଉଛନ୍ତି ମୁଖ୍ୟମନ୍ତ୍ରୀଙ୍କ ଜାମାତା ସୌମ୍ୟରଂଜନ ପଟ୍ଟନାୟକଙ୍କ ଜ୍ୟେଷ୍ଠଭ୍ରାତା ।

ଅଗତ୍ୟା ତାଙ୍କରି ସହିତ ତାଙ୍କରି ଗାଡ଼ିରେ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଗଲି । ମୋତେ ଦେଖି ମୁଖ୍ୟମନ୍ତ୍ରୀ ହସିଦେଇ କହିଲେ- "ଯଦୁବାବୁ; ବସନ୍ତୁ ।"

ମୁଁ ଦେଖିଲି ବିଧାୟକ ଶରତ ରାଉତ ସେଠି ବସିଛନ୍ତି । ମୁଁ ବି ବସିଲି ।

ମୁଁ ବସିବା ପରେ ମୁଖ୍ୟମନ୍ତ୍ରୀ କହିଲେ- "ଯଦୁବାବୁ; କାଲି ଆପଣ କେବିନେଟ୍ ମନ୍ତ୍ରୀ ଭାବରେ ଶପଥ ନେବେ । ଶିକ୍ଷା ବିଭାଗର ଦାୟିତ୍ୱ ଆପଣ ତୁଲାଇବେ ।"

ହଁ; ସେ ପୁଣି କହିଲେ- "ଶରତ ବି କାଲି ରାଷ୍ଟ୍ରମନ୍ତ୍ରୀ ଭାବେ ଶପଥ ନେବ ।"

ଏକଥା ଶୁଣିବା ପରେ ଶରତଙ୍କୁ ଚାହିଁ ମୁଁ ହସିଦେଲି । ସେ ବି ମୋତେ ଚାହିଁ ହସିଦେଲେ ।

ପରଦିନ ଯଥା ସମୟରେ କେବିନେଟ୍ ମନ୍ତ୍ରୀ ଭାବରେ ଶପଥ ନେଲି । ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ ଶପଥପାଠ କରାଇଲେ । ଶପଥ ନେଇ ସିଧା ସଚିବାଳୟ ଗଲି । ଶିକ୍ଷା, କ୍ରୀଡ଼ା ଓ ଯୁବବ୍ୟାପାର ବିଭାଗର ଦାୟିତ୍ୱ ନେଲି । ମୋର ରାଷ୍ଟ୍ରମନ୍ତ୍ରୀ ଥିଲେ ଫ୍ରିଡା ଟପ୍ପୋ । ସେ ସୁନ୍ଦରଗଡ଼ ଜିଲ୍ଲା ରଘୁନାଥପଲ୍ଲୀର ବିଧାୟିକା ଥିଲେ । ସଚିବାଳୟରେ ମୋ ପାଇଁ ଉଦ୍ଦିଷ୍ଟ ଥିବା କୋଠିରରେ ମୁଁ

ବସିଲି । ରାଷ୍ଟ୍ରମନ୍ତ୍ରୀ ମଧ୍ୟ କିଛିସମୟ ପାଇଁ ମୋ ପାଖରେ ଥିଲେ । ମୋ ବିଭାଗମାନଙ୍କର ସଚିବ ଥିଲେ ସୁଧାଂଶୁ ମୋହନ ପଟ୍ଟନାୟକ । ତାଙ୍କର ବାପା ଥିଲେ ନାଗରୀମୋହନ ପଟ୍ଟନାୟକ । ନାଗରୀମୋହନବାବୁ କେରଳ ରାଜ୍ୟର ପୂର୍ବତନ ମୁଖ୍ୟ ଶାସନ ସଚିବ । ସୁଧାଂଶୁବାବୁ ଆସି ମୋତେ ଅଭିବାଦନ ଜଣାଇଲେ । ମୋ ଦସ୍ତଖତ ପାଇଁ ଗୋଟାଏ ଫାଇଲ୍ ସେ ଆଣିଥିଲେ । ମୋ ସମ୍ମୁଖରେ ତାହାକୁ ରଖିଦେଲେ । ମୁଁ ଟିକିଏ ଦେଖାଦେଖି କରି ଦସ୍ତଖତ କଲି ଓ ଫାଇଲ୍‌ଟା ତାଙ୍କୁ ବଢ଼ାଇ ଦେଲି । ମୋର ପି.ଏ.ଓ ଟାଇପିଷ୍ଟ ଭାବେ ସେଦିନ ଯୋଗଦେଇଥାନ୍ତି ଜୟକୃଷ୍ଣ ଦାସ, ରବୀନ୍ଦ୍ରନାଥ ଦାସ ଓ ଉମା ଚରଣ ମହାନ୍ତି । ସୋର ବଜାର ପାଖ ରାଇପୁର ଗାଆଁର ପର୍ଶୁରାମ ଦାସ ଥିଲେ ମୋର Officer on Special Duty. ସେମାନେ ଆମ ପାଇଁ କିଛି ନାସ୍ତା ଓ ଚାହା ପଠାଇଦେଲେ । ସୁଧାଂଶୁବାବୁ ବିଭାଗ ବିଷୟରେ କିଛି ସୂଚନା ଦେଲେ । ମୋର ବ୍ୟକ୍ତିଗତ ସଚିବ ଭାବେ ମୂରଲୀଧର ପାଢ଼ୀ ଓ.ଏ.ସ୍‌ଙ୍କୁ ଆଣିଲି । ଏ ସମୟରେ ବି ଶିକ୍ଷା ବିଭାଗର ବିଭକ୍ତିକରଣ ହୋଇ ନଥିଲା । ପୂର୍ବଥର ପରି ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ମୋରି ଦାୟିତ୍ୱରେ ଥିଲା ।

ସେତେବେଳର ଛାତ୍ରନେତା ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର (ଲୁଲୁ) ପ୍ରତି ସପ୍ତାହରେ ଦୁଇ ତିନିଥର ଛାତ୍ରଛାତ୍ରୀମାନଙ୍କର ସମସ୍ୟା ନେଇ ପ୍ରାୟ ମୋ ପାଖକୁ ଆସୁଥିଲେ । ଲୁଲୁଙ୍କ ବାପା ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ରେଭେନ୍‌ସା କଲେଜରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ସହପାଠୀ ଥିଲେ । ସେ ଇଂରାଜୀରେ ଏମ୍.ଏ. ପାସ୍ କରି ଇଂରେଜୀ ଅଧ୍ୟାପକ ଥିଲେ । ସେ ହେଉଛନ୍ତି ଓଡ଼ିଶାର ପ୍ରବାଦ ପୁରୁଷ ଇଂରେଜଙ୍କ ବିରୁଦ୍ଧରେ ସଂଗ୍ରାମ କରି ଫାଶୀ ପାଇଥିବା ବକ୍ସି ଜଗବନ୍ଧୁଙ୍କର ଦାୟାଦ । ବକ୍ସି ଜଗବନ୍ଧୁ ଓଡ଼ିଶାର ତତ୍‌କାଳୀନ ରାଜାଙ୍କର ସେନାଧ୍ୟକ୍ଷ ଥାଇ ଯେଉଁ ସାହସିକ ପଦକ୍ଷେପ ନେଲେ ତାହା ଅବିସ୍ମରଣୀୟ । ପରବର୍ତ୍ତୀ କାଳରେ ତାଙ୍କରି ନାମାନୁସାରେ ଭୁବନେଶ୍ୱରରେ ବକ୍ସି ଜଗବନ୍ଧୁ ବିଦ୍ୟାଧର କଲେଜ (ବି.ଜେ.ବି. କଲେଜ) ପ୍ରତିଷ୍ଠିତ ହୋଇଥିଲା ।

ଲୁଲୁ କିଛି ପିଲାଙ୍କୁ ନେଇ ମୋ ପାଖରେ ପହଞ୍ଚୁଥିଲେ । ସେ ମୋ ସାମ୍ନାରେ ନ ବସି ଠିଆ ହେଇ ପିଲାଙ୍କ ସମସ୍ୟା ବିଷୟରେ କହୁଥିଲେ । ମୁଁ ସେସବୁ ସମସ୍ୟାର ସମାଧାନ ତତ୍‌କ୍ଷଣାତ୍ କରିଦେଉଥିଲି ବା କରିଦେବାର ପ୍ରତିଶ୍ରୁତି ଦେଉଥିଲି ।

ଦିନେ ସେ ଆସି ମୋତେ କହିଲେ- "ସାର୍; ଆଜି ମୁଖ୍ୟମନ୍ତ୍ରୀ ମୋତେ କହୁଥିଲେ- "ଲୁଲୁ; ଗଙ୍ଗାଧରବାବୁ ଶିକ୍ଷାମନ୍ତ୍ରୀ ଥିବାବେଳେ ତୁ ତ ପିଲାମାନଙ୍କ ସମସ୍ୟା ନେଇ ମୋ ପାଖକୁ ବରାବର ଆସୁଥିଲୁ ଏବେ ତ କାହିଁ ଆଉ ଆସୁନୁ ?"

ଏ କଥା ଶୁଣି ମୁଁ ଲୁଲୁ ମୁହଁକୁ ଚାହିଁଲି ।

ତା'ପରେ ସେ କହିଲେ- "ମୁଁ କହିଲି ଏବର ଶିକ୍ଷାମନ୍ତ୍ରୀ ଯଦୁବାବୁ ପିଲାମାନଙ୍କ ସମସ୍ୟା ତ ସାଂଗେ ସାଂଗେ ସମାଧାନ କରିଦେଉଛନ୍ତି, ଆପଣଙ୍କ ପାଖକୁ ଆସିବା ଦରକାର ପଡୁନି ।"

ସେହି ଲଲାଟେନ୍ଦୁ ପରବର୍ତ୍ତୀ କାଳରେ ପୁରୀ ଜିଲ୍ଲାର ବ୍ରହ୍ମଗିରି ନିର୍ବାଚନ ମଣ୍ଡଳୀରୁ ଏକାଧିକବାର ବିଧାୟକ ହୋଇଛନ୍ତି । ୨୦୦୪ ମସିହାରେ ମୁଁ ଏହା ଲେଖିବାବେଳେ ସେ ମଧ୍ୟ ବ୍ରହ୍ମଗିରିର ବିଧାୟକ ଥିଲେ । ଏବେ ଯେଉଁଠି ତାଙ୍କ ସହିତ ଦେଖାହୁଏ, ସେ ମୁଣ୍ଡ ନୁଆଁଇ ମୋତେ ପ୍ରଣାମ କରନ୍ତି ।

ସ୍କୁଲ କଲେଜର କାର୍ଯ୍ୟକ୍ରମ ପାଇଁ ନିୟମିତ ଭାବରେ ମୋତେ ଯିବାକୁ ପଡୁଥାଏ । ଅନେକ ସାହିତ୍ୟ ସଭାର ଆୟୋଜକମାନେ ମଧ୍ୟ ମୋତେ ନିମନ୍ତ୍ରଣ କରନ୍ତି । ସେସବୁ ନିମନ୍ତ୍ରଣ ମୁଁ ଏଡ଼ାଇ ପାରେ ନାହିଁ ।



# ସେବେଳର ଆଉ କିଛି କଥା

କେନ୍ଦ୍ରରେ ଶିକ୍ଷା ବିଭାଗର ମନ୍ତ୍ରୀ ଥିଲେ ପି.ଭି. ନରସିଂହ ରାଓ । ହାଇଦ୍ରାବାଦର ବାସିନ୍ଦା ସେ । ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ । ପ୍ରତ୍ୟେକ ବର୍ଷ ବିଭିନ୍ନ ରାଜ୍ୟର ଶିକ୍ଷାମନ୍ତ୍ରୀମାନଙ୍କର ବୈଠକ ଦିଲ୍ଲୀରେ ହେଉଥାଏ । ଏ ବୈଠକକୁ ପ୍ରଧାନମନ୍ତ୍ରୀ ଉଦ୍‌ଘାଟନ କରନ୍ତି । ପ୍ରଥମ ଦିନର ବୈଠକରେ ମୁଖ୍ୟମନ୍ତ୍ରୀମାନେ ଯୋଗ ଦିଅନ୍ତି । ପଶ୍ଚିମବଂଗର ସ୍କୁଲ ବିଭାଗର ମନ୍ତ୍ରୀ ଥାଆନ୍ତି କାନ୍ତି ବିଶ୍ୱାସ ଓ ମୁଖ୍ୟମନ୍ତ୍ରୀ ଥାଆନ୍ତି ଜ୍ୟୋତି ବସୁ । ସି.ପି.ଆଇ.ଏମ୍. ଦଳ ଶାସନ କ୍ଷମତାରେ ଥାଏ । ସି.ପି.ଆଇ.ଏମ୍. ଦଳ କଂଗ୍ରେସ ଦଳର ଘୋର ବିରୋଧୀ । କେନ୍ଦ୍ର ସରକାରଙ୍କ ଶିକ୍ଷାନୀତିକୁ ବିରୋଧ କରି କାନ୍ତିବାବୁ ଭାଷଣ ଦିଅନ୍ତି । କାନ୍ତିବାବୁଙ୍କ ଭାଷଣ ପରେ ନରସିଂହ ରାଓ ମୋତେ ଡାକନ୍ତି ଭାଷଣ ଦେବା ପାଇଁ । ମୋତେ କହିଥାନ୍ତି ତାଙ୍କ ସମାଲୋଚନାର ସଠିକ୍ ଉତ୍ତର ଦେବା ପାଇଁ । ମୋ ଭାଷଣରେ ମୁଁ ତାଙ୍କ ଭାଷଣର ସମାଲୋଚନା କରେ । ଶିକ୍ଷାର ମାନବୃଦ୍ଧି କିଭଳି କରାଯିବ, ସେଥିପାଇଁ ବିଭିନ୍ନ କମିଟିମାନ ଗଠିତ ହୋଇଥିଲା । ହାଇସ୍କୁଲ କମିଟିର ଅଧ୍ୟକ୍ଷ ମୋତେ କରାଯାଇଥିଲା । ଏହି କମିଟିରେ ଜଣେ ସଭ୍ୟ ଥିଲେ ଆସାମର ଶିକ୍ଷାମନ୍ତ୍ରୀ । ଆସାମରେ ସେତେବେଳେ କଂଗ୍ରେସ ସରକାର ନଥାଏ । ମୁଖ୍ୟମନ୍ତ୍ରୀ ଥାଆନ୍ତି ପ୍ରଫୁଲ୍ଲ ମହାନ୍ତ ।

ମୁଁ ନରସିଂହରାଓଙ୍କର ଖୁବ୍ ପ୍ରିୟଭାଜନ ହୋଇପାରିଥିଲି । ଥରେ ବୈଠକର ମଧ୍ୟାହ୍ନ ଭୋଜନ ସମୟରେ ସେ ଜାନକୀବାବୁଙ୍କୁ କହିଥିଲେ- "Mr. Pattanaik; you have got a very able Education Minister." ସେ ଏହା କହିବାବେଳେ ମୁଁ ମଧ୍ୟ ଉପସ୍ଥିତ ଥିଲି ।

ମହାରାଷ୍ଟ୍ରର ଶିକ୍ଷାମନ୍ତ୍ରୀ ଅଧ୍ୟାପକ ରାମମେଘେଙ୍କ ସହିତ ମୋର ଘନିଷ୍ଠ ସଂପର୍କ ଗଢ଼ି ଉଠିଥିଲା । ସେ ଉଚ୍ଚଶିକ୍ଷା କମିଟିର ଅଧ୍ୟକ୍ଷ ରହୁଥିଲେ । ମଧ୍ୟପ୍ରଦେଶର ଶିକ୍ଷାମନ୍ତ୍ରୀ ମୋତେ ଭାରି ସମ୍ମାନ ଦେଖାଉଥିଲେ । ସେ ଯେତେବେଳେ ଭାଷଣ ଦିଅନ୍ତି, ସବୁବେଳେ କହନ୍ତି ମଧ୍ୟପ୍ରଦେଶ ଓ ଓଡ଼ିଶାର ଶିକ୍ଷା ସମସ୍ୟା ଏକାପ୍ରକାରର । ଓଡ଼ିଶାର ଶିକ୍ଷାମନ୍ତ୍ରୀ ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ଯାହାସବୁ କରାଯିବାକୁ କହିଲେ ତାହା ମଧ୍ୟପ୍ରଦେଶ ପାଇଁ ମଧ୍ୟ ପ୍ରଯୁଜ୍ୟ ।

ଗଙ୍ଗାଧର ମହାପାତ୍ର ଶିକ୍ଷାମନ୍ତ୍ରୀ ଥିବାବେଳେ ପୁରୀଠାରେ "ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ସରକାର ବିଶ୍ୱବିଦ୍ୟାଳୟ ନିର୍ମାଣ ପାଇଁ ଜାଗା ଯୋଗାଇ ଦେଇନଥିଲେ । ତେଣୁ କେନ୍ଦ୍ର ସରକାର ଏବଂ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିସନ୍ ଏହାକୁ ମଞ୍ଜୁର ପ୍ରଦାନ କରି ନଥିଲେ । ଥରେ ମନ୍ତ୍ରୀମାନଙ୍କ ବୈଠକରେ ମଧ୍ୟାହ୍ନ ବିରତି ବେଳେ ବୁଲି ବୁଲି ଯେତେବେଳେ ଖାଉଥିଲୁ ମୁଁ ସେତେବେଳେ ନରସିଂହ ରାଓଙ୍କୁ ଏ କଥା କହିଥିଲି । ଶିକ୍ଷାମନ୍ତ୍ରୀମାନଙ୍କ ବୈଠକ ପରେ ତାଙ୍କୁ ତାଙ୍କ ଅଫିସ୍‌ରେ ଦେଖା କରିବାକୁ ସେ କହିଥିଲେ । ବୈଠକ ପରେ ସଂଧ୍ୟା ଛ'ଟାରେ ମୁଁ ତାଙ୍କୁ ତାଙ୍କ ଅଫିସ୍‌କୁ ଯାଇ ଦେଖା କରିଥିଲି ଓ ବିଶ୍ୱବିଦ୍ୟାଳୟ ବିଷୟରେ କହିଥିଲି । ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ ବର୍ଷେ ଭିତରେ ସରକାର ବିଶ୍ୱବିଦ୍ୟାଳୟକୁ ଜମି ଯୋଗାଇଦେବେ । ତେଣୁ ସେ ବର୍ଷକ ପାଇଁ ସ୍ୱୀକୃତି ଦିଅନ୍ତୁ । ଯଦି ବର୍ଷକ ଭିତରେ ସରକାର ଜମି ନ ଦେଇପାରନ୍ତି, ସେ ସ୍ୱୀକୃତି ପ୍ରତ୍ୟାହାର କରିନେବେ ।

ସେ କହିଲେ- "ସେହି ମର୍ମରେ ମୋତେ ଲେଖିକରି ଦିଅନ୍ତୁ ।"

ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ଲେଖିକରି ଦେଇଦେଲି ।

ସେ ତାହା ନେଇ କହିଲେ- "କାଲି ଏଗାରଟାବେଳେ ଆସନ୍ତୁ ।"

ପରଦିନ ଏଗାରଟା ବେଳେ ଗଲି । କହିଲେ- "ଟିକିଏ ଅପେକ୍ଷା କରନ୍ତୁ ।"

ମୁଁ ତାଙ୍କ ଅଭ୍ୟର୍ଥନା ପ୍ରକୋଷ୍ଠରେ ଯାଇ ବସିଲି । ପ୍ରାୟ ବାରଟାବେଳେ ମୋତେ ଡାକିଲେ । ମୁଁ ଗଲି । ସେ ମୋତେ ଅସ୍ଥାୟୀ ସ୍ୱୀକୃତିର ଆଦେଶ ଦେଇଦେଲେ । କୃତଜ୍ଞତାରେ ମୋ' ମୁଣ୍ଡ ନଇଁଗଲା । ଜାନକୀବାବୁ ସେଦିନ ଓଡ଼ିଶା ଭବନରେ ଥିଲେ । ମୁଁ ତାଙ୍କୁ ନେଇ ଆଦେଶନାମାଟା ଦେଖାଇଲି । ସେ ଆନନ୍ଦରେ କୁରୁଳି ଉଠିଲେ ।

ଆଉ ଏକ ଘଟଣାରେ ନରସିଂହ ରାଓ ଓଡ଼ିଶାକୁ ଅନୁଗୃହୀତ କରିଥିଲେ, ତାହା ମୁଁ ଏଠାରେ ଉଲ୍ଲେଖ କରୁଛି । ଯେଉଁମାନେ କର୍ମଜୀବୀ ସେମାନେ କଲେଜରେ ନାମ ଲେଖାଇ ପଢ଼ିପାରୁ ନଥିଲେ । ସେହିଭଳି ଆହୁରି ଅନେକ ଲୋକ ଥିଲେ ଯେଉଁମାନଙ୍କ ପକ୍ଷରେ କଲେଜରେ ପଢ଼ିବା ସମ୍ଭବ ହେଉ ନଥିଲା । ସେହି ଲୋକମାନଙ୍କୁ ପତ୍ର ମାଧମରେ ଶିକ୍ଷା ଦେବା ପାଇଁ ଦିଲ୍ଲୀଠାରେ ଇନ୍ଦିରାଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ଉତ୍ତର ପୂର୍ବାଞ୍ଚଳ ପାଇଁ ଏହାର ଏକ ଶାଖା କଲିକତାରେ ଆରମ୍ଭ କରିବା ପାଇଁ କେନ୍ଦ୍ର ସରକାର ନିଷ୍ପତ୍ତି ଗ୍ରହଣ କରିଥିଲେ । ଏ କଥା ମୁଁ ଜାଣିବା ପରେ ନରସିଂହ ରାଓଙ୍କୁ ଦେଖାକରି କହିଲି- "ପଶ୍ଚିମବଙ୍ଗରେ କଂଗ୍ରେସ ବିରୋଧୀ ଦଳର ସରକାର ରହିଛି । ମୁକ୍ତ ବିଶ୍ୱବିଦ୍ୟାଳୟର ଉତ୍ତର ପୂର୍ବାଞ୍ଚଳ ଶାଖା ସେଠି କାହିଁକି କରିବେ, ବରଂ ଏହାକୁ ଓଡ଼ିଶାରେ କରନ୍ତୁ ।"

ସେ ସଂଗେ ସଂଗେ ମୋତେ କହିଲେ- "ଆପତ୍ତି ନାହିଁ । କେନ୍ଦ୍ର ସରକାର ଏହାପାଇଁ ଘର ତିଆରି କରିବା ପର୍ଯ୍ୟନ୍ତ ତୁମେ ଘର ଯୋଗାଇ ଦେଇପାରିବ ? ଅନ୍ୟୁନ ତିନିବର୍ଷ ପାଇଁ ଘରଟିଏ ତ ଦରକାର ।"

ଘର ଯୋଗାଇଦେବାକୁ ମୁଁ ରାଜି ହେଇଗଲି । ସେ ଫାଇଲ୍ ମଗାଇ ମୋରି ସାମ୍‌ନାରେ ପୂର୍ବ ଆଦେଶକୁ ବାତିଲ୍ କରି ଆମ ରାଜ୍ୟର ରାଜଧାନୀ ଭୁବନେଶ୍ୱରରେ ଏହା ହେବା ପାଇଁ ଆଦେଶ ଦେଇଦେଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ଏହା ଆରମ୍ଭ କରାଗଲା ।

ଓଡ଼ିଶାର ଲକ୍ଷ୍ମୀଧର ମିଶ୍ର ଆଇ.ଏ.ଏସ୍. ସେତେବେଳେ କେନ୍ଦ୍ର ଶିକ୍ଷା ବିଭାଗରେ ଜଣେ ଅଫିସର ଥିଲେ । ନିରକ୍ଷରତା ଦୂରୀକରଣ ସଂପର୍କୀୟ କାର୍ଯ୍ୟକ୍ରମମାନ ତାଙ୍କରି ଦାୟିତ୍ୱରେ ଥିଲା । ଦିନେ କେନ୍ଦ୍ର ଶିକ୍ଷା ମନ୍ତ୍ରଣାଳୟରେ ତାଙ୍କ ସହ ଦେଖା ହେଲା । ଉଭୟ କିଛିସମୟ କଥା ହେଲୁ । ମୁଁ ଜଣେ ଲେଖକ ବୋଲି ସେ ଜାଣନ୍ତି । ସେ ମୋତେ କହିଲେ- "ନିରକ୍ଷରତା ଦୂରୀକରଣ ଉପରେ ବିଭିନ୍ନ ଭାରତୀୟ ଭାଷାରେ ଅଧଘଣ୍ଟିଆ ଫିଲ୍ମ ଆମେ ତିଆରି କଲୁଣି । ହେଲେ ଓଡ଼ିଆ ଭାଷାରେ ଏ ପର୍ଯ୍ୟନ୍ତ ହୋଇ ନାହିଁ । ଆପଣ ତ ଜଣେ ନାଟ୍ୟକାର । ଏ ଦିଗରେ ଆପଣ ଆମକୁ ସାହାଯ୍ୟ କରନ୍ତୁ ।"

ମୁଁ ନିଶ୍ଚୟ ସାହାଯ୍ୟ କରିବି ବୋଲି କହିଲି ।

ଆମ ଘୋର ବଜାର ନିକଟସ୍ଥ ଗୁହାରିଆ ସାହିର ପ୍ରଫୁଲ୍ଲ ମହାନ୍ତି ନାମକ ଜଣେ ଯୁବକ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରେ ଚାକିରି କରୁଥିଲେ । ତାଙ୍କର ଚାକିରି ଥିଲା ଦୂରଦର୍ଶନର ପ୍ରଯୋଜନା ବିଭାଗରେ । ଓଡ଼ିଶା ଭବନରୁ ସରୋଜିନୀ ନଗର ବଜାରକୁ ଯିବା ବାଟରେ କିଛି ସରକାରୀ ଘର ଅଛି । ପ୍ରଫୁଲ୍ଲବାବୁ ସେଇଠି ରହୁଥିଲେ । ରାତିରେ ତାଙ୍କୁ ଓଡ଼ିଶା ଭବନକୁ ଡକେଇ କଥା ହେଲି । ମୁଁ କାହାଣୀ, ଚିତ୍ରନାଟ୍ୟ ଓ ସଂଳାପ ଲେଖିଦେବି । ସେ ତାକୁ ଅଧଘଣ୍ଟିଆ ଫିଲ୍ମ ବନେଇଦେବେ । କାହାଣୀ କ'ଣ ହବ, ସେ କଥା ମୁଁ ରାତିରେ ଭାବିଲି । ପରଦିନ ପ୍ରଫୁଲ୍ଲବାବୁଙ୍କୁ ସାଙ୍ଗରେ ନେଇ ଲକ୍ଷ୍ମୀଧରବାବୁଙ୍କୁ ଦେଖା କରି କାହାଣୀ ତାଙ୍କୁ କହିଲି । ସେ ଶୁଣି ଭାରି ଖୁସି ହେଲେ । କହିଲେ ଶୀଘ୍ର କରେଇ ଦିଅନ୍ତୁ । ପ୍ରଫୁଲ୍ଲବାବୁଙ୍କୁ ପଚାରିଲେ- "ଆନୁମାନିକ କେତେ ଟଙ୍କା ଖର୍ଚ୍ଚ ହେବ ?"

ପ୍ରଫୁଲ୍ଲବାବୁ ହିସାବ କରି ଖର୍ଚ୍ଚର ଆନୁମାନିକ ପରିମାଣ କହିଲେ । ଲକ୍ଷ୍ମୀଧରବାବୁ ସମ୍ମତ । ସମସ୍ତ ଖର୍ଚ୍ଚ ବିଭାଗ ବହନ କରିବ । ତାହା କରାଗଲା । ସେହି ଅଧଘଣ୍ଟିଆ ଫିଲ୍ମର ନାମ 'ପ୍ରଥମ ଚିଠି' । ସେ ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିକ୍ଷାବିଭାଗ ଦ୍ୱାରା ଏହା ପ୍ରଦର୍ଶିତ ହୋଇ ଆଦୃତି ଲାଭ କରିଥିଲା ।



# ଆସାମରେ ନିର୍ବାଚନ ପ୍ରଚାର

୧୯୮୫ ମସିହା ଡିସେମ୍ବର ମାସରେ ଆସାମରେ ବିଧାନସଭା ପାଇଁ ନିର୍ବାଚନ ହୋଇଥିଲା । ନିଖିଳ ଭାରତ କଂଗ୍ରେସ କମିଟିର ନିର୍ଦ୍ଦେଶ ଦ୍ୱାରା ମୋତେ ଆସାମ ଯିବାକୁ ପଡ଼ିଥିଲା । ସେ ସମୟରେ ଆସାମରେ ଥାଏ କଂଗ୍ରେସ ସରକାର । ଆସାମର କିଛି ଛାତ୍ର ଓ ଯୁବଗୋଷ୍ଠୀ ପ୍ରଫୁଲ୍ଲ ମହାନ୍ତଙ୍କ ନେତୃତ୍ୱରେ ଆସାମ ଗଣ ପରିଷଦ ନାମକ ରାଜନୈତିକ ଦଳ ଗଠନ କରି ନିର୍ବାଚନରେ କଂଗ୍ରେସର ମୁଖ୍ୟ ପ୍ରତିଦ୍ୱନ୍ଦୀ ଥାନ୍ତି । ଆସାମର ଚାହା ବଗିଚାରେ ବହୁତ ଓଡ଼ିଆ କାମ କରନ୍ତି । ସେମାନଙ୍କ ଭୋଟ୍ କଂଗ୍ରେସ ସପକ୍ଷରେ ଆଣିବା ପାଇଁ ମୋତେ ଆସାମ ପଠାଯାଇଥିଲା । କାର୍ତ୍ତିକେଶ୍ୱର ପାତ୍ର ଓ ସୋରର ସେଲିମୁଦ୍ଦିନ ମହମ୍ମଦ ମଧ୍ୟ ଯାଇଥିଲେ । ଗୋଟାଏ ଚାହା ବଗିଚାରେ ଆମେ ରହିଲୁ । ସେହି ଚାହା ବଗିଚା ପାଖପାଖ ତିନିଟି ନିର୍ବାଚନ ମଣ୍ଡଳୀରେ ଆମେ କର୍ମୀବୈଠକ ଓ ସାଧାରଣ ସଭାମାନଙ୍କରେ ଯୋଗଦେଲୁ ।

ଦିନକର କଥା । ସଂଧ୍ୟାରେ ଆମେ ରହୁଥିବା ଚାହା ବଗିଚାରେ ଏକ ସାଧାରଣ ସଭା ଅନୁଷ୍ଠିତ ହେଉଥାଏ । ସେହି ନିର୍ବାଚନ ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀଙ୍କ ବିରୁଦ୍ଧରେ ଜଣେ ଓଡ଼ିଆ ପ୍ରାର୍ଥୀ ଥିଲେ । ସେଦିନ ସଂଧ୍ୟାରେ ଆମ ସଭା ଚାଲିଥିବା ବେଳେ, ସେହି ପ୍ରାର୍ଥୀଙ୍କର କିଛି କର୍ମୀ ଗୋଟାଏ ପେଟ୍ରୋମେକ୍ସ ଲାଇଟ୍ ଧରି ଶୋଭାଯାତ୍ରାରେ ଆସି ଆମରି ସଭା ପାଖରେ ଡାକବାଜି ଯନ୍ତ୍ରରେ ଭାଷଣ ଦେବା ଆରମ୍ଭ କରିଦେଲେ । ଆମ ସଭାକୁ ଭଣ୍ଡୁର କରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ ।

ଆମେ ଆମ ଡାକବାଜି ଯନ୍ତ୍ରରୁ ଯେତେ ତାଙ୍କୁ କହିଲୁ- ଏପରି କରିବା ବେଆଇନ୍, ସେମାନେ କିଛି ଶୁଣିଲେ ନାହିଁ । ଶେଷରେ ସଭାସ୍ଥଳରେ ଉପସ୍ଥିତ

ଥିବା ବଂଧୁକଧାରୀ ପୋଲିସ୍ ଯାଇ ତାଙ୍କୁ ଏଥିରୁ ନିବୃତ୍ତ ରହିବାକୁ କହି, ତାଙ୍କୁ ସେ ସ୍ଥାନରୁ ଘଉଡ଼ାଇ ଦେଲେ । ସେ ନିର୍ବାଚନ ମଣ୍ଡଳୀର କଂଗ୍ରେସ ପ୍ରାର୍ଥୀ ମଧ୍ୟ ଆମ ସଭାରେ ଉପସ୍ଥିତ ଥିଲେ । ମୁଁ ଓ କାର୍ତ୍ତିକେଶ୍ୱରବାବୁ ଓଡ଼ିଆରେ ଭାଷଣ ଦେଲୁ । ସେଲିମ୍ ହିନ୍ଦୀରେ ଭାଷଣ ଦେଲେ । ପ୍ରାର୍ଥୀ ଦେଲେ ତାଙ୍କ ନିଜ ଭାଷାରେ । ଓଡ଼ିଆ ଭାଷା ଓ ଆସାମର ଅହମିଆ ଭାଷା ମଧ୍ୟରେ ଅନେକ ସାମଞ୍ଜସ୍ୟ ଅଛି । ମୁଁ ଭାଷଣ ସାରି ବସିପଡ଼ିଲି । ମୋ ପଛ ଚେୟାର୍‌ରେ ବାଇଶି ତେଇଶି ବର୍ଷର ଝିଅଟିଏ ବସିଥିଲା । ସେ ମୋତେ କହିଲା- "ଆପଣଙ୍କ ଭାଷଣ ଭାରି ବଢ଼ିଆ ଲାଗିଲା ।"

ତା' ମୁହଁରୁ ଓଡ଼ିଆ କଥା ଶୁଣି ମୁଁ ପଛକୁ ଚାହିଁ ପଚାରିଲି- "ତମ ଘର କେଉଁଠି ?"

ସେ କହିଲା- 'ବଲାଙ୍ଗୀର' ।

ମୁଁ ପଚାରିଲି- "ବଲାଙ୍ଗୀରର କେଉଁଠି ?"

ସେ କହିପାରିଲାନି ।

ମୋର ପୁଣି ପ୍ରଶ୍ନ- "ଗାଆଁକୁ କେବେ ଯାଇଛ ?"

ସେ କହିଲା- 'ନା' ।

ମୁଁ ପଚାରିଲି- "ଏଠି ରହି ଓଡ଼ିଆ କେମିତି ଶିଖିଲ ?"

ତା'ର ଉତ୍ତର- "ଏଠି ଆମେ ସ୍କୁଲରେ ଆସାମର ଭାଷା ପଢୁଚୁ, ହେଲେ ଘରେ ଓଡ଼ିଆରେ କଥାବାର୍ତ୍ତା କରୁ ।"

ସେଠାରେ ଚାହା ବଗିଚାରେ କାର୍ଯ୍ୟରତ ମେନେଜର ପ୍ରତିଦିନ ସକାଳେ ଆସି ମୋତେ ଦେଖା କରନ୍ତି । ସୁବିଧା ଅସୁବିଧା କଥା ବୁଝନ୍ତି । ପୂର୍ବରୁ ଲେଖିଛି, କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ହାର୍ଡିଞ୍ଜ୍ ହଷ୍ଟେଲରେ ରହୁଥିଲି । ମୁଷ୍ଟିମେୟ ବନ୍ଧୁଙ୍କ ମଧ୍ୟରେ ଆସାମ ରାଜ୍ୟର ତେଜପୁର ନିବାସୀ ସତ୍ୟେନ୍ ମୈତ୍ର ଥିଲେ ଅନ୍ୟତମ । ଦିନେ ମେନେଜରଙ୍କୁ ପଚାରିଲି- "ତେଜପୁର ଏଠୁ କେତେବାଟ ?"

ସେ କହିଲେ- "କାହିଁକି ପଚାରୁଛନ୍ତି ? ସେଠାରେ ଆପଣଙ୍କର କେହି ଜଣାଶୁଣା ଅଛନ୍ତି କି ?"

ମୁଁ ସେତ୍ୟନ୍ ମୈତ୍ର କଥା କହିଲି ।

ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ- "ଆପଣ କେମିତି ତାଙ୍କୁ ଜାଣିଲେ ?"

"ମୁଁ ଓ ସେ କଲିକତାରେ ଏକା ସାଙ୍ଗରେ ପଢୁଥିଲୁ"- କହିଲି ।

ସେ କହିଲେ- "ସେ ତ ଆଜ୍ଞା, ଆମର ଆଇନ୍ ପରାମର୍ଶଦାତା । ଆପଣ ଯଦି କହିବେ ମୁଁ ତାଙ୍କୁ ଏଠିକି ଡକେଇଦେବି ।"

ମୁଁ କହିଲି- "ତାଙ୍କୁ କାହିଁକି ଡକେଇବା ? ଆମେ ଯିବା ।"

ପରଦିନ ସକାଳେ ଯିବା କଥା ସ୍ଥିର ହେଲା । ପରଦିନ ସକାଳ ଆଠଟା ବେଳେ ମେନେଜର ଓ ମୁଁ ବାହାରିଲୁ । ମେନେଜରଙ୍କ କଥାନୁସାରେ ଗାଡ଼ିରେ ଲାଗିଥିବା ନିର୍ବାଚନ୍ ଚିହ୍ନକୁ ବାହାର କରିଦେଇ ରଖିଦେଇଗଲୁ । ଯିବା ବାଟରେ ଯେଉଁ ତିନିଟି ନିର୍ବାଚନ ମଣ୍ଡଳୀ ପଡ଼ିଲା, ସେଠାରେ ଥିବା କଂଗ୍ରେସ ନିର୍ବାଚନ ଅଫିସ୍ ଯାଇ କଥାବାର୍ତ୍ତା କରି ତେଜ୍‌ପୁରରେ ସତ୍ୟେନ୍ ମୈତ୍ରଙ୍କ ଘରେ ଯାଇ ପହଞ୍ଚିଲୁ । ସେ ଘରେ ନଥିଲେ । ତାଙ୍କ ସ୍ତ୍ରୀ କହିଲେ- ପାଖରେ ଥିବା ହାଇସ୍କୁଲର ପରିଚାଳନା କମିଟିର ମିଟିଂକୁ ଯାଇଛନ୍ତି । ସେ ପରିଚାଳନା କମିଟିର ସଭାପତି । ଆମେ ହାଇସ୍କୁଲକୁ ଗଲୁ । ମିଟିଂ ଚାଲିଥାଏ । ମେନେଜର ଭିତରକୁ ଯାଇ ତାଙ୍କୁ ମୋ ଆସିବା କଥା କହିଲେ । ସେ ସଂଗେ ସଂଗେ ଗାଡ଼ିପାଖକୁ ଆସି ମୋତେ ଦେଖି ତଟସ୍ଥ ହୋଇ ପଚାରିଲେ- "ଆରେ ତୁ କେମିତି ଏଠି ?"

ମୁଁ କହିଲି- "ଘରକୁ ଚାଲ୍, ସେଇଠି କଥା ହବା ।"

ସେ ସ୍କୁଲ୍ ଭିତରକୁ ଯାଇ କହିଦେଇ ଆସିଲେ । ପରିଚାଳନା କମିଟିର ସଭ୍ୟମାନେ ମଧ୍ୟ ଦଉଡ଼ି ଦଉଡ଼ି ଆସିଲେ । ସ୍କୁଲ୍ ଭିତରେ ଚହଳ ପଡ଼ିଗଲା- ଓଡ଼ିଶାର ଶିକ୍ଷାମନ୍ତ୍ରୀ ଆସିଛନ୍ତି । ଶିକ୍ଷକ ଓ ପିଲାମାନେ ମଧ୍ୟ ଆମ ପାଖରେ ଆସି ପହଞ୍ଚିଗଲେ । ମୁଁ ଗାଡ଼ିରୁ ଓହ୍ଲାଇ ପଡ଼ିଲି । ପିଲାମାନଙ୍କୁ ପଚାରିଲି (ବଙ୍ଗଳା ଭାଷାରେ)- ତୁମେ ଶିକ୍ଷାମନ୍ତ୍ରୀଙ୍କୁ ଦେଖିଚ ?"

ସମୂହ ଉତ୍ତର ଆସିଲା- "ନା" ।

ସେଠି ପାଞ୍ଚ ସାତ ମିନିଟ୍ ରହି ସତ୍ୟେନ୍‌ର ଘରକୁ ଆସିଲୁ । ସେ ତା' ସ୍ତ୍ରୀକୁ ଡାକି କହିଲା- "ଦେଖ, କିଏ ଆସିଛନ୍ତି ?"

ତା' ସ୍ତ୍ରୀ ତ ମୋତେ ଚିହ୍ନିନି । ସତ୍ୟେନ୍ କହିଲା- "ଓଡ଼ିଶାର ଶିକ୍ଷାମନ୍ତ୍ରୀ । ଆମେ କଲିକତାରେ ଏକା ସାଙ୍ଗରେ ପଢୁଥିଲୁ । ପଇଁତ୍ରିଶ ଛତିଶ ବର୍ଷ ପରେ ଆମର ପୁଣି ଦେଖା । ସେ ପୁଣି ଆମରି ଘରେ । ଯାଅ ଖାଇବା କିଛି କରିଦିଅ । ଯଦୁ ଆଜି ଆମରି ଘରେ ଖାଇକରି ଯିବ ।"

ସ୍ତ୍ରୀ ଚାଲିଗଲେ ଖାଇବା ବ୍ୟବସ୍ଥା କରିବାକୁ । ଆମେ ବସି କଥା ହେଲୁ ।

ସତ୍ୟେନ୍‌କୁ ପଚାରିଲି- "ତମ ଏଠିକାର ଅବସ୍ଥା କ'ଣ ? ତୁ କେଉଁ ଦଳର ପ୍ରାର୍ଥୀ ପାଇଁ କହୁଚୁ ?"

ସେ କହିଲା- "କଂଗ୍ରେସ ପ୍ରାର୍ଥୀ ପାଇଁ ।"

ଖାଇସାରି ଆମେ ଯିବାକୁ ବାହାରିଲୁ । ସ୍ୱାମୀ ସ୍ତ୍ରୀ ଦି'ଜଣ ଆମକୁ ବିଦାୟ ଦେବା ପାଇଁ ଠିଆ ହେଇଥିଲେ ।

ମୁଁ କହିଲି- "ସତ୍ୟେନ୍ ! ତୁ ଆଉ ତୋ ସ୍ତ୍ରୀ ଥରେ ଭୁବନେଶ୍ୱର ଆସ । ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିଆସିବ । ଓଡ଼ିଶା ବାହାରେ ମଧ୍ୟ ଲୋକମାନଙ୍କର ଜଗନ୍ନାଥ ଓ ତାଙ୍କ ମନ୍ଦିର ହେଉଛି ମୁଖ୍ୟ ଆକର୍ଷଣ ।

ସେ କହିଲା- "ହଁ; ଆମେ ଯିବୁ ।"

ଆମେ ଚାଲିଆସିଲୁ ।

ଆସାମରେ ପନ୍ଦର ଦିନ ରହି ନିର୍ବାଚନର ଦୁଇଦିନ ପୂର୍ବରୁ ଆମେ ଚାଲିଆସିଲୁ ।

ନିର୍ବାଚନ ଫଳ ପ୍ରକାଶ ପାଇବା ପରେ ଦୁଇଜଣ ବିଜୟୀ ପ୍ରାର୍ଥୀ ମୋତେ ଟେଲିଗ୍ରାମ୍ କରି ଜଣାଇଥିଲେ ସେମାନେ ଜିତିଛନ୍ତି । ଯେଉଁ ତିନିଟି ନିର୍ବାଚନ ମଣ୍ଡଳୀରେ ମୁଁ ନିର୍ବାଚନ ପ୍ରଚାର କରିଥିଲି ସେଥିରୁ ଦୁଇଟିରେ କଂଗ୍ରେସ ଜିତିଛି, ଗୋଟାଏରେ ହାରିଛି । ମୁଁ ଫେରିବାର ପ୍ରାୟ ମାସେ ପରେ ସତ୍ୟେନ୍ ମୈତ୍ର ଓ ତା' ସ୍ତ୍ରୀ ଭୁବନେଶ୍ୱର ଆସିଥିଲେ । ରେଳଷ୍ଟେସନରେ ପହଞ୍ଚି ସତ୍ୟେନ୍ ମୋତେ ଟେଲିଫୋନ୍ କଲା । ମୁଁ ଷ୍ଟେସନ୍ ଯାଇ ତାଙ୍କୁ ଆଣି ସରକାରୀ ଅତିଥି ଭବନରେ ରଖିଲି । ପରଦିନ ପୁରୀ ଜଗନ୍ନାଥ ଦର୍ଶନ । ସେମାନେ ତିନିଦିନ ରହି ଫେରିଗଲେ ।

ନିର୍ବାଚନରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ରଖିପାରିଲା ନାହିଁ । ଆସାମ ଗଣପରିଷଦର ସଂଖ୍ୟାଗରିଷ୍ଠତା ଲାଭ କରି ସରକାର ଗଠନ କଲେ । ପ୍ରଫୁଲ୍ଲ ମହାନ୍ତ ହେଲେ ଆସାମର ମୁଖ୍ୟମନ୍ତ୍ରୀ । ପରେ ଆସାମ ଶିକ୍ଷାମନ୍ତ୍ରୀଙ୍କ ସଙ୍ଗେ ମୋର ଦିଲ୍ଲୀରେ ପରିଚୟ ହୋଇଥିଲା । ସେତେବେଳେ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଥିଲେ ପି.ଭି. ନରସିଂହରାଓ । ସେ ମୋତେ ଶିକ୍ଷା ବିଭାଗର ଏକ କମିଟିରେ ଅଧ୍ୟକ୍ଷ ରଖିଥିଲେ । ଆସାମର ଶିକ୍ଷାମନ୍ତ୍ରୀ ସେହି କମିଟିରେ ଜଣେ ସଭ୍ୟ ଥିଲେ ।

ଦିନେ କମିଟି ବୈଠକ ପରେ ମୁଁ ତାଙ୍କୁ କହିଲି- "ମିଷ୍ଟର ଗୋସ୍ୱାମୀ, ଆପଣଙ୍କ ରାଜ୍ୟର ଚାହା ବଗିଚାମାନଙ୍କରେ ବହୁତ ଓଡ଼ିଆ ଲୋକ କାମ କରନ୍ତି ।

ଓଡ଼ିଶା ଛାଡ଼ି ସେମାନେ ଆପଣଙ୍କ ରାଜ୍ୟରେ ବସବାସ କଲେଣି । ସେମାନଙ୍କ ପିଲାମାନେ ପଢ଼ିବା ପାଇଁ ଓଡ଼ିଆ ସ୍କୁଲର ଆବଶ୍ୟକତା ଅଛି । ଆପଣମାନେ ତାହା କରୁନାହାନ୍ତି କାହିଁକି ?"

ମୋ' କଥା ଶୁଣି ସେ କହିଲେ- "ଆପଣ ଠିକ୍ କଥା କହୁଛନ୍ତି, ମୁଁ ଏ ବିଷୟରେ ଚିନ୍ତା କରିବି ।"

କିଛିଦିନ ପରେ ତାଙ୍କ ସହିତ ପୁଣି ଦିଲ୍ଲୀରେ ଦେଖାହେଲା । ସେ ମୋତେ କହିଲେ- "ମିଷ୍ଟର ମହାପାତ୍ର ! ଆମେ ସିଦ୍ଧାନ୍ତ କଲୁ ଚାହା ବଗିଚାରେ ଓଡ଼ିଆ ଶ୍ରମିକଙ୍କ ପିଲାମାନଙ୍କ ପାଇଁ ଓଡ଼ିଆ ମାଧ୍ୟମ ସ୍କୁଲ୍ କିଛି କରିବୁ । ଆପଣଙ୍କୁ ଉଦ୍‌ଘାଟନ କରିବା ପାଇଁ ଡାକିବୁ ।"

ପରବର୍ଷ ତାଙ୍କ ନିମନ୍ତ୍ରଣ କ୍ରମେ ମୁଁ ପୁଣି ଆସାମ ଯାଇଥିଲି । ତିନିଟି ଓଡ଼ିଆ ପ୍ରାଥମିକ ସ୍କୁଲ ଉଦ୍‌ଘାଟନ କରିଥିଲି । ପରେ ଆଉ କେତୋଟି ସ୍କୁଲ୍ ହୋଇଥିଲା ବୋଲି ସେ ମୋତେ ଜଣାଇଥିଲେ ।



# ଖଣ୍ଡପଡ଼ା ରାଜବାଟୀ

୨୦୦୩ ମସିହା ଡିସେମ୍ବର ମାସରେ ଖବରକାଗଜରୁ ଜାଣିବାକୁ ପାଇଲି ଯେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ତାଙ୍କ ଜନ୍ମଦିନ ପାଇଁ ରାଜସ୍ଥାନର ଜୟପୁର ଯାଇ ଚାରିଦିନ ଜୟପୁର ରାଜପ୍ରାସାଦରେ ଅବସ୍ଥାନ କରିବେ । ରାଜପ୍ରାସାଦର ରାଜାମାନେ ଯେଉଁ କୋଠରିରେ ରହୁଥିଲେ, ତାହାହିଁ ସବୁଠାରୁ ଆକର୍ଷଣୀୟ । ସେହି ଖବର ପଢ଼ି ମୋ ଜୀବନର ଅତୀତ ଦିନର ଏକ ସ୍ମୃତି ମନେପଡ଼ିଲା ।

ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ଥିବାବେଳେ, ଥରେ ମୁଁ ଖଣ୍ଡପଡ଼ା ହାଇସ୍କୁଲର ଏକ ଉତ୍ସବରେ ଯୋଗଦେବା ପାଇଁ ଯାଇଥିଲି । ଖଣ୍ଡପଡ଼ାରେ ପହଞ୍ଚି ଡାକବଙ୍ଗଳାରେ କିଛିସମୟ ରହି ସଭାସ୍ଥଳକୁ ଗଲି । ସୁଦୃଶ୍ୟ ମଞ୍ଚ । ବହୁ ଲୋକଙ୍କର ସମାବେଶ । ଖଣ୍ଡପଡ଼ା ବିଧାୟକ ସତ୍ୟସୁନ୍ଦର ମିଶ୍ର ମଧ୍ୟ ଉପସ୍ଥିତ ଥିଲେ । ସେ ହିଁ ମୋ କାର୍ଯ୍ୟକ୍ରମ ସ୍ଥିର କରିଥିଲେ । ସଭା ଆରମ୍ଭ ହେଲା । ଜଣେ ପରେ ଜଣେ ଭାଷଣ ଦେଉଥାନ୍ତି । ମୁଁ ଦେଖିଲି ସେହି ମଞ୍ଚରେ ଟେବୁଲ୍ ସାମ୍ନାରେ ବସିଥିବା ଜଣେ ଯୁବକ ପିଲାମାନେ ପାଟିତୁଣ୍ଡ କଲେ ସେମାନଙ୍କୁ ଆକଟ କରୁଥାନ୍ତି ।

ମୁଁ ବିଧାୟକଙ୍କୁ ପଚାରିଲି- "ଏ ଯୁବକ କିଏ ?"

ସତ୍ୟସୁନ୍ଦରବାବୁ ମୋ କାନ ପାଖରେ ଚୁପ୍‌କିନି କହିଲେ- "ଯେ ଖଣ୍ଡପଡ଼ା ରାଜାଙ୍କ ପୁଅ । ୟାଙ୍କ ବାପା ଖଣ୍ଡପଡ଼ାର ବିଧାୟକ ଥିଲେ, ମନ୍ତ୍ରୀ ବି ଥିଲେ ।"

ବିଧାୟକ ଭାଷଣ ଦେଲେ । ତା'ପରେ ମୋ ପାଳି । ମୁଁ ଭାଷଣ ଦେବାକୁ ଯେତେବେଳେ ଠିଆ ହେଲି, ଯୁବକ ଜଣକ ଖୁବ୍ ଜୋର୍‌ରେ ତାଳି ମାରିଲେ ଓ ସମସ୍ତଙ୍କୁ ଇସାରା ଦେଲେ ତାଳି ମାରିବା ପାଇଁ । ପିଲାମାନେ ତାଳି ମାରୁଥାନ୍ତି । ସେ ତାଳି ବନ୍ଦ ହେଉ ନଥାଏ । ମୁଁ ତାଳି ବନ୍ଦ କରି ମୋ ଭାଷଣ ଶୁଣିବାକୁ

ଯେତେବେଳେ କହିଲି, ସେତେବେଳେ ତାଳି ଆହୁରି ଜୋର୍ ହେଲା । ହଠାତ୍ ଯୁବକ ଜଣକ ଉଠିପଡ଼ି କହିଲେ- "ତାଳି ବନ୍ଦ କର, ମନ୍ତ୍ରୀଙ୍କ ଭାଷଣ ଶୁଣ ।"

ତା'ପରେ ସଭାସ୍ଥଳରେ ନୀରବତା । ମୁଁ ଭାଷଣ ଦେଲି । କହିଲି- "ଏହି ଯୁବକଙ୍କ ପିତା ଖଣ୍ଡପଡ଼ାର ରାଜାସାହେବ ବିଧାନସଭାରେ ଆପଣଙ୍କ ପ୍ରତିନିଧି ଥିଲେ ଓ ଜଣେ ମନ୍ତ୍ରୀ ମଧ୍ୟ ଥିଲେ । ମୁଁ ଆଶା କରୁଛି, ତାଙ୍କର ଏହି ସୁଯୋଗ୍ୟ ପୁତ୍ର ଦିନେ ତାଙ୍କ ବାପାଙ୍କ ଭଳି ହେବ ଓ ବିଧାନସଭାରେ ଆପଣଙ୍କ ପ୍ରତିନିଧି ହେବ ।

ସଭା ଶେଷ ହେବା ପରେ ମୁଁ ସେ ଯୁବକଙ୍କୁ ତାଙ୍କ ନାଆଁ ପଚାରିଲି । ଯୁବକ ଖୁବ୍ ନମ୍ର ଭାବରେ କହିଲେ- "ମୁଁ ବି.ଜେ.ବି. କଲେଜରେ ପଢୁଛି ।" ସେତେବେଳେ ସେମାନେ ଖଣ୍ଡପଡ଼ାରେ ନରହି ଭୁବନେଶ୍ୱରରେ ରହୁଥିଲେ । ସଭା ପରେ ଡାକବଙ୍ଗଳାରେ ରାତ୍ରିଭୋଜନ ଶେଷ କରି ଭୁବନେଶ୍ୱର ଫେରିଆସିଲି ।

ପରେ ପୁନର୍ବାର ମୁଁ ଯେତେବେଳେ ୧୯୮୫ ମସିହାରେ ମନ୍ତ୍ରୀ ହେଲି, ସେତେବେଳେ ସେହି ଯୁବକ ବିଭୂତି ଭୂଷଣ ମର୍ଦ୍ଦରାଜ ଖଣ୍ଡପଡ଼ାରୁ ବିଧାୟକ ଭାବେ ଜୟଯୁକ୍ତ ହୋଇ ଆସିଥିଲେ । ମୁଁ ପ୍ରଥମେ ଯେତେବେଳେ ତାଙ୍କୁ ବିଧାୟକ ଭାବେ ଦେଖିଲି, ସେତେବେଳେ ମୋ' ମନଟା ଆନନ୍ଦରେ ଉଲ୍ଲସି ଉଠିଲା । ସେ ବି ମୋତେ ଦେଖି ନମ୍ରତାର ସହିତ ମୋ' ପାଖକୁ ଆସି ମୋତେ ପ୍ରଣାମ କଲେ । ଅଳ୍ପଦିନ ପରେ ସେ ମୋ' ସରକାରୀ ବାସଭବନକୁ ଆସି ମୋତେ କହିଲେ- "ଆପଣଙ୍କ କଥା ସତ ହୋଇଛି । ଆପଣ ଖଣ୍ଡପଡ଼ା ଯିବେ । ଆପଣଙ୍କ ପାଇଁ ଏକ ସଭାର ଆୟୋଜନ ମୁଁ କରୁଛି । କେଉଁଦିନ ଆପଣ ଯାଇପାରିବେ, କହନ୍ତୁ ।"

ଦିନ ସ୍ଥିର କରି ସେ ଚାଲିଗଲେ । ତିନିଦିନ ପରେ ମୋତେ ଆସି କହିଲେ- "ସବୁ ବ୍ୟବସ୍ଥା କରିଦେଇଆସିଛି । ମୁଁ ଆପଣଙ୍କ ସାଙ୍ଗରେ ଯିବି । ଦିନ ଦୁଇଟା ବେଳେ ଏଠୁ ବାହାରିବା ।"

ତାହାହିଁ ହେଲା । ଦିନ ଦୁଇଟା ବେଳେ ଆମେ ବାହାରିଲୁ । ସେଦିନ ଡାକବଙ୍ଗଳାରେ କିଛି ବ୍ୟବସ୍ଥା ନଥିଲା । ସବୁକିଛିର ବ୍ୟବସ୍ଥା ରାଜବାଟୀରେ । ପ୍ରାୟ ଦଶବର୍ଷ ତଳେ ଯେଉଁ ସ୍ଥାନରେ ସଭା ହୋଇଥିଲା, ଏଥର ବି ସେହି ସ୍ଥାନରେ । ସେହିଭଳି ମଞ୍ଚ । ବହୁତ ଲୋକଙ୍କର ଉପସ୍ଥିତି । ସେଦିନ ମଞ୍ଚରେ

ଖଟ ଉପରେ ବସିଥିବା ଯୁବକ ଆଜି ମୁଁ ବସିଥିବା ପାଖ ଚେୟାରରେ ଉପବେଶନ କରିଛନ୍ତି । ତାଙ୍କ ଭାଷଣରେ ସେ, ପ୍ରାୟ ଦଶବର୍ଷ ତଳେ ମୁଁ ତାଙ୍କ ସଂପର୍କରେ ସେହି ସ୍ଥାନରେ ଯାହା କହିଥିଲି, ସ୍ମରଣ କରାଇଦେଲେ । ପ୍ରାୟ ତିନିଘଣ୍ଟାରୁ ଅଧିକ ସମୟ ସଭା ଚାଲିଲା । ସଭା ପରେ ଗଲୁ ରାଜବାଟୀକୁ । ଖାଇବା ବ୍ୟବସ୍ଥା ସେଇଠି ହୋଇଥିଲା । ଖିଆ ସରିବା ପରେ ରାତି ଏଗାର । ମୋ' ବ୍ୟକ୍ତିଗତ ସହାୟକ ଓ ସୁରକ୍ଷା ଅଧିକାରୀ ବ୍ୟସ୍ତ ହେଲେଣି ଫେରିବାକୁ । ମୁଁ ବି ତରତର । ବାହାରିବା ବେଳକୁ ବିଭୂତିବାବୁ କହିଲେ- "ସାର୍ ! ଆପଣଙ୍କୁ ମୋର ଗୋଟାଏ ଅନୁରୋଧ ଅଛି । ଆପଣ ମୋର ବାପା ସମାନ । ମୁଁ ଚାହୁଁଛି ମୋ ବାପା ଯେଉଁ ଘରେ, ଯେଉଁ ଖଟ ଉପରେ ଶୋଉଥିଲେ, ତାଙ୍କ ଅନ୍ତେ ଯେଉଁଠି କେହି ଶୋଇନାହାନ୍ତି, ଯେଉଁ ଘର ବନ୍ଦ ହୋଇ ପଡ଼ିଛି, ସେଇ ଘରେ ଏବଂ ସେଇ ଖଟ ଉପରେ, ଆପଣ ଆଜି ରାତିରେ ଶୋଇବେ ।"

ତାଙ୍କର ଏକଥା ଶୁଣି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହେଲୁ ।

ମୁଁ କହିଲି- "ଏଇଟା ସମ୍ଭବ ନୁହେଁ । ଏତେ ରାତି ହେଲାଣି, ଆମକୁ ଯିବାକୁ ପଡ଼ିବ ।"

ବିଭୂତି କହିଲେ- "ନା ନା, ଆପଣ ସେ ଖଟ ଉପରେ ଶୋଇବେ ।" ମୁଁ ତଥାପି ଅମଙ୍ଗ ।

ସେ ପୁଣି କହିଲେ- "ଅନ୍ତତଃ ଘଣ୍ଟାଏ ଶୁଅନ୍ତୁ । ତା'ପରେ ଯିବେ । ମୁଁ ବି ତ ସାଥିରେ ଯିବି ।"

ତାଙ୍କର ଏତାଦୃଶ ଆଗ୍ରହ ଦେଖି, ଅଗତ୍ୟା ଆଉ କିଛି କରିବାର ନଥିଲା । ମୁଁ ବାଧ୍ୟ ହୋଇ ତାଙ୍କ ବାପାଙ୍କ ଶୋଉଥିବା ଖଟ ଉପରେ ଗଡ଼ି ପଡ଼ିଲି । କବାଟ ଆଉଜେଇ ଦେଇ ସେ ଚାଲିଗଲେ । ବିଛଣା ଧରିବା ମାତ୍ରେ ମୋ ଆଖିକି ନିଦ ଆସିଗଲା । ନିଦ ଭାଙ୍ଗିଲା ରାତି ତିନିଟାରେ । କୋଠରି ବାହାରକୁ ଆସି ଚାରିଆଡ଼କୁ ଚାହିଁଲି । କେହି କୁଆଡ଼େ ନାହାନ୍ତି । ସବୁଆଡ଼େ ଶୂନ୍‌ଶାନ୍ । ପୁଣି ଯାଇ ବିଛଣା ଧରିଲି । ନିଦ ଭାଂଗିବା ବେଳକୁ ଭୋର୍ ପାଞ୍ଚଟା ବାଜିଯାଇଥିଲା । ଚାହା କପେ ଲେଖାଏ ଖାଇ ଆମେ ଭୁବନେଶ୍ୱର ବାହାରିପଡ଼ିଲୁ । ବିଭୂତି ଆମ ସହିତ ଆସିଲେ ନାହିଁ, ପରେ ଆସିବେ ।

ସେ ରାତିର ସ୍ମୃତି ମୋ ପାଇଁ ଅଭୁଲା ।

# କଲିକତାରେ ଚାରିଦିନ

ଏହି ସମୟରେ ଅନ୍ୟ ରାଜ୍ୟର ଶିକ୍ଷାମନ୍ତ୍ରୀଙ୍କ ସହିତ ମୋର ସଂପର୍କ ଭଲ ଥିଲା । ମୁଁ ଯଦିଓ ଅନେକ ସମୟରେ ପଶ୍ଚିମବଙ୍ଗର ସ୍କୁଲ ଶିକ୍ଷାମନ୍ତ୍ରୀଙ୍କ ଭାଷଣକୁ ବିରୋଧ କରୁଥିଲି କିନ୍ତୁ ବ୍ୟକ୍ତିଗତ ଭାବରେ ତାଙ୍କ ସହିତ ମୋର କିଛି ବିରୋଧତା ନଥିଲା ।

ମୁଁ ଯେତେବେଳେ କଲିକତାରେ ଅଧ୍ୟୟନ କରୁଥିଲି, ସେତେବେଳେ କଲିକତା ଓ ତା'ର ଆଖପାଖ ଅଞ୍ଚଳରେ ପ୍ରାୟ ଚାରିଲକ୍ଷ ଓଡ଼ିଆ ରହୁଥିଲେ । ମୋର ଶିକ୍ଷାମନ୍ତ୍ରୀତ୍ୱ କାଳରେ ପଶ୍ଚିମବଙ୍ଗର ସ୍କୁଲ୍ ଶିକ୍ଷାମନ୍ତ୍ରୀ କାନ୍ତି ବିଶ୍ୱାସ ଥରେ ମୋତେ କଲିକତା ଯିବାକୁ ନିମନ୍ତ୍ରଣ କଲେ । କଲିକତାରେ ଥିବା ଓଡ଼ିଆ ସ୍କୁଲ୍ ଓ ଅନ୍ୟ ସ୍କୁଲ୍‌ମାନଙ୍କରେ କିଛି କାର୍ଯ୍ୟକ୍ରମ ସେ କରିବାକୁ ଚାହୁଁଥିଲେ । ମୁଁ ରାଜି ହେଲି ଯିବା ପାଇଁ । ସେ କାର୍ଯ୍ୟକ୍ରମ ସ୍ଥିର କଲେ । ମୁଁ ଗଲି । ପ୍ରଥମ କାର୍ଯ୍ୟକ୍ରମ ହେଲା ରାମକୃଷ୍ଣ ମିସନ୍ ହାଇସ୍କୁଲରେ । ସେଠି ମୋ ଭାଷଣ ଥିଲା ଇଂରାଜୀରେ । ପରବର୍ତ୍ତୀ କାର୍ଯ୍ୟକ୍ରମ ଖିଦିରପୁରର ଓଡ଼ିଆ ହାଇସ୍କୁଲରେ । ଆହୁରି କିଛି ସ୍କୁଲ୍ କାର୍ଯ୍ୟକ୍ରମରେ ସେ ଓ ମୁଁ ଯୋଗଦେଲୁ । ଶେଷ କାର୍ଯ୍ୟକ୍ରମ ଥିଲା ବାଲିଗଞ୍ଜର ଲେକ୍ ଗାର୍ଲସ୍ ହାଇସ୍କୁଲରେ । ଏ ସ୍କୁଲଟି ଖୁବ୍ ଉନ୍ନତ ଧରଣର । ସେଇଠି କାନ୍ତିବାବୁ ମୋତେ ଅନୁରୋଧ କଲେ ବଂଗଳା ଭାଷାରେ ଭାଷଣ ଦେବାକୁ । ତାଙ୍କର କହିବାର ଥିଲା ବିଭିନ୍ନ ସ୍କୁଲରେ ମୁଁ ତ ଇଂରାଜୀରେ ଓ ଓଡ଼ିଆରେ ଭାଷଣ ଦେଉଛି କିନ୍ତୁ ତାଙ୍କ ସହିତ ତ ବଂଗଳା ଭାଷାରେ କଥାବାର୍ତ୍ତା କରୁଛି । ତେଣୁ ସେ ସଭାରେ ମୁଁ ବଂଗଳା ଭାଷାରେ ଭାଷଣ ଦିଏ । ତାଙ୍କ ଅନୁରୋଧ ରକ୍ଷା କରି ମୁଁ ବଂଗଳାରେ ଭାଷଣ ଦେଲି । ମୋ' ଭାଷଣରେ ବଂଗଳା ଭାଷାର

କିଛି ପ୍ରତିଷ୍ଠିତ ସାହିତ୍ୟିକଙ୍କ ଲେଖାର କିଛି ଉଦ୍ଧୃତି ଥିଲା। ବିଶେଷ ଭାବରେ ଔପନ୍ୟାସିକ ଶଙ୍କରଙ୍କର 'ଚୌରଙ୍ଗୀ' ଉପନ୍ୟାସର କିଛି ଉଦ୍ଧୃତି ଶ୍ରୋତାମାନଙ୍କୁ ବେଶ୍ ଭଲ ଲାଗୁଥିଲା । ସେମାନଙ୍କ ତାଳିମାଡ଼ରୁ ମୁଁ ତାହା ଜାଣିପାରୁଥିଲି । ସଭା ପରେ କାନ୍ତିବାବୁ ମୋତେ କହିଲେ- "ଦାଦା, ତୁମେ ଯେତେ ବଂଗଳା ବହି ପଢ଼ିଛ ମୁଁ ତ ପଢ଼ିନି ।"

ଏହି ସ୍କୁଲ୍ ସଭାରେ ମୁଁ ପଇଁଚାଳିଶ ମିନିଟ୍ ବଂଗଳାରେ ଭାଷଣ ଦେଇଥିଲି ।



# ବମ୍ବେରେ ସସ୍ତ୍ରୀକ ମୁଁ

ମହାରାଷ୍ଟ୍ର ସରକାରଙ୍କର ଶିକ୍ଷା ସଂପର୍କୀୟ ଏକ କାର୍ଯ୍ୟକ୍ରମରେ ଭାଗନେବା ପାଇଁ ସେଠାକାର ଶିକ୍ଷାମନ୍ତ୍ରୀ ପ୍ରଫେସର ରାମମେଘେଙ୍କ ନିମନ୍ତ୍ରଣରେ ମୁଁ ବମ୍ବେ (ବର୍ତ୍ତମାନର ମୁମ୍ବାଇ) ଯାଇଥିଲି । ସାଙ୍ଗରେ ମୋ ସ୍ତ୍ରୀ ବି ଯାଇଥିଲେ । ଆମେ ଦିଲ୍ଲୀରୁ ଉଡ଼ାଜାହାଜରେ ବମ୍ବେ ଯାଇ ସାନ୍ତାକ୍ରୁଜ ବିମାନ ବନ୍ଦରରେ ଓହ୍ଲାଇଥିଲୁ । ଆମକୁ ପାଛୋଟି ନେବା ପାଇଁ ଖୋଦ୍ ଶିକ୍ଷାମନ୍ତ୍ରୀ ବିମାନ ବନ୍ଦରରେ ଉପସ୍ଥିତ ଥିଲେ । ସେ ଆମକୁ ଆମ ରହିବା ବଂଗଳାକୁ ନେଇଗଲେ । ପରଦିନ ଥିଲା ନିର୍ଦ୍ଧାରିତ କାର୍ଯ୍ୟକ୍ରମ । ସନ୍ଧ୍ୟାରେ ତାଙ୍କ ଘରକୁ ଯିବା ଓ ସେଠାରେ ରାତ୍ରିଭୋଜନ କରିବା ପାଇଁ କହି ସେ ଚାଲିଗଲେ ।

ବମ୍ବେକୁ ଛୁଇଁଛି ଆରବସାଗର । ପୁରୀ ସମୁଦ୍ରର ତରଙ୍ଗର ଶୋଭା ସେଠାରେ ନାହିଁ । ବେଳାଭୂମିର ରାସ୍ତାକୁ ମେରାଇନ୍ ଡ୍ରାଇଭ୍ କୁହାଯାଏ । ମାଲ୍‌ବାର ହିଲ୍‌ସ ଅଞ୍ଚଳରେ ମନ୍ତ୍ରୀମାନଙ୍କର ସରକାରୀ ବାସଭବନ । ସନ୍ଧ୍ୟାରେ ମୁଁ ଓ ମୋ ସ୍ତ୍ରୀ ମାଲ୍‌ବାର ହିଲ୍‌ସ ବାହାରିଲୁ । ସେଠାରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନକୁ ଯିବୁ । ମେରାଇନ୍ ଡ୍ରାଇଭ୍‌ରେ କିଛିବାଟ ଯାଇଛୁ, ଜଣେ ଯୁବତୀ ହାତଟେକି ଆମ ଗାଡ଼ିକୁ ଅଟକାଇବାକୁ ଚାହିଁଲେ । ମାତ୍ର ଗାଡ଼ିକୁ ନ ଅଟକାଇ ଡ୍ରାଇଭର୍ ଆହୁରି ଦ୍ରୁତ ଗତିରେ ଗାଡ଼ିକୁ ଚଳାଇଲେ ।

ମୁଁ ଡ୍ରାଇଭରକୁ କହିଲି- "ଜଣେ ସ୍ତ୍ରୀଲୋକ ନିଶ୍ଚୟ କିଛି ଅସୁବିଧାରେ ପଡ଼ି ଗାଡ଼ିକୁ ଅଟକାଉଥିଲା । ତୁମେ ଗାଡ଼ି ନ ଅଟକାଇ ଚାଲିଆସିଲ କାହିଁକି ?"

ଡ୍ରାଇଭର କହିଲା- "ଆଜ୍ଞା; ଏଠି ଏମିତି ଗାଡ଼ି ଅଟକେଇବାଟା ବିପଦ ।"

ପଚାରିଲି- "କି ବିପଦ ?"

ସେ କହିଲା- "ଦେଖିବେ, ଚାଲନ୍ତୁ ।"

ଗାଡ଼ି ଚାଲିଥାଏ । ଅଳ୍ପଦୂର ଗଲାପରେ ଦେଖାଗଲା ଚାରିଜଣ ଯୁବକ ରାସ୍ତା କଡ଼ରେ ଠିଆ ହୋଇଛନ୍ତି ।

ଡ୍ରାଇଭର କହିଲା- "ଆଜ୍ଞା; ସେ ସ୍ତ୍ରୀଲୋକକୁ ଯଦି ଗାଡ଼ିରେ ମୁଁ ଆଣିଥାନ୍ତି, ସେ ଠିକ୍ ଏଇଠି ପହଞ୍ଚିବା ବେଳକୁ ଚିତ୍କାର କରିଥାନ୍ତା; ଆଉ ଟୋକାମାନେ ଗାଡ଼ିକୁ ଅଟକେଇ ଆମେ ତାକୁ ଜୋର୍ ଜବରଦସ୍ତ ଅପହରଣ କରିନେଉଛୁ ବୋଲି କହିଥାନ୍ତେ ଓ ପାଟିତୁଣ୍ଡ କରି ଆମଠୁ ଟଙ୍କା ଆଦାୟ କରିଥାନ୍ତେ ।"

ମାଲ୍‌ବାର ହିଲ୍‌ସରେ ପହଞ୍ଚି ମୁଁ ରାମମେଘେଙ୍କୁ ଏକଥା କହିଲି । ଡ୍ରାଇଭର୍ ଯାହା କହିଥିଲା, ସେ ବି ସେୟା କହିଲେ ।

ରାମମେଘେଙ୍କ ସ୍ତ୍ରୀ ମୋ ସ୍ତ୍ରୀକୁ ଧର୍ମଭଉଣୀ ବନେଇ ନୂଆ ଶାଢ଼ୀ ପିନ୍ଧେଇଲେ । ମୁଁ ସେମାନଙ୍କୁ ନିମନ୍ତ୍ରଣ କଲି ଭୁବନେଶ୍ୱର ଆସିବାକୁ । ଶ୍ରୀମନ୍ଦିରରେ ଜଗନ୍ନାଥ ଦର୍ଶନ କରିବେ । ପୃଥିବୀ ପ୍ରସିଦ୍ଧ ଅପରୂପ କାରୁକାର୍ଯ୍ୟ ବିମଣ୍ଡିତ କୋଣାର୍କ ମନ୍ଦିର ଦେଖିବେ । ସେ ଆସିବେ ବୋଲି ସମ୍ମତି ଦେଲେ ।

ପ୍ରାୟ ମାସକ ପରେ ସେ ସସ୍ତ୍ରୀକ ଭୁବନେଶ୍ୱର ଆସିଲେ । ସରକାରୀ ଅତିଥି ଭବନରେ ରହିଲେ । ସରକାରଙ୍କ ତରଫରୁ ତାଙ୍କୁ ଗୋଟାଏ ଗାଡ଼ି ଯୋଗାଇ ଦିଆଗଲା । ପରଦିନ ତାଙ୍କୁ ନେଇ ସସ୍ତ୍ରୀକ ମୁଁ କୋଣାର୍କ ପୁରୀ ଗଲୁ । ଜଗନ୍ନାଥ ଦର୍ଶନ କରି ଫେରିଲୁ । ତାଙ୍କ ସ୍ତ୍ରୀଙ୍କୁ ମୋ ସ୍ତ୍ରୀ ସମ୍ବଲପୁରୀ ଶାଢ଼ୀ ପିନ୍ଧାଇଲେ ।



# ମୁଖ୍ୟମନ୍ତ୍ରୀ ହରଡ଼ଘଣାରେ

୧୯୮୬ ମସିହା ମଧ୍ୟଭାଗରେ ମୁଖ୍ୟମନ୍ତ୍ରୀଙ୍କୁ ମସ୍ତବଡ଼ ଏକ ଧକ୍କାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପ୍ରସିଦ୍ଧ ଇଂରାଜୀ ସାପ୍ତାହିକ ପତ୍ରିକା "The Illustrated Weekly of India" ରେ ମୁଖ୍ୟମନ୍ତ୍ରୀଙ୍କ ସଂପର୍କରେ ଏକ ସମ୍ବାଦ ପ୍ରକାଶ ପାଇଥିଲା । ଏହି ସମ୍ବାଦ ସହିତ ଜଣେ ନାରୀଙ୍କର ଅର୍ଦ୍ଧନଗ୍ନ ଫଟୋ ମଧ୍ୟ ପ୍ରକାଶ ପାଇଥିଲା । ବିଧାନସଭା ଅଧିବେଶନ ଆଗକୁ ଥାଏ । ବିଜୁ ପଟ୍ଟନାୟକ ଥାଆନ୍ତି ବିରୋଧୀ ଦଳର ନେତା । ସେ ଏ ସମ୍ବାଦ ପାଇଁ ବାଚସ୍ପତି ପ୍ରସନ୍ନ କୁମାର ଦାସଙ୍କୁ ପତ୍ର ଲେଖି ଦାବି କଲେ ଯେ, ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିବାଯାକେ ବିଧାନସଭା କାର୍ଯ୍ୟକ୍ରମ ବନ୍ଦ ହେଉ । ତାଙ୍କ ଚିଠିରେ ଲେଖାଥିଲା- "ଆଜି ଆମେ ଏପରି ଏକ ଲଜ୍ଜାକର ପରିସ୍ଥିତିର ସମ୍ମୁଖୀନ ହୋଇଛୁ, ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନୈତିକ ଅଧୋଗତି ଯୋଗୁଁ ରାଜ୍ୟର ଅଗଣିତ ମହିଳା, ପୁରୁଷ, ଯୁବକ ଓ ଯୁବତୀଙ୍କ ମନରେ ଗଭୀର ସନ୍ଦେହ ସୃଷ୍ଟି ହୋଇଛି । ସେମାନଙ୍କ ମୁଣ୍ଡ ଲଜ୍ଜାରେ ତଳକୁ ନଇଁଯାଇଛି । ଏହି ଅଧ୍ୟାୟର ପୂର୍ଣ୍ଣଚ୍ଛେଦ ନ ହେବାଯାଏ ବିଧାନସଭା ଗୃହର ବିବରଣୀ ବନ୍ଦ ରଖିବାକୁ ଦାବି କରୁଛି ।"

ଏହି ଘଟଣା ଏଭଳି ଭାବେ ପ୍ରଚାରିତ ହୋଇଥିଲା ଯେ, ଜାନକୀବାବୁ ପୂରାପୂରି ମ୍ରିୟମାଣ ହୋଇପଡ଼ିଥିଲେ । ବିଧାନସଭାକୁ ସାମ୍ନା କରିବା ତାଙ୍କ ପକ୍ଷେ କଷ୍ଟକର ବ୍ୟାପାର ହୋଇପଡ଼ିଥିଲା । ବିଧାନସଭା କକ୍ଷରେ ସେ ରହୁଥିଲେ ମାତ୍ର ବିଧାନସଭା ଭିତରକୁ ଯାଉ ନଥିଲେ । ବିଧାନସଭାରେ ତାଙ୍କ କାମ ସବୁ ମୁଁ କରୁଥିଲି । ସେଥିପାଇଁ ବିଧାନସଭାରେ ଦିନେ ବିରୋଧୀଦଳର ରାମକୃଷ୍ଣ ପଟ୍ଟନାୟକ ତାଙ୍କ ଆସନରେ ବସି ଖୁବ୍ ବଡ଼ ପାଟିରେ କହିଥିଲେ "ହଇହୋ ଶିକ୍ଷାମନ୍ତ୍ରୀ; ତୁମେ କାହିଁକି ମୁଖ୍ୟମନ୍ତ୍ରୀଙ୍କ କାମ କରୁଛ ? ତାଙ୍କୁ କୁହ ସେ ଆସନ୍ତୁ । ଆମ ପ୍ରଶ୍ନର ଜବାବ ସେ ଦିଅନ୍ତୁ ।"

ମୁଁ କହିଥିଲି- "ରାମକୃଷ୍ଣବାବୁ । ମନ୍ତ୍ରୀମଣ୍ଡଳ ଏକ ସାମୂହିକ ଦାୟିତ୍ୱ । ତେଣୁ ଯେକୌଣସି ମନ୍ତ୍ରୀ, ଯେକୌଣସି ମନ୍ତ୍ରୀଙ୍କ ଦାୟିତ୍ୱ ତୁଲାଇ ପାରିବ ।"

ପାଠିକପାଠିକାମାନଙ୍କ ଅବଗତି ନିମନ୍ତେ ମୁଁ ଜଣାଇଦେବାକୁ ଚାହେଁ ଯେ ସେଦିନ ମୁଖ୍ୟମନ୍ତ୍ରୀଙ୍କ ପାଇଁ ଆସିଥିବା ଏକ ମୁଲତବି ପ୍ରସ୍ତାବର ଉତ୍ତର ମୁଁ ଦେଉଥାଏ ।

ପ୍ରସ୍ତାବଟି ଆଣିଥିଲେ ପ୍ରଦୀପ ମହାରଥୀ । ତାଙ୍କର ଅଭିଯୋଗ ଥିଲା, ପିପିଲି କଲେଜ ସାମ୍ନାରେ କିଛି କଂଗ୍ରେସ ଲୋକ ତାଙ୍କ ଭାଇଙ୍କୁ ମାଡ଼ ମାରି ତାଙ୍କର ଗୋଟେ ଆଖି ଫୁଟାଇ ଦେଇଛନ୍ତି ।

ମୋର ଉତ୍ତର ଥିଲା- ଘଟଣା ଦିନ ପିପିଲି କଲେଜ ସାମ୍ନାରେ କେତେଜଣ କଂଗ୍ରେସ ଲୋକ ଠିଆ ହୋଇ କଥାବାର୍ତ୍ତା କରୁଥିଲେ । ଏହି ସମୟରେ ପ୍ରଦୀପ ମହାରଥୀଙ୍କ ଭାଇଙ୍କ ନେତୃତ୍ୱରେ ବିରୋଧୀଦଳର କିଛି ଲୋକ ଆସି ସେମାନଙ୍କୁ ମାଡ଼ପିଟ୍ କଲେ । ଏହି ଗଣ୍ଡଗୋଳ ସମୟରେ ନିକଟସ୍ଥ ଥାନାରୁ ପୋଲିସ୍ ଆସି ପହଞ୍ଚିଯିବାରୁ ମହାରଥୀଙ୍କ ଭାଇ ଓ ତାଙ୍କ ଲୋକେ ଏଣେତେଣେ ଧାଇଁ ପଳାଇଲେ । କଲେଜ ସାମ୍ନାରେ କିଛିବାଟ ଦୂରରେ କିଆଗଛର ଧାଡ଼ି ଅଛି । ମହାରଥୀଙ୍କ ଭାଇ ଲୁଚିବା ପାଇଁ ସେଇ କିଆବଣ ଭିତରକୁ ଧାଇଁଲେ । ତାଙ୍କ ଆଖିରେ କିଆକଣ୍ଟା ପଶି ତାଙ୍କ ଆଖିକୁ ନଷ୍ଟ କରିଦେଲା ।

ମୋର ଏ ଉତ୍ତର ଶୁଣି କଂଗ୍ରେସ ବିଧାୟକମାନେ ଜୋର୍‌ରେ ଟେବୁଲ୍ ବାଡ଼େଇ ମୋତେ ସମର୍ଥନ ଜଣାଇଲେ । ବାଚସ୍ପତି ମହୋଦୟ ମୁଲତବି ପ୍ରସ୍ତାବକୁ ନାକଚ କରିଦେଲେ ।

କିଛିଦିନ ପରେ ପ୍ରଦୀପ ମହାରଥୀ ମୋ ସ୍ତ୍ରୀ ଏମ୍.ଏ. ପାସ୍ କରି ଖାଲିଟା ଘରେ ବସିଚି । ତାକୁ ପିପିଲି କଲେଜରେ ରଖେଇ ଦିଅନ୍ତୁ ।" ମୁଁ କାଳବିଳମ୍ବ ନ କରି ତାଙ୍କୁ ପିପିଲି କଲେଜରେ ଅଧ୍ୟାପିକା କରେଇଦେଇଥିଲି ।

ହଁ, ଏବେ ମୁଁ ପୁଣି ଫେରୁଛି Illustrated Weekly ଉପାଖ୍ୟାନକୁ ।

ଜାନକୀବାବୁଙ୍କ ସଂପର୍କରେ ସେ ସମୟରେ ଓଡ଼ିଶାରେ ଥିବା ସି.ଆଇ.ଡି. ଆଇ.ଜି. ଏନ୍.କେ. ସିଂହ ତାଙ୍କ ଲିଖିତ ବହି- "The Plain Truth"ରେ ଲେଖିଛନ୍ତି-
"I got into another problem while handling what came to be known as the "Illustrated Weekly Cases. The Illustrated Weekly of India, in its issue of 3-9 August 1986, had carried a four page write up

under the caption "Why is J.B. Patnaik being allowed to gag the press." In this write-up there were references to J.B. Patnaik's private affairs and his alleged "sexual escapades' There was also a half-nude photo of a woman, said to be one Swapna Mukherjee, which revealed more than what it concealed. On August 6, 1986 early morning, in a well-planned operation, the Orissa Railway Police at Bhubaneswar as well as at Cuttack and Sambalpur police seized about 1000 copies of the said issue of the weekly and registered altogether five cases under section 292 of the Indian Penal Code against the Special Correspondent S.N.M. Abdi Edition and Publisher Pritish Nandi and proprietors Bennett Coleman & Co. Ltd."

ଏନ୍.କେ. ସିଂହ ଓଡ଼ିଶା କେଡ଼େର୍‌ର ଜଣେ ଦକ୍ଷ ଅଫିସର । ସେ କେନ୍ଦ୍ର ସରକାରଙ୍କର ସି.ବି.ଆଇ. ଜଏଣ୍ଟ ଡାଇରେକ୍ଟର ମଧ୍ୟ ଥିଲେ । ଜରୁରୀକାଳୀନ ପରିସ୍ଥିତିରେ ଇନ୍ଦିରାଗାନ୍ଧି ସମ୍ବିଧାନ ବିରୋଧୀ କାମ କରିଥିବା ଦର୍ଶାଇ ତାଙ୍କ ବିରୁଦ୍ଧରେ ଯେଉଁ ମୋକଦ୍ଦମା ହୋଇଥିଲା ତା'ର ତଦନ୍ତ ସେ କରିଥିଲେ ଓ ଇନ୍ଦିରାଗାନ୍ଧିଙ୍କୁ ଗିରଫ କରିଥିଲେ । ଏହି ସମ୍ବାଦ ପରିବେଷଣ ପାଇଁ ଜାନକୀବାବୁ ଉପରୋକ୍ତ ପତ୍ରିକା ବିରୁଦ୍ଧରେ ମାନହାନି ମୋକଦ୍ଦମା ଦାୟର୍ କରିଥିଲେ । ତତ୍‌କାଳୀନ ଏଡ଼ଭୋକେଟ ଜେନେରେଲ୍ ଗଙ୍ଗାଧର ରଥ ଭୁବନେଶ୍ୱର ସବ୍‌ଜଜ୍‌ଙ୍କ କୋର୍ଟରେ ଏହା ଦାଏର୍ କରିଥିଲେ । କିନ୍ତୁ ପରେ ପରେ ଏହି ସମ୍ବାଦ ପରିବେଷଣ ପାଇଁ ପତ୍ରିକା କର୍ତ୍ତୃପକ୍ଷ ଦୁଃଖପ୍ରକାଶ କରିବା ପରେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ଆଉ ମୋକଦ୍ଦମା ନ ଚଳାଇ ତାହାକୁ ପ୍ରତ୍ୟାହାର କରିନେଇଥିଲେ ।



# ଓଡ଼ିଶା ଅଲିମ୍ପିକ୍ ଏସୋସିଏସନ୍

କଟକର ବାରବାଟୀ ଷ୍ଟେଡିୟମ୍‌ରେ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନ୍, ଓଡ଼ିଶା ଏମେଚର୍ ଏଥିଲେଟିକ୍ ଏସୋସିଏସନ୍ ଓ ଓଡ଼ିଶା କ୍ରିକେଟ୍ ଏସୋସିଏସନ୍‌ର ଅଫିସ୍ ଅଛି । ବାରବାଟୀ ଷ୍ଟେଡିୟମ୍ ନିର୍ମାଣରେ ଭୈରବଚନ୍ଦ୍ର ମହାନ୍ତିଙ୍କ ଅବଦାନ ଅବିସ୍ମରଣୀୟ । ତାଙ୍କରି ପ୍ରଚେଷ୍ଟାରେ ହିଁ ଏହା ସମ୍ଭବ ହୋଇପାରିଥିଲା । ସେ ଦୀର୍ଘଦିନ ଓଡ଼ିଶା କ୍ରିକେଟ୍ ଏସୋସିଏସନ୍‌ର ସଂପାଦକ ଥିଲେ । ଏହି ଷ୍ଟେଡିୟମ୍ ନିର୍ମାଣରେ ହରେକୃଷ୍ଣ ମହତାବ ଓ ନୀଳମଣି ରାଉତରାୟଙ୍କର ଭୂମିକା ମଧ୍ୟ ଥିଲା । ମହତାବବାବୁ ଥିଲେ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନ୍‌ର ଆଜୀବନ ସଭାପତି । ୧୯୮୦ ମସିହାରେ ଭୈରବବାବୁ ଓ ୧୯୮୭ ମସିହାରେ ମହତାବ୍‌ବାବୁଙ୍କର ମହାପ୍ରୟାଣ ଘଟିଥିଲା । ସେ ସମୟରେ ଅଲିମ୍ପିକ୍ ଏସୋସିଏସନ୍‌ର କାର୍ଯ୍ୟକାରୀ ସଭାପତି ଥିଲେ ତତ୍‌କାଳୀନ କ୍ରୀଡ଼ାମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ । ମହତାବଙ୍କ ପରେ ସଭାପତି ପଦ ପାଇଁ ନିର୍ବାଚନ ହେବାର କଥା । ମାତ୍ର ବସନ୍ତବାବୁ ତାହା ନ କରାଇ ନିଜେ ସବୁ ଦାୟିତ୍ୱ ତୁଲାଇଥିଲେ । ଏଥିରେ କିଛି ସଭ୍ୟ କ୍ଷୁବ୍ଧ ହେଲେ । ନିର୍ବାଚନ କରାଇବା ପାଇଁ ଓଡ଼ିଶା ହାଇକୋର୍ଟରେ ମାମଲା ରୁଜୁ ହେଲା । ଏ ମୋକଦ୍ଦମା ବିଚାର କଲେ ମାନ୍ୟବର ବିଚାରପତି ଶରତ ଚନ୍ଦ୍ର ମହାପାତ୍ର । ନିର୍ବାଚନ ହେବା ପାଇଁ ସେ ରାୟ ଦେଲେ । ତାଙ୍କରି ତତ୍ତ୍ୱାବଧାନରେ ତା ୨୯।୮।୧୯୮୮ରିଖରେ ତାଙ୍କରି ଅଦାଲତରେ ନିର୍ବାଚନ ହେବ ବୋଲି ସେ ତାଙ୍କ ରାୟରେ ଉଲ୍ଲେଖ କଲେ ।

ବସନ୍ତବାବୁ ସଭାପତି ପଦ ପାଇଁ ଅଣ୍ଟା ଭିଡ଼ିଲେ । ନିର୍ବାଚନ ତାରିଖ ଆଉ ତିନିଦିନ ଥାଏ । ରାତି ଆଠଟାବେଳେ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକ ଆସି ମୋ ବାସଭବନରେ ପହଞ୍ଚିଲେ ଓ କହିଲେ- "ମୁଖ୍ୟମନ୍ତ୍ରୀ ମୋତେ ଖୋଜୁଛନ୍ତି ।" ମୁଁ

ସଂଗେ ସଂଗେ ଗଲି । କ୍ରୀଡ଼ା ବିଭାଗ ମୋ ଦାୟିତ୍ୱରେ ଥିବାରୁ ଏହି ନିର୍ବାଚନରେ କ'ଣ କରାଯିବ, ସେ ବିଷୟରେ ଆଲୋଚନା କରିବାକୁ ସେ ମୋତେ ଡାକିଥିଲେ । ବସନ୍ତବାବୁଙ୍କୁ ସଭାପତି ହେବା ପାଇଁ ସେ ଚାହୁଁ ନଥିଲେ ।

ମୁଖ୍ୟମନ୍ତ୍ରୀ ମୋତେ ପଚାରିଲେ- "କାହାକୁ ଠିଆ କରେଇଲେ ସେ ବସନ୍ତ ବିଶ୍ୱାଳଙ୍କୁ ହରାଇ ପାରିବ ?"

ମୁଁ ସଂଗେ ସଂଗେ କହିଲି- "ନିରଞ୍ଜନ ପଟ୍ଟନାୟକଙ୍କୁ ଠିଆ କରାନ୍ତୁ । ସବୁ ଦିଗରୁ ବିଚାର କଲେ ସେ ବସନ୍ତବାବୁଙ୍କୁ ଠିକ୍ ଭାବରେ ସାମ୍ନା କରିପାରିବେ ।"

ମୁଖ୍ୟମନ୍ତ୍ରୀ କହିଲେ- "ନା, ଆପଣ ସଭାପତି ପାଇଁ ଠିଆ ହୁଅନ୍ତୁ ।"

ମୁଁ ଆଉ କିଛି ନ କହି ଚୁପ୍ ରହିଲି ।

ପରଦିନ ସଚିବାଳୟରେ ମୋ ଅଫିସକୁ ଆସି ସଚିବ ପ୍ୟାରୀମୋହନ ମହାପାତ୍ରଙ୍କୁ ଏ କଥା କହିଲି । ସେ କହିଲେ- "ଆପଣ ଆଦୌ ରାଜି ହୁଅନ୍ତୁନି ଠିଆ ହେବାକୁ । ବସନ୍ତବାବୁଙ୍କୁ ହରାଇବା ଏତେ ସହଜ ନୁହେଁ । ଆପଣ କ୍ରୀଡ଼ାମନ୍ତ୍ରୀ ଥାଇ ଯଦି ହାରିଯାଆନ୍ତି, ବିରୋଧୀ ଦଳର ସଭ୍ୟମାନେ ଦାବୀ କରିବେ ଆପଣଙ୍କ ଇସ୍ତଫା ।"

ମନରେ ମୋର ଗଭୀର ଚିନ୍ତା । ମୁଖ୍ୟମନ୍ତ୍ରୀଙ୍କୁ ଯାଇ ମୋର ମନକଥା ଜଣାଇବା ପରେ ସେ ମୋତେ କହିଲେ- "ଆପଣ ନିର୍ବାଚନ ଲଢୁନାହାନ୍ତି, ଆପଣ ନିମିତ୍ତ ମାତ୍ର । ମୁଁ ନିର୍ବାଚନ ଲଢୁଛି । ମୋ ପାଇଁ ଆପଣ ଠିଆ ହେବେ ।"

ସନ୍ଧ୍ୟାରେ ମୁଁ ଓ ମୁଖ୍ୟମନ୍ତ୍ରୀ କଟକ ସର୍କିଟ୍ ହାଉସ୍‌କୁ ଗଲୁ । ଆଶୀର୍ବାଦ ବେହେରା, ବିଜୁ ପଟ୍ଟନାୟକଙ୍କ ବଡ଼ଭାଇ ଜର୍ଜ ପଟ୍ଟନାୟକ ଓ ଅନ୍ୟମାନେ ଆମ ଅପେକ୍ଷାରେ ଥିଲେ । ସେଠାରେ ମୁଁ ଦେଖିଲି ମୁଁ ଠିଆହେବା ସ୍ଥିର ହୋଇଥିବାରୁ ସମସ୍ତେ ଖୁସି । ଆମେ ପହଞ୍ଚିବା ମାତ୍ରେ ତାଳି ବଜେଇ ଆମକୁ ସ୍ୱାଗତ ଜଣେଇଲେ । ମୁଖ୍ୟମନ୍ତ୍ରୀ ଆଲୋଚନା କଲେ । ମୁଁ ନୀରବଦ୍ରଷ୍ଟା । ନିଷ୍ପତ୍ତି ନିଆଗଲା କିଏ ଉପସଭାପତି, ସଂପାଦକ, ସହ-ସଂପାଦକ, କୋଷାଧ୍ୟକ୍ଷ, ସଭ୍ୟ ପାଇଁ ପ୍ରତିଦ୍ୱନ୍ଦିତା କରିବେ । ଏସବୁ ଠିକ୍ କରି ଆମେ ଫେରିଲୁ ।

ନିର୍ବାଚନ ଦିନ । ମାନ୍ୟବର ବିଚାରପତିଙ୍କ ଇଜ୍‌ଲାସ୍‌ରେ ଆମେ ଯାଇ ପହଞ୍ଚିଲୁ । ଇଜ୍‌ଲାସର ଦ୍ୱାର ଦେଶରେ ଦେଖିଲୁ ବିଜୁ ପଟ୍ଟନାୟକ ଓ ମୁସ୍ତାଫିଜ୍

ଅହମ୍ମଦ ଠିଆ ହୋଇ ବସନ୍ତବାବୁଙ୍କୁ ଭୋଟ ଦେବା ପାଇଁ ପ୍ରବର୍ତ୍ତାଉଛନ୍ତି । ବିଜୁବାବୁ ଥିଲେ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନ୍‌ର ଆଜୀବନ ସଦସ୍ୟ । ଇଜ୍‌ଲାସ୍ ଭିତରକୁ ଯାଇ ଦେଖିଲି ଆମ ସମର୍ଥକମାନେ ଗୋଟିଏ ପାଖରେ ବସିଛନ୍ତି । ମୁଁ ଯାଇ ସେମାନଙ୍କ ପାଖରେ ବସିଲି । ସେଇଠି ଜର୍ଜ ପଟ୍ଟନାୟକ ମୋତେ କହିଲେ ଭୋଟ ଦେବାକୁ ଆସିବା ପୂର୍ବରୁ ବିଜୁ ପଟ୍ଟନାୟକ ତାଙ୍କ ପାଖକୁ ଯାଇଥିଲେ । ତାଙ୍କୁ ଦେଖି ସେ ପଚାରିଲେ- "ବିଜୁ ! ଏତେ ସକାଳେ ତୁ କୁଆଡ଼େ ?"

ବିଜୁବାବୁ କହିଲେ- "ଆଜି ପରା ଅଲିମ୍ପିକ୍ ନିର୍ବାଚନ । ତୁମେ ତ ଭୋଟ୍ ଦେବାକୁ ଯିବ । ମୁଁ ଗାଡ଼ି ନେଇ ଆସିଛି । ମୋ ସାଙ୍ଗରେ ଚାଲ ।"

ଏହା ଶୁଣି ସେ ବିଜୁବାବୁଙ୍କ ଗାଡ଼ିରେ ଭୋଟ୍ ଦେବା ପାଇଁ ଯିବାକୁ ମନା କରିଦେଇଥିଲେ । କହିଥିଲେ- "ତୋ ଗାଡ଼ିରେ ମୁଁ ଯିବିନି । ଯଦୁବାବୁଙ୍କ ଗାଡ଼ି ମୋତେ ନେବାକୁ ଆସିବ । ମୁଁ ସେଇ ଗାଡ଼ିରେ ଯିବି ।"

ଏହା ଶୁଣି ବିଜୁବାବୁ ଫେରିଆସିଥିଲେ । ତା'ପରେ ଆମ ଗାଡ଼ି ଯାଇଥିଲା । ସେ ସେଇ ଗାଡ଼ିରେ ଆସିଥିଲେ ।

ନିର୍ଦ୍ଧାରିତ ସମୟରେ ମାନ୍ୟବର ବିଚାରପତି ଭୋଟ୍ କାର୍ଯ୍ୟ ଆରମ୍ଭ କରିଦେଲେ । ସବୁ ସଭ୍ୟମାନେ ଭୋଟ୍ ଦେଇସାରିବା ପରେ ଗଣତି ଓ ବିଜୟୀ ହୋଇଥିବା ପ୍ରାର୍ଥୀଙ୍କ ନାମ ଘୋଷଣା । ପ୍ରଥମେ ସଭ୍ୟଂରୁ ଆରମ୍ଭ କରି ଉପରକୁ ଗଲେ । ଶେଷରେ ଘୋଷଣା କଲେ ବିଜୟୀ ସଭାପତିଙ୍କ ନାମ । ବସନ୍ତବାବୁଙ୍କୁ ୪୫-୩୫ ଭୋଟ୍ ବ୍ୟବଧାନରେ ହରାଇ ମୁଁ ବିଜୟୀ ହୋଇଥିଲି । ହାଇକୋର୍ଟ ପରିସରକୁ ବାହାରି ଆସି ବେକରେ ଫୁଲମାଳ ପକେଇ ଶୋଭାଯାତ୍ରାରେ ଆମେ ବାରବାଟୀ ଷ୍ଟେଡିୟମ୍‌କୁ ଗଲୁ । ମୋ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହେଲା । ସେହି ବୈଠକରେ ଷ୍ଟେଡିୟମ୍‌ର ସବୁ କର୍ମଚାରୀଙ୍କ ଦରମା ମୁଁ ବଢ଼ାଇ ଦେଇଥିଲି ।

ସେତେବେଳେ ଇଣ୍ଡିୟାନ୍ ଅଲିମ୍ପିକ୍ ଏସୋସିଏସନ୍‌ର ସଭାପତି ଥିଲେ ବି. ସିବାନ୍ଥି ଆଦିତ୍ୟନ୍ । ୧୦ ଜଣ ଉପସଭାପତି ଥିଲେ । ସେମାନଙ୍କ ମଧ୍ୟରେ ସୁରେଶ୍ କଲ୍‌ମାଡ଼ି, ଜେ. ଏସ୍. ଗେହଲଟ୍, କାମାକ୍ଷାପ୍ରସାଦ ସିଂହଦେଓ, ପ୍ରିୟରଂଜନ ଦାସ ମୁନ୍‌ସୀ ପ୍ରମୁଖ ଥିଲେ । ୬ ଜଣ ସହଯୋଗୀ ଉପସଭାପତି (Associate Vice President) ଥିଲେ । ତନ୍ମଧ୍ୟରେ ମୁଁ ମଧ୍ୟ ଥିଲି ଜଣେ । ସାଧାରଣ ସଂପାଦକ ଥିଲେ ରଣଧୀର ସିଂହ ।

ଏମେଚରେ ଏଥ୍ଲେଟିକ୍ ଫେଡ଼େରେସନ୍ ଅଫ୍ ଇଣ୍ଡିଆର ସଭାପତି ଥିଲେ ସୁରେଶ୍ କଲ୍‌ମାଡ଼ି ଏବଂ ସାଧାରଣ ସଂପାଦକ ଥିଲେ ଲଳିତ ଭାନୋଟ୍ । ସର୍ବଭାରତୀୟ ସ୍ତରରେ ଆଇ.ଓ.ଏ. (I.O.A) ଏବଂ ଏ.ଏ.ଏଫ୍.ଆଇ. (A.A.F.I.) ପାଇଁ ଅଲଗା ଅଲଗା ନିର୍ବାଚନ ହୁଏ କିନ୍ତୁ ଓଡ଼ିଶାରେ ତାହା ହୁଏ ନାହିଁ । ଓଡ଼ିଶାରେ ଅଲିମ୍ପିକ୍ ଏସୋସିଏସନ୍‌ର ଯେଉଁମାନେ କର୍ମକର୍ତ୍ତା ସେହିମାନେ ହିଁ ଏମେଚରେ ଏଥ୍ଲେଟିକ୍ ଏସୋସିଏସନ୍‌ର କର୍ମକର୍ତ୍ତା ହୁଅନ୍ତି । ସେହି ଦୃଷ୍ଟିରୁ ମୁଁ ଏହି ଏସୋସିଏସନ୍‌ର ସଭାପତି ଓ ଆଶୀର୍ବାଦ ବେହେରା ଅଲିମ୍ପିକ୍ ଏସୋସିଏସନ୍‌ର ସାଧାରଣ ସଂପାଦକ ଭାବେ ନିର୍ବାଚିତ ହୋଇଥିବାରୁ ସେ ମଧ୍ୟ ଏହି ଏସୋସିଏସନ୍‌ର ସାଧାରଣ ସଂପାଦକ ରହିଲେ । ଏ.ଏ.ଏଫ୍.ଆଇ. ସଭାପତି ସୁରେଶ କାଲ୍‌ମାଡ଼ି ମଧ୍ୟ ମୋତେ ଏ.ଏ.ଏଫ୍.ଆଇ.ର ସହଯୋଗୀ ଉପସଭାପତି କରିଥିଲେ । ମୁଁ ସୁରେଶ୍ କଲ୍‌ମାଡ଼ିଙ୍କ ଘନିଷ୍ଠ ସଂପର୍କରେ ଆସିଥିଲି । ସେ ଥିଲେ ପୁନେର ଅଧିବାସୀ ଓ କଂଗ୍ରେସ ସାଂସଦ । ସେ ସମୟରେ ତାଙ୍କ ପିତାଙ୍କ ଏକାଦଶାହରେ ମୁଁ ଓ ମୋ ସ୍ତ୍ରୀ ପୁନେ ଯାଇଥିଲୁ । ୧୯୮୮ରୁ ୧୯୯୨ ମସିହା ପର୍ଯ୍ୟନ୍ତ ମୁଁ ଓଡ଼ିଶା ଅଲିମ୍ପିକ୍ ଏସୋସିଏସନ୍‌ର ସଭାପତି ଥିଲି । ବାରବାଟୀ ଷ୍ଟେଡିୟମ୍‌ରେ ହରେକୃଷ୍ଣ ମହତାବଙ୍କର ପ୍ରତିମୂର୍ତ୍ତି ସ୍ଥାପନା ମୋରି ସମୟରେ ହୋଇଥିଲା । ବିଭିନ୍ନ କ୍ରୀଡ଼ାସଂସ୍ଥା ଯଥା ଧନୁର୍ବିଦ୍ୟା, ଖୋ-ଖୋ, ଜୁଡ଼ୋ, ବେଡ୍‌ମିଣ୍ଟନ୍, ଟେବୁଲ୍ ଟେନିସ୍, ହେଣ୍ଡ୍‌ବଲ୍ ପ୍ରଭୃତିକୁ affiliation ଦେଇଥିଲୁ । ସରକାର ଏସୋସିଏସନ୍‌କୁ କୌଣସି ଅର୍ଥ ସାହାଯ୍ୟ ଦେଉ ନଥିଲେ । ଆମେ ଜିଲ୍ଲାସ୍ତରୀୟ କ୍ରୀଡ଼ା ସଂଗଠନକୁ ଦିଆଯାଉଥିବା ବାର୍ଷିକ ଅନୁଦାନକୁ ଟ୩୦୦୦.୦୦ଙ୍କାରୁ ଟ୫୦୦୦.୦୦ଙ୍କାକୁ ବୃଦ୍ଧି କରିଥିଲୁ । ରାଜ୍ୟସ୍ତରୀୟ କ୍ରୀଡ଼ାବିତ୍‌ମାନଙ୍କ ପେନ୍‌ସନ୍ ବ୍ୟବସ୍ଥା ମଧ୍ୟ ସେହି ସମୟରେ କରାଯାଇଥିଲା । ରାଜ୍ୟସ୍ତରୀୟ କ୍ରୀଡ଼ା ପ୍ରତିଯୋଗୀତାମାନ କରାଇଥିଲୁ । ପୂର୍ବାଞ୍ଚଳ ରାଜ୍ୟମାନଙ୍କର କ୍ରୀଡ଼ା ପ୍ରତିଯୋଗୀତା, ଆନ୍ତଃରାଜ୍ୟ କନିଷ୍ଠ କ୍ରୀଡ଼ାବିତ୍ ପ୍ରତିଯୋଗୀତା କରାଇଥିଲୁ । ଜାତୀୟ କ୍ରୀଡ଼ା ପ୍ରତିଯୋଗୀତାରେ ଭାଗନେବା ପାଇଁ ଯୋଗ୍ୟ ଖେଳାଳିମାନଙ୍କୁ ଆର୍ଥିକ ସାହାଯ୍ୟ କରୁଥିଲୁ ।



# ସେ ସମୟର ବିଭିନ୍ନ କାର୍ଯ୍ୟ

ସେତେବେଳେ ଶିକ୍ଷା କ୍ଷେତ୍ରରେ ଓଡ଼ିଶା ଏକ ଅନଗ୍ରସର ରାଜ୍ୟ ଥିଲା । ଜାତୀୟ ସ୍ତରରେ ସାକ୍ଷରତାର ହାର ଠାରୁ ଓଡ଼ିଶାରେ ସାକ୍ଷରତାର ହାର କମ୍ ଥିଲା । ସେତେବେଳେ ରାଜ୍ୟ ଲୋକସଂଖ୍ୟାର ୩୭% ଲୋକ ଥିଲେ ଆଦିବାସୀ ଓ ହରିଜନ ସଂପ୍ରଦାୟର । ୮୮% ଲୋକ ଗ୍ରାମାଞ୍ଚଳର ବାସିନ୍ଦା ଥିଲେ । ତେଣୁ ଶିକ୍ଷାର ସଂପ୍ରସାରଣ ପାଇଁ ଅନେକ ପ୍ରାଥମିକ, ମଧ୍ୟଇଂରାଜୀ ଓ ଉଚ୍ଚଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇଥିଲା । କେନ୍ଦ୍ର ସରକାରଙ୍କ ପ୍ରଯୋଜନାରେ ନବୋଦୟ ବିଦ୍ୟାଳୟମାନ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏ ଖୋଲାଯିବାର କଥା । ସେତେବେଳେ ଓଡ଼ିଶାର ଜିଲ୍ଲା ସଂଖ୍ୟା ଥିଲା ୧୩ । ଅର୍ଦ୍ଧାଧିକ ଜିଲ୍ଲାରେ ଏହା କରାଯାଇପାରିଥିଲା । ଏତଦ୍‌ବ୍ୟତୀତ ଅନେକ ବେସରକାରୀ ମହାବିଦ୍ୟାଳୟକୁ ମଞ୍ଜୁରି ପ୍ରଦାନ କରାଯାଇଥିଲା । ସରକାରୀ କଲେଜମାନଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା । କିଛି ପ୍ରଶିକ୍ଷଣ ମହାବିଦ୍ୟାଳୟ, ଆଇନ୍ ମହାବିଦ୍ୟାଳୟ ଓ ତତ୍‌ସହିତ କିଛି ଶାରୀରିକ ବିଦ୍ୟାଳୟ, ପାଠାଗାର, ବିଜ୍ଞାନ ଶିକ୍ଷାନୁଷ୍ଠାନ ସେହି ସମୟରେ କରାଯାଇଥିଲା । ୧୯୮୬ ମସିହାର ଜାତୀୟ ଶିକ୍ଷାନୀତି ଅନୁଯାୟୀ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରାଯିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଯେଉଁସବୁ ପିଲାମାନେ ସ୍କୁଲ୍‌କୁ ଆସିପାରୁ ନଥିଲେ ବା ଆସି ପୁଣି ଆସିବା ବନ୍ଦ କରିଦେଉଥିଲେ, ସେମାନଙ୍କ ପାଇଁ ଅଣ ପାରମ୍ପରିକ (Nonformal) ଶିକ୍ଷାର ବ୍ୟବସ୍ଥା କରାଯାଇଥିଲା । ଏହିଭଳି ୧୧୨୩୫ଟି ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ଏହା ମଧ୍ୟରୁ ୨୯୬୫ଟି କେନ୍ଦ୍ର କେବଳ ଝିଅଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହି ସମୟରେ ପ୍ରାଥମିକ ବିଦ୍ୟାଳୟମାନଙ୍କ ପାଇଁ କଳାପଟା ଯୋଜନା କାର୍ଯ୍ୟକ୍ରମ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଯେଉଁସବୁ ପ୍ରାଥମିକ ସ୍କୁଲ ଏକକ-ଶିକ୍ଷକରେ

ଚଳୁଥିଲା ସେସବୁ ସ୍କୁଲମାନଙ୍କ ପାଇଁ ଦ୍ୱିତୀୟ ଶିକ୍ଷକ ବ୍ୟବସ୍ଥା କରାଯାଇଥିଲା । ଇନ୍ଦିରା ଆବାସ ଥିବା ଅଞ୍ଚଳରେ ପ୍ରାଥମିକ ସ୍କୁଲର ବ୍ୟବସ୍ଥା ହେଲା । ୧୯୮୮ରେ ଜାତୀୟ ସାକ୍ଷରତା ମିସନ୍ ଓଡ଼ିଶାରେ ପ୍ରତିଷ୍ଠିତ ହେଲା । ତାହାରି ମାଧ୍ୟମରେ ୫୦୦ ଜନଶିକ୍ଷା ନିଳୟମ୍ ପ୍ରୌଢ଼ଶିକ୍ଷା ପାଇଁ ଆରମ୍ଭ କରାଗଲା । ୯ଟି ରାଜ୍ୟ ପ୍ରୌଢ଼ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା କରାଯାଇ ତାହାରି ଅଧୀନରେ ୨୭୦୦ ଶିକ୍ଷାୟତନ ଆରମ୍ଭ କରାଗଲା । ଏହାଛଡ଼ା ୧୯୦୦ଟି କେନ୍ଦ୍ରୀୟ ପ୍ରୋଜେକ୍ଟ ମାଧ୍ୟମରେ ୫୭୦୦ କେନ୍ଦ୍ର କାର୍ଯ୍ୟକାରୀ କରାଗଲା । ପ୍ରାୟ ୧୦,୦୦୦ ପ୍ରାଥମିକ ସ୍କୁଲ ଏବଂ ୫୦୦ ମଧ୍ୟଇଂରାଜୀ ସ୍କୁଲର ଗୃହକୁ ପକ୍କା ଗୃହରେ ପରିଣତ କରାଗଲା । ପ୍ରାୟ ୯୦୦୦ ପ୍ରାଥମିକ ସ୍କୁଲକୁ ବିଭିନ୍ନ ଉପକରଣ, ପୁସ୍ତକ ଓ ଶିଶୁ ପତ୍ରିକା ଯୋଗାଇ ଦିଆଯାଇଥିଲା । ଅନେକ ପ୍ରାଥମିକ ସ୍କୁଲକୁ ଟୁ-ଇନ୍-ୱାନ୍ ଟେଲିଭିଜନ୍ ସେଟ୍‌ମାନ ଯୋଗାଇ ଦିଆଯାଇଥିଲା । ବେକାରୀ ଦୂରୀକରଣ ପାଇଁ ଶିକ୍ଷାକୁ କର୍ମଭିତ୍ତିକ କରିବା ଉଦ୍ଦେଶ୍ୟରେ ମେଟ୍ରିକୁଲେସନ୍ ପାସ୍ କରିଥିବା ପିଲାମାନଙ୍କ ପାଇଁ କର୍ମଭିତ୍ତିକ ବୈଷୟିକ କଲେଜ ଆରମ୍ଭ କରାଯାଇଥିଲା । ପ୍ରଥମଥର ପାଇଁ ୩୧ଟି ହାଇସ୍କୁଲରେ ଏହା ଆରମ୍ଭ କରାଯାଇଥିଲା । ପରବର୍ଷ ଆଉ ୫୦ଟି କରାଯାଇଥିଲା ।

ଶିକ୍ଷକ-ଶିକ୍ଷିକାମାନଙ୍କୁ ତାଲିମ ଦେବା ପାଇଁ Institute of Educational Training ଅନୁଷ୍ଠାନମାନ ପ୍ରତିଷ୍ଠା କରାଯାଇଥିଲା । English Language Teaching Institute ସ୍ଥାପନ କରାଯାଇ ଶିକ୍ଷକ-ଶିକ୍ଷିକାମାନଙ୍କର ଇଂରାଜୀ ପଢ଼ାଇବାର ଦକ୍ଷତା ବୃଦ୍ଧି ପାଇଁ ସେମାନଙ୍କୁ ପ୍ରଶିକ୍ଷଣ ଦିଆଯାଉଥିଲା ।

ପ୍ରାଥମିକ ସ୍କୁଲର ପିଲାମାନଙ୍କୁ ଶିକ୍ଷଣୀୟ ଚଳଚ୍ଚିତ୍ର ମାଧ୍ୟମରେ ସେମାନଙ୍କର ଶିକ୍ଷାର ମାନବୃଦ୍ଧି ପାଇଁ State Institute of Educational Technologyର ପ୍ରତିଷ୍ଠା ସେ ସମୟରେ ଥିଲା ଏକ ଯୁଗାନ୍ତକାରୀ ପଦକ୍ଷେପ । ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଝିଅପିଲାମାନଙ୍କର ବେତନ ଛାଡ଼ କରାଯାଇଥିଲା । ପ୍ରାଥମିକ ବିଦ୍ୟାଳୟରେ ମହିଳା ଶିକ୍ଷୟିତ୍ରୀମାନଙ୍କୁ ଗୁରୁତ୍ୱ ଦିଆଯାଇ ୧୦,୦୦୦ ମହିଳାଙ୍କୁ ନିଯୁକ୍ତି ପ୍ରଦାନ କରାଯାଇଥିଲା । ବେସରକାରୀ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କର ଚାକିରି ସର୍ତ୍ତର ଉନ୍ନତିବିଧାନ, ୫୦ ଭାଗ ପେନ୍‌ସନ୍ ପ୍ରଦାନ, ପାରିବାରିକ ପେନ୍‌ସନ୍ ପ୍ରଭୃତିର ବ୍ୟବସ୍ଥା ମୋହରି କାର୍ଯ୍ୟକାଳ ସମୟରେ କରାଯାଇଥିଲା ।

ସାମାଜିକ ବିଜ୍ଞାନ କ୍ଷେତ୍ରରେ ଗବେଷଣା ପାଇଁ Nabakrushna Choudhury Centre for Development Studiesର ସ୍ଥାପନା ଥିଲା ଆଉ ଏକ ଉଲ୍ଲେଖନୀୟ କାର୍ଯ୍ୟ ।

କ୍ରୀଡ଼ାମନ୍ତ୍ରୀ ଭାବରେ ବିଭିନ୍ନ ଜିଲ୍ଲା, କେତେକ ସବ୍‌ଡିଭିଜନ୍ ଓ ବ୍ଲକ୍ ସ୍ତରରେ ଷ୍ଟେଡିୟମ୍ ନିର୍ମାଣ ଏବଂ ଯେଉଁଠାରେ ଷ୍ଟେଡିୟମ୍ ଥିଲା, ତା'ର ଉନ୍ନତିବିଧାନ, ଭୁବନେଶ୍ୱରରେ କଳିଙ୍ଗ ଷ୍ଟେଡିୟମ୍ ଓ କଟକର ଇନ୍‌ଡୋର ଷ୍ଟେଡିୟମ୍‌ର ପୂର୍ଣ୍ଣାଙ୍ଗକରଣ ମୋ'ରି ସମୟରେ କରାଯାଇଥିଲା । କ୍ରୀଡ଼ା ନିର୍ଦ୍ଦେଶକ ଥିଲେ ଅନାଦି ଚରଣ ସାହୁ ଆଇ.ପି.ଏସ୍. । କ୍ରୀଡ଼ା କ୍ଷେତ୍ରରେ ଥିବା ଅସୁବିଧାର ଦୂରୀକରଣ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ ।



# ମୁଁ ଓ କୋରାପୁଟ

ସେ ସମୟରେ ଓଡ଼ିଶାର ୧୩ଟି ଜିଲ୍ଲା ଦାୟିତ୍ୱରେ ପ୍ରତ୍ୟେକ ଜିଲ୍ଲା ପାଇଁ ଜଣେ ଜଣେ ମନ୍ତ୍ରୀ ରହୁଥିଲେ । ନନ୍ଦିନୀଦେବୀଙ୍କ ମନ୍ତ୍ରିମଣ୍ଡଳରେ ଥିବାବେଳେ ଥିଲି ଢେଙ୍କାନାଳ ଜିଲ୍ଲା ଦାୟିତ୍ୱରେ । ଏବେ ରହିଲି କୋରାପୁଟ ଜିଲ୍ଲା ଦାୟିତ୍ୱରେ । ମୁଁ ପ୍ରାୟ ମାସେ ଦେଢ଼ମାସରେ ଥରେ ଲେଖାଏଁ କୋରାପୁଟ ଯାଉଥିଲି । ଓଡ଼ିଶା ସରକାରଙ୍କ ବିମାନ ମୋତେ ନେଇ ଛାଡ଼ିଦେଇ ଆସେ, ପୁଣି ତିନି ଚାରିଦିନ ପରେ ଯାଇ ନେଇଆସେ । ସେତେବେଳେ ମୋ ମଝିଆ ଝିଅ ପୁଷ୍ପମିତ୍ରା ଓ ତାଙ୍କ ଇଂଜିନିୟର ବସନ୍ତ କୁମାର ମିଶ୍ର ଦାମନ୍‌ଯୋଡ଼ିରେ ରହୁଥିଲେ । ତାଙ୍କ ନାଲ୍‌କୋର ଇଂଜିନିୟର୍ । ମୁଁ କୋରାପୁଟ୍ ସର୍କିଟ୍ ହାଉସ୍‌ରେ ପ୍ରାୟ ରହେ । ସମୟ ସମୟରେ ଦାମନ୍‌ଯୋଡ଼ିର ନାଲ୍‌କୋ ଗେଷ୍ଟ ହାଉସ୍ ଆଉ କେତେବେଳେ ସୁନାବେଡ଼ା ମିଗ୍ କାରଖାନାର ଗେଷ୍ଟ୍ ହାଉସ୍‌ରେ ମଧ୍ୟ ରହୁଥିଲି ।

କୋରାପୁଟରେ ବର୍ଷର ଅନେକ ସମୟରେ ଝିପ୍‌ଝିପ୍ ବର୍ଷା ହୁଏ । ତେଣୁ ମୁଁ ସେଠାରେ ଅନେକ ସମୟରେ କହୁଥିଲି କୋରାପୁଟର ଆବହାୱା ଇଂଲଣ୍ଡର ଆବହାୱା ସହ ସମାନ । କୋରାପୁଟର ବଣ୍ଟୁ ଅଞ୍ଚଳ ଘନ ଜଂଗଲର ସବୁଜିମା ମୋ କବି ମନକୁ ଆହ୍ଲାଦିତ କରୁଥିଲା । କୋରାପୁଟ ସର୍କିଟ୍ ହାଉସ୍ ପାଖରେ ଜନବସତି ନଥିଲା । ଅଳ୍ପ ଦୂରରେ ଥିଲା ବଜାର । ଖୁବ୍ ବଡ଼ ନୁହେଁ । ଏଠାରେ ଅଛି ମହାପ୍ରଭୁ ଜଗନ୍ନାଥଙ୍କ ମନ୍ଦିର । ରଥଯାତ୍ରା ବେଳେ ଖୁବ୍ ଜନସମାଗମ ହୁଏ । ଥରେ ରଥଯାତ୍ରା ବେଳେ ମୁଁ ସସ୍ତ୍ରୀକ ଉପସ୍ଥିତ ଥିଲି । ଜଣେ ବୟୋଜ୍ୟେଷ୍ଠ ଆଦିବାସୀ ଛେରାପହଁରା କରନ୍ତି । ପ୍ରଥମାବସ୍ଥାରେ ଏକ ଛୋଟ ଚାଳଘରେ ଜଗନ୍ନାଥ ମହାପ୍ରଭୁଙ୍କୁ ପୂଜା କରାଯାଉଥିଲା । ପରବର୍ତ୍ତୀ ସମୟରେ ପ୍ୟାରୀମୋହନ ମହାପାତ୍ର ଯେତେବେଳେ ଦଣ୍ଡକାରଣ୍ୟ ଯୋଜନା ଦାୟିତ୍ୱରେ ଅତିରିକ୍ତ ପ୍ରଶାସକ

ଥିଲେ, ତାଙ୍କରି ପ୍ରଚେଷ୍ଟାରେ ପକ୍କା ମନ୍ଦିର ନିର୍ମାଣ କରାଯାଇଥିଲା । ପ୍ରତିବର୍ଷ ରଥଯାତ୍ରା ସମୟରେ ପ୍ୟାରୀବାବୁ ଏଠାକୁ ଯାଉଥିଲେ । ଏହାକୁ ଶାବର ଶ୍ରୀକ୍ଷେତ୍ର କୁହାଯାଏ । ୧୯୮୬ରୁ ୧୯୮୮ କୋରାପୁଟ ଜିଲ୍ଲାପାଳ ଥିଲେ ରବିନାରାୟଣ ସେନାପତି । ସେ ମୋ ସହିତ କୋରାପୁଟର ଅନେକ ଅଞ୍ଚଳକୁ ଯାଉଥିଲେ । ସେହି ସମୟରେ ସେମିଳିଗୁଡ଼ା କଲେଜ ହୋଇଥିଲା । କୋରାପୁଟ ଡି.ଏ.ଭି. କଲେଜର ନିଜସ୍ୱ ଗୃହ ନଥିଲା । ତା' ପାଇଁ ସ୍ଥାନ ନିରୂପଣ ଓ ନୂତନ ଗୃହ ନିର୍ମାଣ ମୋହରି ସମୟରେ ହୋଇଥିଲା । ତା'ର ଛାତ୍ରାବାସର ନାମକରଣ 'ବଂଶଧାରା ଛାତ୍ରାବାସ' ମୋହରି ଦ୍ୱାରା କରାଯାଇଥିଲା ।

ସେ ସମୟରେ କୋରାପୁଟ ଜିଲ୍ଲାର ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ସମୀକ୍ଷା କରିବା ପାଇଁ ଜିଲ୍ଲାର ବିଧାୟକମାନଙ୍କୁ କୋରାପୁଟ ସର୍କିଟ୍ ହାଉସ୍‌କୁ ଥରେ ଡାକିଥିଲି । ସେ ବୈଠକରେ ରାଷ୍ଟ୍ରମନ୍ତ୍ରୀ ଜନାବ୍ ହବିବୁଲ୍ଲା ଖାଁ ମଧ୍ୟ ଉପସ୍ଥିତ ଥିଲେ । ଜିଲ୍ଲାପାଳ, ଅନ୍ୟ ଅଫିସର ବୃନ୍ଦ, ଶିକ୍ଷା ବିଭାଗର ଅଫିସରମାନେ ଏହି ବୈଠକରେ ଯୋଗଦେଇଥିଲେ । ପ୍ରାଥମିକ ଶିକ୍ଷା ହିଁ ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା । ଆଲୋଚନାରେ ଜଣାପଡ଼ିଲା ଅନେକ ପ୍ରାଥମିକ ଶିକ୍ଷକ ପଦ ଖାଲି ଅଛି । ସେତେବେଳେ ଜିଲ୍ଲାୱାରି ଶିକ୍ଷକ ଚୟନ କରାଯାଉ ନଥିଲା । ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକଙ୍କ ତତ୍ତ୍ୱାବଧାନରେ ଯୋଗ୍ୟତା ଭିତ୍ତିରେ ମେଟ୍ରିକ୍ ଓ ସି.ଟି. ପାସ୍ କରିଥିବା ପିଲାମାନଙ୍କର ତାଲିକା ପ୍ରସ୍ତୁତ କରାଯାଇ ସେମାନଙ୍କୁ ବିଭିନ୍ନ ଜିଲ୍ଲାରେ ନିଯୁକ୍ତି ଦିଆଯାଉଥିଲା । ଯୋଗ୍ୟତାଭିତ୍ତିକ ତାଲିକାରେ କୋରାପୁଟ ଜିଲ୍ଲାର ପିଲାମାନେ ପଛରେ ରହିଯାଉଥିଲେ । ଉପକୂଳବର୍ତ୍ତୀ ଜିଲ୍ଲାର ପିଲାମାନେ ସେ ଜିଲ୍ଲାରେ ନିଯୁକ୍ତି ପାଉଥିଲେ । ଆମର ସେହି ବୈଠକରେ କୋରାପୁଟର ବିଧାୟକମାନେ ବିଶେଷ କରି ଜନାବ୍ ହବିବୁଲ୍ଲା ଖାଁ ଏହାର ଘୋର ବିରୋଧ କରିଥିଲେ । ମୁଁ ଜାଣିବାକୁ ଚାହିଁଲି ଜିଲ୍ଲାରେ କେତୋଟି ପଦବୀ ଖାଲି ଅଛି ଓ ସି.ଟି. ପାସ୍ କରିଥିବା ପିଲା କେତେ ଅଛନ୍ତି ? ହିସାବରୁ ଯାହା ଜଣାପଡ଼ିଲା ଯେତିକିଟି ପଦବୀ ଖାଲି ଅଛି, ତା'ର ପ୍ରାୟ ଏକ ତୃତୀୟାଂଶ ସି.ଟି ପାସ୍ ପିଲା ଜିଲ୍ଲାରେ ଅଛନ୍ତି । ଆଦିବାସୀ ଓ ହରିଜନମାନଙ୍କ ପାଇଁ ସି.ଟି. ପାସ୍ ପିଲାଙ୍କ ସଂଖ୍ୟା ଖୁବ୍ କମ୍ ଅଛି । ସେଇଠି ନିଷ୍ପତ୍ତି ନେଇ ଶିକ୍ଷାମଣ୍ଡଳାଧିକାରୀଙ୍କୁ କହିଲି- ପ୍ରଥମ ଦଫାରେ ଜିଲ୍ଲାର ସବୁ ସି.ଟି. ପାସ୍ କରିଥିବା ସାକ୍ଷାତକାର ନେଇ

ସମସ୍ତଙ୍କୁ ନିଯୁକ୍ତି ଦେଇଦିଅନ୍ତୁ । ସଂରକ୍ଷିତ ସ୍ଥାନ ପାଇଁ ମେଟ୍ରିକ୍ ପାସ୍ କରିଥିବା ଆଦିବାସୀ ହରିଜନ ପିଲାଙ୍କର ସାକ୍ଷାତକାର ନେଇ ସେମାନଙ୍କୁ ଗୋଟିଏ ସର୍ତ୍ତରେ ନିଯୁକ୍ତି ଦିଅନ୍ତୁ ଯେ ନିଯୁକ୍ତିର ତିନିବର୍ଷ ମଧ୍ୟରେ ସେମାନେ ସି.ଟି. ପାସ୍ କରିବେ । ଯେଉଁମାନେ ତାହା ନ କରିବେ, ସେମାନଙ୍କୁ ଚାକିରିରୁ ବରଖାସ୍ତ କରାଯିବ । ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ମଧ୍ୟ ଆମ ସାଙ୍ଗରେ ଥିଲେ । ତାଙ୍କୁ କହିଲି ଜିଲ୍ଲାସ୍ତରୀୟ ନିଯୁକ୍ତି ପରେ ଅନ୍ୟ ଶୂନ୍ୟସ୍ଥାନ ପାଇଁ ରାଜ୍ୟସ୍ତରୀୟ ପ୍ରାର୍ଥୀମାନଙ୍କୁ ନିଯୁକ୍ତି ଦେବେ । ତାହାହିଁ କରାଗଲା । ଏହାର ୪/୫ ମାସ ପରେ ମୁଁ କୋରାପୁଟ୍ ଗସ୍ତରେ ଯାଇ ସୁନାବେଡ଼ା ଗେଷ୍ଟ ହାଉସ୍‌ରେ ଥିଲି । ୫/୬ ଜଣ ପ୍ରାଥମିକ ଶିକ୍ଷକ ମୋତେ ଦେଖାକରି କହିଥିଲେ- ସେମାନେ ଉପକୂଳବର୍ତ୍ତୀ ଜିଲ୍ଲାର ପିଲା । ୨/୩ ମାସ ତଳେ କୋରାପୁଟରେ ନିଯୁକ୍ତି ପାଇଛନ୍ତି । କିନ୍ତୁ କୋରାପୁଟ ତାଙ୍କୁ ସୁହାଉ ନାହିଁ । ସେମାନଙ୍କୁ ସେମାନଙ୍କ ନିଜ ଜିଲ୍ଲାକୁ ବଦଳି କରିବା ଥିଲା ସେମାନଙ୍କ ଅନୁରୋଧ । ତାହାହେବା ସମ୍ଭବ ନୁହେଁ ବୋଲି ମୁଁ ସେମାନଙ୍କୁ କହିଥିଲି ।

ସେ ସମୟରେ ଜିଲ୍ଲାପାଳଙ୍କ ଦ୍ୱାରା ଏକ ଭଲ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ତାହା ହେଲା- Service at Door Steps. ସବୁ ବିଭାଗର ଜିଲ୍ଲାସ୍ତରୀୟ ଅଫିସରମାନେ ଏକତ୍ର ଭାବେ ଲୋକମାନଙ୍କର ବିଭିନ୍ନ ସମସ୍ୟାର ସମାଧାନ କରିବା ।

କୋରାପୁଟ ସେତେବେଳେ ଥିଲା ଏକ ଶାନ୍ତି ପରିବେଶର ଜିଲ୍ଲା । ବିଭିନ୍ନ ବ୍ଲକ୍‌କୁ ମୁଁ ଯାଇଛି । କେବଳ ଶିକ୍ଷା ସମସ୍ୟା ନୁହେଁ, ବିଭିନ୍ନ ସମସ୍ୟା ଅନୁଧ୍ୟାନ କରିଛି ଏବଂ ସେସବୁର ସମାଧାନ ପାଇଁ ଉଦ୍ୟମ କରିଛି ।

ଦିନକର ଏକ ମଜା କଥା ଆଜି ମୋର ମନେପଡୁଛି । ରାୟଗଡ଼ାର କାମ ସାରି ମୁଁ କୋରାପୁଟ ଫେରୁଥିଲି । ସାଙ୍ଗରେ ଥିଲେ ଅତିରିକ୍ତ ଜିଲ୍ଲାପାଳ । ଅଧାବାଟ ଆସିସାରିବା ପରେ ସେ ମୋତେ କହିଲେ- "ସାର୍ ! ଆଉ ଅଳ୍ପବାଟ ଗଲାପରେ ମୁଁ ଆପଣଙ୍କୁ ଗୋଟେ ଅଦ୍ଭୁତ ଦୃଶ୍ୟ ଦେଖାଇବି ।"

ଅନ୍ଧାର ରାତିରେ କି ଦୃଶ୍ୟ ଦେଖାଇବେ ? ମନରେ ମୋର ଉତ୍କଣ୍ଠା । ଗାଡ଼ି ଚାଲିଥାଏ । ଆଉ କିଛିବାଟ ଗଲାପରେ ସେ କହିଲେ- "ସାର୍ ସଡ଼କର ଦକ୍ଷିଣ ଆଡ଼କୁ ଚାହାନ୍ତୁ ।"

ମୁଁ ଚାହିଁଲି । ସେ ଦୃଶ୍ୟ ଦେଖି ଅଭିଭୂତ ହେଲି । ବିଭିନ୍ନ ଉତ୍ସବରେ ଛୋଟ ଛୋଟ ଇଲେକ୍‌ଟ୍ରିକ୍ ବଲ୍‌ବ ଜଳିଲେ ଯେଉଁ ଦୃଶ୍ୟ ଦେଖାଯାଏ, ଠିକ୍ ସେମିତି

ଦୃଶ୍ୟମାନ ହେଉଥିଲା ଦୁଇଟି ବିରାଟ ବୃକ୍ଷ । ସେ କହିଲେ- "ଏହି ଯେଉଁ ଆଲୁଅ ଦେଖୁଛନ୍ତି ତାହା ହେଉଛି ଜୁଳୁଜୁଳିଆ ପୋକଙ୍କ ଆଲୁଅ । ଏ ଦୁଇଟି ଗଛରେ ବର୍ଷ ବର୍ଷ ଧରି ଜୁଳୁଜୁଳିଆ ପୋକମାନଙ୍କର ଏ ଲୀଳା ଆମେ ଦେଖୁଛୁ ।"

କୋରାପୁଟରୁ ରାୟଗଡ଼ା ଯିବା ବାଟରେ ଗଙ୍ଗାଧର ହାଇସ୍କୁଲ୍ ବୋଲି ଗୋଟାଏ ହାଇସ୍କୁଲ ଅଛି । ଜାଣିବାକୁ ପାଇଲି ୧୯୮୦ ମସିହାରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥିବା ଗଙ୍ଗାଧର ମହାପାତ୍ରଙ୍କ ନାମରେ ଏହା ନାମିତ । ମୋର ଶିକ୍ଷାମନ୍ତ୍ରିତ୍ୱ କାଳରେ ବହୁ ସ୍ଥାନରେ ମୋ ନାମରେ ସ୍କୁଲ କଲେଜ ନାମିତ କରିବା ପାଇଁ ଉଦ୍ୟୋକ୍ତାମାନେ ଉଦ୍ୟମ କରୁଥିବାବେଳେ ଏହା ନ କରିବା ପାଇଁ ମୁଁ ସେମାନଙ୍କୁ କହିଚି । ଏଭଳି ଅନେକ ଘଟଣା ବି ଘଟିଚି । ଏଠାରେ ତନ୍ମଧ୍ୟରୁ ଗୋଟିଏ ଘଟଣା ମୁଁ ଉଲ୍ଲେଖ କରୁଛି ।

ମୋର ରାଷ୍ଟ୍ରମନ୍ତ୍ରୀ ଥିଲେ ଫ୍ରିଡା ଟପ୍‌ନୋ । ରାଉରକେଲା ସଂଲଗ୍ନ ରଘୁନାଥପଲ୍ଲୀ ନିର୍ବାଚନ ମଣ୍ଡଳୀରୁ ସେ ଜୟଯୁକ୍ତା ହୋଇଥିଲେ ! ସେଠାରେ ଏକ ମହିଳା ମହାବିଦ୍ୟାଳୟ ହେବା ପାଇଁ ସ୍ଥିର କରାଯାଇଥିଲା । ତାହାକୁ ଉଦ୍‌ଘାଟନ କରିବା ପାଇଁ ସେ ମୋତେ ନିମନ୍ତ୍ରଣ କରିଥିଲେ । ନିର୍ଦ୍ଧାରିତ ଦିନରେ ମୁଁ ଗଲି । ସେଠାରେ ଦେଖିଲି ମହାବିଦ୍ୟାଳୟର ନାମ ଲେଖାଯାଇଛି "ପ୍ରଧୁନାଥ ମହିଳା ମହାବିଦ୍ୟାଳୟ" । ଏହି ନାମ ମାର୍ବଲ ପଥରରେ ଲେଖାଯାଇଛି । ମୁଁ ଉଦ୍‌ଘାଟକ, ଫ୍ରିଡା ଟପ୍‌ନୋ-ସଭାପତି । ଏହା ଦେଖି ମୁଁ କହିଲି- "ଏହାକୁ ମୋ ନାମରେ ନାମିତ କରନ୍ତୁ ନାହିଁ । ସେପରି କରିବା ମୁଁ ଚାହେଁନାହିଁ ।

ମୋର ଏଇକଥା ଶୁଣି ସେମାନେ ଅଡୁଆରେ ପଡ଼ିଲେ ।

ମୁଁ କହିଲି- "ସେ ନାମଫଳକକୁ ବ୍ୟବହାର କରନ୍ତୁ ନାହିଁ । ମୁଁ ଉଦ୍‌ଘାଟନ କରିବି । କଲେଜର ନାମ ରହିବ "ଇନ୍ଦିରା ପ୍ରିୟଦର୍ଶିନୀ ମହିଳା ମହାବିଦ୍ୟାଳୟ । ଏହି ନାମରେ ଫଳକ ପରେ ଲଗାଇଦେବେ ।"

ପରେ ତାହାହିଁ ହେଲା ।

ପୁଣି ମୁଁ ଫେରୁଚି କୋରାପୁଟକୁ । ଥରେ ନନ୍ଦପୁର ବ୍ଲକ୍‌ରୁ ଫେରୁଥିଲୁ । ନନ୍ଦପୁର ଏକ ପ୍ରସିଦ୍ଧ ସ୍ଥାନ । ଅତୀତରେ ଜୟପୁର ରାଜାଙ୍କର ରାଜଧାନୀ ଥିଲା ନନ୍ଦପୁର । ରାଜା ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ ଅନୁରୂପ ସିଂହାସନ । ଅନେକ ପର୍ଯ୍ୟଟକ ଏହା ଦେଖିବାକୁ ଯାଆନ୍ତି । ନନ୍ଦପୁର ରାସ୍ତାରେ ଗୋଟିଏ ନାଳ ପଡ଼େ,

ଯାହା ଉପରେ ସେତେବେଳେ ପୋଲ ନଥିଲା । ବର୍ଷା ହୋଇଗଲେ ନାଳରେ ବେଶୀ ପାଣି ହୋଇଯାଏ । ନାଳ ଅତିକ୍ରମ କରିବାକୁ ଗାଡ଼ିମାନଙ୍କୁ କିଛି ସମୟ ଅପେକ୍ଷା କରିବାକୁ ପଡ଼େ । ଆମେ ସେଦିନ ଫେରୁଥିବାବେଳେ ବର୍ଷା ହୋଇଥିଲା । ତେଣୁ ଆମେ କିଛି ସମୟ ଅପେକ୍ଷା କରି ତା'ପରେ ନାଳ ପାରିହେଲୁ । ଦେଖିଲୁ ଆମ ଆଗେ ଆଗେ ଦୁଇଟି ଭାଲୁ ଓ ସେମାନଙ୍କର ଦୁଇଟି ଛୁଆ ଧୀର ଗତିରେ ଚାଲିଛନ୍ତି । ଆମ ଗାଡ଼ିର ଗତି ବି ଖୁବ୍ ମନ୍ଥର ହେଲା । ପ୍ରାୟ ଗୋଟାଏ କିଲୋମିଟର ବାଟ ସେମାନେ ଆମ ଆଗେ ଆଗେ ଚାଲି ତା'ପରେ ଜଂଗଲ ଭିତରେ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ଆମ ଗାଡ଼ି ସ୍ୱାଭାବିକ ଗତିରେ ଚାଲିଲା ।

କୋରାପୁଟ୍ ଦର୍ଶନୀୟ ସ୍ଥାନର ଗନ୍ତାଘର । ଥରେ ଡୁଡୁମା ଜଳପ୍ରପାତ ଦେଖିବାକୁ ଯାଇଥିଲୁ । ପର୍ବତର ପ୍ରାୟ ୧୭୫ ମିଟର ଉଚ୍ଚତାରୁ ତଳକୁ ଝରୁଛି ଜଳ । ଏହି ସ୍ଥାନକୁ ମତ୍ସ୍ୟତୀର୍ଥ ବୋଲି କୁହାଯାଏ । ଡୁଡୁମାରୁ ବଣ୍ଡା ପାହାଡ଼କୁ ଗଲୁ । ଏହି ବଣ୍ଡା ପାହାଡ଼ ପାଖରେ ବଣ୍ଡା ଆଦିବାସୀମାନେ ବାସ କରନ୍ତି । ସେମାନେ ଶିକ୍ଷାଠାରୁ ବହୁତ ଦୂରରେ । ଦେଖିଲୁ ପୁରୁଷ-ସ୍ତ୍ରୀ ଉଭୟ କୌପୀନ୍ ପରିଧାନ କରନ୍ତି । ଆମ ସହିତ ଦୁଇଟି ଗାଡ଼ି ଥିଲା । ଏମ୍ବାସେଡର ଗାଡ଼ିରେ ମୁଁ ଓ ଜିଲ୍ଲାପାଳ । ମୋ ବ୍ୟକ୍ତିଗତ ସଚିବ ଓ ଦେହରକ୍ଷୀ । ଆମ ଆଗେ ଆଗେ ଯାଉଥିବା ଗାଡ଼ିରେ ଜିଲ୍ଲାପାଳଙ୍କ ବ୍ୟକ୍ତିଗତ ସହାୟକ ଓ କିଛି ପୋଲିସ ଥିଲେ । ଏହି ବଣ୍ଡା ପାହାଡ଼ ପାଦଦେଶରେ ଥିବା ଗୋଟାଏ ଗାଆଁରେ ଆମେ ପହଞ୍ଚିଲୁ । ଦେଖିଲୁ ଆମ ଗାଡ଼ିକୁ ଦେଖି ଗାଆଁର ପୁରୁଷ-ସ୍ତ୍ରୀ ଓ ପିଲାମାନେ ଗାଆଁ ଛାଡ଼ି ଜଙ୍ଗଲ ଭିତରକୁ ଦଉଡୁଛନ୍ତି । କିଛି ବୁଢ଼ାବୁଢ଼ୀଙ୍କୁ ଛାଡ଼ି ଗାଆଁ ଜନଶୂନ୍ୟ । ଆମେ ଗାଡ଼ିରୁ ଓହ୍ଲାଇ ପାଖରେ ଥିବା ଗୋଟେ ଘରର ପିଣ୍ଡାରେ ଜଣେ ବୁଢ଼ା ବସିଥିବାର ଦେଖିଲୁ । ମୁଁ ଯାଇ ତାଙ୍କରି ପାଖରେ ବସିଗଲି । ଜିଲ୍ଲାପାଳଙ୍କ ସହାୟକ ତାଙ୍କୁ ବୁଝାଇଦେଲେ ଆମେ କିଏ ଓ ଆମେ ତାଙ୍କର କିଛି କ୍ଷତି କରିବାକୁ ଆସିନାହୁଁ । ପଳାଇଯାଇଥିବା ଗାଆଁର ସବୁ ଲୋକଙ୍କୁ ଡାକିଆଣିବାକୁ ସେ କହିଲେ । ବୁଢ଼ା ନିଜେ ଯାଇ ଅଧଘଣ୍ଟାଏ ଭିତରେ ସବୁ ଲୋକଙ୍କୁ ଡାକିଆଣିଲେ । ଘର ଆଗ ଦୂଇଁରେ ଆମେ ବସିଲୁ । ଲୋକଙ୍କୁ ପାଠ ପଢ଼ିବା ପାଇଁ ଆମେ ବୁଝାଇଲୁ । ଯା'ହେଉ ସେଇ ବୁଢ଼ାଙ୍କ ପିଣ୍ଡାରେ ଗୋଟିଏ ପ୍ରାଥମିକ ସ୍କୁଲ ଆରମ୍ଭ କରାଯିବାର

ସ୍ଥିର ହେଲା । ୧୫ ଦିନ ଭିତରେ ସେଇ ସ୍କୁଲ୍‌ଟି ଆରମ୍ଭ କରାଗଲା । ପରେ ସେଠାରେ ସ୍କୁଲର ସ୍ଥାୟୀ ଗୃହ ପାଇଁ ଆବଶ୍ୟକୀୟ ଅର୍ଥ ସରକାରଙ୍କ ତରଫରୁ ମଞ୍ଜୁର କରାଗଲା ।

ଜିଲ୍ଲାସ୍ଥ ଡୁମୁରିପୁଟ୍‌ଠାରେ ଏକ ବିଶାଳକାୟ ହନୁମାନ ମୂର୍ତ୍ତି । କୁହାଯାଏ ଏହା ଓଡ଼ିଶାର ସବୁଠାରୁ ଉଚ୍ଚ ମୂର୍ତ୍ତି ।

ନବରଙ୍ଗପୁରରୁ ୧୦/୧୨ କିଲୋମିଟର ଦୂରରେ ଥିବା ପାପଡ଼ାହାଣ୍ଡି ଇଂରେଜ ଶାସକଙ୍କ ବିରୁଦ୍ଧରେ ହୋଇଥିବା ଭାରତଛାଡ଼ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ସେଠାରେ ସହିଦ୍ ହୋଇଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ହୋଇଛି ସ୍ମୃତିସ୍ତମ୍ଭ । ପାପଡ଼ାହାଣ୍ଡି ହେଉଛି ଏକ ଶୈବପୀଠ । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଏଠାକାର ଶିବ ମନ୍ଦିରରେ ମୁଁ ଯାଇ ପୂଜାର୍ଚ୍ଚନା କରିଥିଲି । ପୋଡ଼ାଗଡ଼ ମଧ୍ୟ ଆଉ ଏକ ଐତିହାସିକ ସ୍ଥାନ । ଏହା ଉମରକୋଟ ବ୍ଲକ୍‌ରେ ଅବସ୍ଥିତ । ଜିଲ୍ଲାପାଳ ରବିନାରାୟଣ ସେନାପତିଙ୍କ ବଦଳି । ଜିଲ୍ଲାପାଳ ହୋଇ ଯାଇଥିଲେ ସତ୍ୟପ୍ରକାଶ ନନ୍ଦ । ସେ ମଧ୍ୟ ମୋ ସହିତ ବିଭିନ୍ନ ବ୍ଲକ୍‌କୁ ଯାଉଥିଲେ ।



# କୋରାପୁଟ ଜୁନ୍ ପହିଲାରେ

ଥରେ ବିଶାଖାପାଟଣା ଦେଇ କୋରାପୁଟ ଯାଉଥିଲି । ଦାମନଯୋଡ଼ି ଛକ ପାଖରେ ପହଞ୍ଚି ଦେଖିଲି ଜଣେ ଯୁବକ ଓ ଜଣେ ଯୁବତୀ ନିଶାସକ୍ତ ହୋଇ ହାତ ଧରାଧରି ହୋଇ ନାଚୁଛନ୍ତି । ସେଦିନଟା ଥିଲା ଜୁନ୍ ମାସର ପହିଲା ତାରିଖ । ଗାଡ଼ି ଅଟକେଇ ତାଙ୍କ ନାଚ ଦେଖିଲି । ମୋ ଦେହରକ୍ଷୀଙ୍କୁ କହିଲି- "ଯାଇ ପଚାର ସେମାନଙ୍କ ନାଆଁ । ଦେହରକ୍ଷୀଙ୍କ କଥା ସେମାନେ ଶୁଣିଲେ ନାହିଁ । ମୋ' ସହିତ ଯାଇଥିବା ମୋ ଅଫିସର୍ ପର୍ଶୁରାମ ଦାସ ତାଙ୍କ ପାଖକୁ ଯାଇ ଖୁବ୍ ବଡ଼ପାଟିରେ କହିଲେ- "ଏ ନାଚ ବନ୍ଦ କର ।" ନାଚ ବନ୍ଦ କରି ଯୁବକଟି ରାସ୍ତା ତଳକୁ ଧାଇଁଲା । ପର୍ଶୁବାବୁ ଯୁବତୀଟିକୁ ପଚାରିଲେ- "ତୋ ଘର କେଉଁଠି ?"

ସଡ଼କର ଅଦୂରରେ ଥିବା ଗୋଟାଏ ଗାଆଁ ଆଡ଼କୁ ହାତ ଦେଖାଇ ସେ କହିଲା- "ହେଇଟି ମୋ ଗାଆଁ ।"

ପର୍ଶୁବାବୁ ପୁଣି ତାକୁ ପଚାରିଲେ- "ତୋ' ନାଆଁ କ'ଣ ?"

ସେ କହିବ କହିବନି ଦ୍ୱନ୍ଦ୍ୱରେ ପଡ଼ି କହିଲା- "ମୋ ନାଆଁ ଖିଳ ସୁଭଦ୍ରା ।"

ଖିଳ ସୁଭଦ୍ରା; ଏଭଳି ନାଆଁ ମୁଁ ଆଗରୁ କେବେ ଶୁଣି ନଥିଲି । ନାଆଁଟା ମୋତେ ବେଶ୍ ଭଲ ଲାଗିଲା । ତା'ପରେ ଆମେ ଯାଇ କୋରାପୁଟ ସର୍କିଟ୍ ହାଉସ୍‌ରେ ପହଞ୍ଚି ଖିଆପିଆ କଲୁ । ଜିଲ୍ଲାପାଳ ଥିଲେ କିନ୍ତୁ ସେଦିନ ମୋ' ପାଇଁ କିଛି କାର୍ଯ୍ୟକ୍ରମ ରଖି ନଥିଲେ । ରାତିରେ ଲେଖାପଢ଼ା କରିବା ମୋର ଅଭ୍ୟାସ । ଭୁବନେଶ୍ୱର ବାହାରେ ଥିଲେ ଫାଇଲ୍ କାମ କିଛି ନଥାଏ । ମୋର ବହୁ ଲେଖା ଭୁବନେଶ୍ୱର ବାହାରେ ମୁଁ ଲେଖିଛି । ସେହିଦିନ ରାତିରେ କୋରାପୁଟ ସର୍କିଟ୍ ହାଉସ୍‌ରେ ମୁଁ ଯେଉଁ କବିତାଟି ଲେଖିଥିଲି ତାହାର ଶୀର୍ଷକ ଥିଲା-



# କୋରାପୁଟ ଜୁନ୍ ପହିଲାରେ

|| ୧ ||

ରାସ୍ତା ଦିପାଖରେ
ବଣ ପାହାଡ଼ ଆଉ
ଝରଣା ଭିତରେ
ମୁଁ ତମକୁ ଦେଖୁଥିଲି ।

ତୁମ ସବୁଜିମାକୁ ଭେଦ କରି
ଆଖି ଦେଖିପାରେ ନାହିଁ ଆକାଶ
ଆଜିର ବାର ତିଥି ସହିତ ମୋ ଅସ୍ତିତ୍ୱ
ସ୍ୱପ୍ନର ରଙ୍ଗବେରଙ୍ଗ ନକ୍ସା ପଛରେ
ଲୁଚିଯାଏ; ମୋଟା ଗଛର ଆଢୁଆଳରେ
ଲୁଚକାଳି ଖେଳେ ଆଲୁଅ ଅନ୍ଧାର ।

ବୃତ୍ତାକାର ସଜା ହେଇଥିବା କନିଅର ଫୁଲ ପରି
ଚିତ୍ରିତ ପରଜା ରମଣୀର ଗୀତ ଆଉ ଉସାଣିଆ ନାଚ
ମହୁଲର ବାସ୍ନାରେ ରାଜପଥ ସ୍ୱର୍ଗ ହିଁ ପାଲଟେ
ଗଛର ପତ୍ରକୁ ଠେଲି ଉଡ଼ିଯାଏ କ୍ଲାନ୍ତିର ଚଢ଼େଇ
ଝିପ୍‌ଝିପ୍ ବର୍ଷାବିନ୍ଦୁ ଟପ୍‌ଟପ୍ ଶବ୍ଦ କରି
ମାଟିର ଛାତିକୁ ଚିରି ପାତାଳକୁ ପଶେ
ଇଚ୍ଛା ହୁଏ ବରଷାରେ ଭିଜିଭିଜି ସେମାନଙ୍କ ସହିତ ନାଚନ୍ତି
ପୁନଶ୍ଚ ବିରକ୍ତିକର ଜୀବନକୁ ଫେରିବାର ଲଗ୍ନ ଭୁଲିଯାନ୍ତି ।

॥ ୨ ॥

ଏଠି ମନଜ୍ୱାଳା ନାହିଁ, ଉତ୍କଣ୍ଠାର ସମୁଦ୍ର ବି ନାହିଁ,
ଏଠିକାର ପୁଅଝିଅ ଦେବତାଙ୍କୁ ବରମାଗେ ନାହିଁ ।
ପ୍ରକୃତିର ଯୌବନରେ ଚନ୍ଦ୍ରମାର କଳଙ୍କ ବି ନାହିଁ,
ଚତୁର୍ଦ୍ଦିଗେ ମନମୃଗ ଏଠି ଖାଲି ବୁଲେ ଧାଇଁ ଧାଇଁ,
ଏଠି ସବୁ ଶବ୍ଦମାନେ ନିଃଶେଷ ହେବା ପୂର୍ବରୁ
ଲମ୍ବିଯା'ନ୍ତି ଧରାରୁ ସ୍ୱର୍ଗକୁ, କାମନାର ଜଳରାଶି
ମନର ଚୌହଦି ଡେଇଁ ବହିଯାଏ କ୍ଷୀର ସମୁଦ୍ରକୁ ।

ମେଘମାନେ ପହାଡ଼ କଣ୍ଠ ଜାବୋଡ଼ି ଯା'ଆସ କରୁଥାନ୍ତି
ନିଜ ନାଭି ମୁକ୍ତ କରି ଆଲିଙ୍ଗନର ବିଚିତ୍ର ଭଙ୍ଗୀରେ
ଲଇଁଷି ପଦରେ ଭାଲୁ ନାଚୁଥାଏ କୁକୁଡ଼ାର କକ୍କ ଧ୍ୱନିରେ
ମୁଣ୍ଡ ଝାଙ୍କି ଯୁବକଟି ପୃଥିବୀକୁ ଭୁଲିଯାଏ
ଧରି ରଖିଳ ସୁଭଦ୍ରାର ହାତ ।

ଚାଳିଶା ଚଷ୍ମାର ଏଠି ନାହିଁ ପ୍ରୟୋଜନ, ଯେହେତୁ
ଏଠି ସବୁ ଦୃଶ୍ୟମାନ, ମଣିଷ ଏକାଠି ହେଲେ
ଅସମୟରେ ବି
ତାହାହୁଏ ନିତ୍ୟ ବାଜିଯାନ୍ତି ।

॥ ୩ ॥

କୋରାପୁଟ ଜୁନ୍ ପହିଲାରେ
ସବୁଠୁ ସୁନ୍ଦର ତୁମେ
ନାଗାବଳୀ, ଇନ୍ଦ୍ରାବତୀ, ବଂଶଧାରା ଇଲାକାରେ
ସୂର୍ଯ୍ୟଚନ୍ଦ୍ର ତାରାର ଛାଇରେ ।



# ଇଣ୍ଡିୟାନ୍ ଅଲିମ୍ପିକ୍ ଏସୋସିଏସନ୍‌ର ନିର୍ବାଚନ

ସେତେବେଳେ ଇଣ୍ଡିୟାନ୍ ଅଲିମ୍ପିକ୍ ଏସୋସିଏସନ୍‌ର ସଭାପତି ଥିଲେ ଶିବାନ୍ତି ଆଦିତ୍ୟନ୍ । ତାଙ୍କର କାର୍ଯ୍ୟକାଳ ପୂରିଯାଉଥିବାରୁ ୧୯୮୮ ମସିହା ନଭେମ୍ବର ତା ୨୭ରିଖରେ ମାନ୍ଦ୍ରାଜ (ଚେନ୍ନାଇ)ଠାରେ ନୂତନ କର୍ମକର୍ତ୍ତା ନିର୍ବାଚନ କରାଯିବାର କାର୍ଯ୍ୟକ୍ରମ ସ୍ଥିର ହେଲା । ପ୍ରତ୍ୟେକ ରାଜ୍ୟର ସଭାପତିମାନେ ମଧ୍ୟ ଏଥିପାଇଁ ଭୋଟ ଦେବେ । ତେଣୁ ମୋତେ ମଧ୍ୟ ମାନ୍ଦ୍ରାଜ ଯିବାକୁ ପଡ଼ିଲା । ତା ୨୪।୧୧।୧୯୮୮ରିଖ ଦିନ ମୁଁ, ସ୍ତ୍ରୀ ଲକ୍ଷ୍ମୀପ୍ରିୟା ଓ ବଡ଼ପୁଅ ଡାକ୍ତର ବିଶ୍ୱଜିତ୍ ଦିଲ୍ଲୀ ଗଲୁ । ସେଠାରେ ଆନ୍ତଃରାଷ୍ଟ୍ରିୟ ବାଣିଜ୍ୟ ମେଳା ବୁଲି ଦେଖିଲୁ । ପରଦିନ ସକାଳେ ହରିଆନାର ମହେନ୍ଦ୍ରଗଡ଼ ଗଲୁ । ମୋ ସାନଝିଅ ସୁଚିତ୍ରା ଓ ଜ୍ୱାଇଁ ଅଶୋକ କୁମାର ତ୍ରିପାଠୀ ସେଠାରେ ରହୁଥିଲେ । ଅଶୋକ ପଞ୍ଜାବ ନେସ୍‌ନେଲ୍ ବେଙ୍କରେ ଚାକିରି କରନ୍ତି । ସେଠାରୁ ତା ୨୬ରିଖ ଦିଲ୍ଲୀ ଫେରି ଏୟାର୍‌ବସ୍‌ରେ ମାନ୍ଦ୍ରାଜ ଗଲୁ । ପି.ଭି. ନରସିଂହରାଓ ମଧ୍ୟ ସେଇ ବିମାନରେ ହାଇଦ୍ରାବାଦ ଯାଉଥିଲେ । ଅନ୍ୟ ଯେଉଁମାନେ ସେହି ବିମାନରେ ଯାଉଥିଲେ ସେମାନେ ହେଲେ କାମାକ୍ଷାପ୍ରସାଦ ସିଂହଦେଓ, ହିମାଚଳପ୍ରଦେଶର କ୍ରୀଡ଼ାମନ୍ତ୍ରୀ ଓ ବାଚସ୍ପତି । ବାଚସ୍ପତି ଜଣେ ମହିଳା । ଏମାନେ ମଧ୍ୟ ଭୋଟ୍‌ରେ ଭାଗନେବାକୁ ଯାଉଥିଲେ ।

ଇଣ୍ଡିୟାନ୍ ଅଲିମ୍ପିକ୍ ଏସୋସିଏସନ୍ ମୋ ରହିବା ପାଇଁ ଚୋଲା ସେରିଟନ୍ ହୋଟେଲରେ ବ୍ୟବସ୍ଥା କରିଥିଲା । ଏହା ଏକ ପାଞ୍ଚତାରକା ହୋଟେଲ । ତାମିଲନାଡୁ ସରକାର ମଧ୍ୟ ହୋଟେଲ୍ ପ୍ରେସିଡେଣ୍ଟ୍‌ରେ ରହିବା ପାଇଁ ବ୍ୟବସ୍ଥା କରିଥିଲେ । ଆମେ ହୋଟେଲ୍ ପ୍ରେସିଡେଣ୍ଟ୍‌କୁ ଯାଇ ୪୭୧ ନମ୍ବର କୋଠରିରେ ରହିଲୁ । ଏହା ଏକ ଚାରିତାରକା ହୋଟେଲ । ଆଶୀର୍ବାଦ ନ ଆସିବାରୁ ଆନନ୍ଦ ନାଏକ ଯାଇଥିଲା । ସେ ବାର୍କ ସେରିଟନ୍ ହୋଟେଲରେ ରହିଥିଲା । ସେଇଠି ମିଟିଂ ମଧ୍ୟ

ହେଲା । ସେଇଠି ସୁରେଶ କାଲ୍‌ମାଡ଼ିଙ୍କ ସହିତ ଦେଖାହେଲା । ତାଙ୍କ ସପକ୍ଷରେ ଭୋଟ୍ ଦେବାକୁ କହିଲେ । କାମାକ୍ଷା ପ୍ରସାଦ ସିଂହଦେଓ ଆଦିତ୍ୟନ୍ ଓ ରଣଧୀର ସିଂହଙ୍କ ସପକ୍ଷରେ ଥିଲେ । ସିକ୍ରେଟ୍ ବେଲ୍‌ଟ୍‌ରେ ଭୋଟ ହେଲା । ଆଦିତ୍ୟନ୍ ୧୧୯ ଭୋଟରୁ ୬୭ ଓ କାଲ୍‌ମାଡ଼ି ୫୨ ପାଇଲେ । ସାଧାରଣ ସଂପାଦକ ପାଇଁ ରଣଧୀର ସିଂହ ୭୯ ଓ ସି.ଏଲ୍ ମେହଟା ୩୭ ଖଣ୍ଡ ଭୋଟ ପାଇଲେ । ସଭାପତିଙ୍କୁ ଦାୟିତ୍ୱ ଦିଆଗଲା କାର୍ଯ୍ୟକାରୀ କମିଟି ଗଠନ କରିବା ପାଇଁ । ହିମାଚଳ ପ୍ରଦେଶର କ୍ରୀଡ଼ାମନ୍ତ୍ରୀ ଓ କାମାକ୍ଷା ପ୍ରସାଦ ସିଂହଦେଓ ଉପସଭାପତି ଓ ଶୈଳେନ୍ ରାୟ କାର୍ଯ୍ୟକାରୀ କମିଟିର ସଭ୍ୟ ରହିଲେ ।



# ଆଉ କିଛି ସ୍ମୃତି

ସକାଳ ୭ରେ ପ୍ରେସିଡେଣ୍ଟ ହୋଟେଲ ଛାଡ଼ି ଆନନ୍ଦ ନାଏକ ସାଙ୍ଗରେ ଯାତ୍ରାରମ୍ଭ । ଚିଡ଼ିଆଖାନା, ପକ୍ଷୀତୀର୍ଥମ୍ ମହାବଳୀପୁରମ୍ ଦେଖିଲୁ । ମହାବଳୀପୁରମ୍ ଡାକବଙ୍ଗଳାରେ ଖାଇଲୁ । ମହାବଳୀପୁରମ୍ ପଥର ଖୋଦେଇ, ପଥର ମୂର୍ତ୍ତି ନିର୍ମାଣରେ ପ୍ରସିଦ୍ଧ । ଉପରଓଳି ୪ଟା ବେଳେ ଡାକବଙ୍ଗଳାରୁ ଗୋଲ୍‌ଡେନ୍ ବିଚ୍ (Golden Beach) ଗଲୁ । ଏ ସ୍ଥାନ ମାନ୍ଦ୍ରାଜରୁ ୨୫ କିଲୋମିଟର ଦୂର । ମେନେଜର ଆମକୁ ସ୍ୱାଗତ ଜଣେଇ ବିଭିନ୍ନ ସ୍ଥାନକୁ ନେଲେ । 'ଭୁଲିହୁଏନା' ଚଳଚ୍ଚିତ୍ରର ନାଚସୁଟିଂର ସ୍ଥାନ ଦେଖିଲୁ । ସେ ସ୍ଥାନର ଫଟୋ ଓ ଆହୁରି ଅନେକ ଫଟୋ ସେଠି ନେଲୁ । ସେଠାକାର ପରିଦର୍ଶନ ଖାତାରେ ମୁଁ ମୋର ମନ୍ତବ୍ୟ ଲେଖିଲି । ସେଠାରୁ ଫେରି ହୋଟେଲ ପ୍ରେସିଡେଣ୍ଟରେ ସନ୍ଧ୍ୟା ୬ଟାରେ ପହଞ୍ଚିଲୁ । ସେଦିନ ମେରିନା ବିଚ୍‌ରେ ପ୍ରଧାନମନ୍ତ୍ରୀଙ୍କ ମିଟିଂ ଥିଲା । ମାନ୍ଦ୍ରାଜ ସହର କଂଗ୍ରେସ ପତାକାରେ ଭରପୂର । ରାତି ୮ଟାରେ ବାହାରିଲୁ ତିରୁପତି । ତିରୁପତି ପହଞ୍ଚିଲୁ ରାତି ୧୨-୧୫ରେ । ଭି.ଆଇ.ପି. କଟେଜ୍‌ର ୧୩ ନମ୍ବର କୋଠରିରେ ରହିଲୁ । ତଳୁ ୧୮ କିଲୋମିଟର ଘାଟି ରାସ୍ତାରେ ପାହାଡ଼ ଉପରକୁ ଯିବାକୁ ହେଲା । ଆମ କଟେଜ୍‌ର ଭଡ଼ା ଦିନକୁ ଟ୧୦୦.୦୦ । ଆମେ ଦେଲୁ । ରାତି ୪ଟା ବେଳେ ତିରୁପତି ମନ୍ଦିରକୁ ଗଲୁ 'ସୁପ୍ରଭାତମ୍'ରେ ଯୋଗଦେବା ପାଇଁ । ସେଥିପାଇଁ ପ୍ରତ୍ୟେକଙ୍କୁ ଟ୫୦.୦୦ ଲେଖାଏଁ ଦେବାକୁ ପଡ଼ିଲା । ଆମେ ୫ ଜଣ ଥିଲୁ । ଦେହରକ୍ଷୀ ଭର୍ଗିଜ, ଡ୍ରାଇଭର ଓ ଆମେ । ମନ୍ଦିର ଲୋକେ ଆମକୁ ଭଲରେ ବିଅଁଙ୍କ ଦର୍ଶନ କରାଇଦେଲେ । 'ସୁପ୍ରଭାତମ୍' ପରେ ୪୫ ମିନିଟ୍ ଅର୍ଚ୍ଚନା-ଟିକେଟ୍ ଜଣପିଛା ଟ୧୦୦.୦୦ । ତା'ପରେ ଛ'ଟାରୁ Special ଦର୍ଶନ । ଟିକେଟ୍ ଜଣପିଛା ଟ୨୫.୦୦ । ତିରୁପତି ମନ୍ଦିରରେ ବିନା ଶୁଳ୍କରେ ଦର୍ଶନ ମଧ୍ୟ

ଅଛି । କିନ୍ତୁ ଏତେ ଭିଡ଼ ଯେ ଯିବା ସମ୍ଭବ ହେଲା ନାହିଁ । ତିରୁପତି ତଳ ସହରର ନାମ । ଦିଅଁଙ୍କ ମନ୍ଦିର ପାହାଡ଼ ଉପରେ । ସେ ପାହାଡ଼ର ନାମ ତିରୁବାଲି । ରହିବା ପାଇଁ ବହୁତ ଘର ଅଛି । ଭି.ଆଇ.ପି.ମାନଙ୍କ ରହିବା ପାଇଁ ଶତାଧିକ ଘର ଅଛି । ସେସବୁ ଘର 'ଭେଙ୍କଟେଶ୍ୱର'ଙ୍କ ନାମରେ ନାମିତ । ଏକ ଅତିଥିଭବନ ଅଛି । ନାଆଁ ତାର 'ପଦ୍ମାବତୀ' । ଆମେ ପରଦିନ ସକାଳ ୭ଟାରେ କାଞ୍ଚିପୁରମ୍ ଦେଇ ମାନ୍ଦ୍ରାଜ ଅଭିମୁଖେ ଯାତ୍ରା କଲୁ । କାଂଚିପୁରମ୍‌ରେ କାମାକ୍ଷୀ ମନ୍ଦିର ଗଲୁ । ସେଠାରେ 'ଶଙ୍କରାଚାର୍ଯ୍ୟ' ନାମିତ ଜଣେ ବୃଦ୍ଧଙ୍କୁ ଦେଖିଲୁ । ସିଲ୍‌କ ଶାଢ଼ୀ ପାଇଁ କାଂଚିପୁରମ୍ ପ୍ରସିଦ୍ଧ । ସେଠାରୁ ଫେରି ଅପରାହ୍ଣ ୨/୩୦ ମିନିଟ୍‌ରେ 'ପ୍ରେସିଡେଣ୍ଟ' ହୋଟେଲରେ ପହଞ୍ଚିଲୁ ଏବଂ ମଧ୍ୟାହ୍ନ ଭୋଜନ କଲୁ । ଅପରାହ୍ଣ ୫ଟାରେ ମୋ ସ୍ତ୍ରୀ ଏବଂ ପୁଅ ବିଶ୍ୱଜିତ୍ କିଛି କିଣାକିଣି କରିବା ପାଇଁ ବଜାର ଗଲେ ।

୩୦।୧୧।୮୮ରେ ମାନ୍ଦ୍ରାଜ ବିମାନବନ୍ଦରରୁ ଉଡ଼ାଜାହାଜରେ ହାଇଦ୍ରାବାଦ ଆସିଲୁ । ବିମାନବନ୍ଦରରୁ ଉଡ଼ାଜାହାଜ ଛାଡ଼ିଲା ସକାଳ ୧୦.୧୫ ମିନିଟ୍‌ରେ । ହାଇଦ୍ରାବାଦ ପହଞ୍ଚିଲା ୧୧-୧୫ ମିନିଟ୍‌ରେ । ସେଠାରେ ସାଲାରଜଙ୍ଗ ମିଉଜିୟମ୍, ନିଜାମ କୋଠା ପ୍ରଭୃତି ଦେଖିଲୁ । ଉପରଓଳି ପାହାଡ଼ ଉପରେ ଥିବା ବିରଳା ମନ୍ଦିରକୁ ଗଲୁ ଓ ଭେଙ୍କଟେଶ୍ୱର ମୂର୍ତ୍ତି ଦର୍ଶନ କଲୁ । ସେଠାରେ ମଧ୍ୟ ଗ୍ରୀନ୍‌ଲେଣ୍ଡ୍ ଅତିଥିଭବନରେ ରହିଲୁ । ସେହିଦିନ ରାତିରେ 'ନିଜାମ' କବିତା ଲେଖିଥିଲି ଯାହା ୧୯୮୯ ଜାନୁଆରି 'ଗୋକର୍ଣ୍ଣିକା' ପତ୍ରିକାରେ ପ୍ରକାଶ ପାଇଥିଲା । ସେହି କବିତାଟିକୁ ଏଠାରେ ପ୍ରଦାନ କରୁଛି ।

## ନିଜାମ

ମେଘବର୍ଣ୍ଣା ଆକାଶରେ
ବୃକ୍ଷଶିକ୍ଷା ମିନାର ଚୂଡ଼ାରେ
ଭାଂଗିଗଲା ତୁମ ସ୍ୱପ୍ନ
କୋଟର ପାଲଟିଥିବା
ବେଗମ୍‌ଙ୍କ ନିଷ୍ପ୍ରଭ ଆଖିରେ ।
ତୁମରି ପଞ୍ଜରାହାଡ଼
ଶୁଖି ଶୁଖି ଚୂନା ହେଲା,

ତୁମ ସବୁ ଇତିହାସ
ହଜିଗଲା କାଳର ବକ୍ଷରେ ।

ଏମିତି ନଥିଲା ଆଗେ
ତମେ ଥିଲ ସର୍ବେସର୍ବା
ନିଜ ଇଲାକାରେ
ତୁମରି ଇଙ୍ଗିତ ଥିଲା
ଖୋଦାର ପରୱାନା,
ଇଚ୍ଛାକୁ ପ୍ରକଟ କରି
ତୁମ ଆଖି ଭାଷା ଥିଲା
ଆଲ୍ଲା ମେହେରବାନି ।

ତୁମେ ହସୁଥିଲେ
ହସୁଥିଲା ସର୍ବରାଜ୍ୟ
ଦୁଃଖ ଆଉ ଯନ୍ତଣା ପାଶୋରି
ମସ୍‌ଜିଦ୍ ଆସ୍‌ମାନ୍ ଛୁଆଁ
ଗମ୍ବୁଜରୁ ଶୁଭୁଥିଲା
'ଆଲ୍ଲାହୋ ଅକ୍‌ବର'
ଆଜି କିନ୍ତୁ
ନିର୍ବାକ ନିସ୍ତେଜ ତୁମେ
ଭାଷାହୀନ ସ୍ମୃତିର ଶାମୁକା
ଛାତଭଙ୍ଗା ମହଲରେ
ଚିକ୍‌ଚିକ୍ କରୁଥିବା
ସୂର୍ଯ୍ୟଛୁଆଁ ପୁଳାଏ ବାଲୁକା ।



# ଆବୁ ପର୍ବତ ଯାତ୍ରା

ପ୍ରଜାପିତା ବ୍ରହ୍ମାକୁମାରୀ ବିଶ୍ୱବିଦ୍ୟାଳୟ ମୁଖ୍ୟଦପ୍ତର ରାଜସ୍ଥାନର ଆବୁ ପର୍ବତ ଉପରେ ଅବସ୍ଥିତ । ଆରାବଳି ପର୍ବତମାଳାର ଏକ ଅଂଶ ହେଉଛି ଆବୁ ପର୍ବତ । ସେମାନଙ୍କର ବିଭିନ୍ନ ରାଜ୍ୟରେ ମଧ୍ୟ ଶାଖାମାନ ରହିଅଛି । ସେମାନଙ୍କର କଟକ ଶାଖାର ଏକ ଆଲୋଚନା ଚକ୍ରକୁ ମୋତେ ଡାକିଥିଲେ । ପୁରୀରେ ଥିବା ଭଉଣୀ ନିରୂପମା ଭୁବନେଶ୍ୱର ଆସି ମୋତେ କଟକ ନେଇଯାଇଥିଲେ ।

୧୯୮୯ ମସିହା ମେ ମାସରେ ଆବୁ ପର୍ବତରେ ଅନୁଷ୍ଠିତ ହେଉଥିବା ଶିକ୍ଷାବିତ୍‌ମାନଙ୍କର ଏକ ସମ୍ମିଳନୀକୁ ଉଦ୍‌ଘାଟନ କରିବା ପାଇଁ ସେମାନେ ମୋତେ ଡାକିଥିଲେ । ୨୫।୫।୧୯୮୯ ତାରିଖରେ ଉଡ଼ାଜାହାଜ ଯୋଗେ ମୁଁ, ମୋ ସ୍ତ୍ରୀ ଲକ୍ଷ୍ମୀପ୍ରିୟା ଓ ମୋ ଅଫିସ୍‌ର ଟାଇପିଷ୍ଟ ରବି ମହାପାତ୍ର ଦିଲ୍ଲୀ ଯାଇ ସେହିଦିନ ରାତି ଦଶଟାରେ ପୁରୁଣା ଦିଲ୍ଲୀ ଷ୍ଟେସନରୁ ଅହମ୍ମଦାବାଦ ଯାଉଥିବା ମେଲ୍‌ରେ ଆବୁରୋଡ ଗଲୁ । ସାଙ୍ଗରେ ଥିଲେ ଭଉଣୀ ନିରୂପମା । ମୋ ସାନଭାଇଙ୍କ ଅଶୋକକୁମାର ତ୍ରିପାଠୀ ସେତେବେଳେ ହରିଆନା ରାଜ୍ୟର ମହେନ୍ଦ୍ରଗଡ଼ରେ ପଞ୍ଜାବ ନେସ୍‌ନେଲ୍ ବେଙ୍କ୍‌ରେ ଅଫିସର୍ ଥିଲେ । ତାଙ୍କୁ ବିଭା ହେଇଥିବା ମୋ ସାନଝିଅ ସୁଚିତ୍ରା ମଧ୍ୟ ମହେନ୍ଦ୍ରଗଡ଼ରେ ରହୁଥିଲା । ଝିଅଜ୍ୱାଇଁ ମଧ୍ୟ ଦିଲ୍ଲୀ ଆସି ଆମ ସାଙ୍ଗରେ ଗଲେ । ତା ୨୬।୫।୧୯୮୯ରିଖ ଉପରଓଳି ୪ଟା ବେଳେ ଆବୁରୋଡ଼ ଷ୍ଟେସନରେ ପହଞ୍ଚିଲୁ । ଷ୍ଟେସନରେ ଈଶ୍ୱରୀୟ ପ୍ରଜାପତି ବିଶ୍ୱବିଦ୍ୟାଳୟର ଗାଡ଼ି ଥିଲା । ସ୍ଥାନୀୟ ଏସ୍.ଡି.ଓ. ରାଜସ୍ଥାନ ସରକାରଙ୍କର ଏକ ଗାଡ଼ି ନେଇ ଆମ ଅପେକ୍ଷାରେ ମଧ୍ୟ ଥିଲେ । ଷ୍ଟେସନ୍‌ରୁ ଆବୁପାହାଡ଼ ପ୍ରାୟ ୩୦/୩୨ କିଲୋମିଟର । ସେଠାରେ ପହଞ୍ଚି ସର୍କିଟ୍ ହାଉସ୍‌ରେ ଚାହା ଖାଇ ପ୍ରଜାପିତା ବ୍ରହ୍ମକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟକୁ ଗଲୁ । ସେମାନେ ଆମକୁ ସଭାକକ୍ଷକୁ

ନେଲେ । ସଭା କକ୍ଷରେ ୩୦୦୦ ଲୋକ ବସିପାରିବାର ବ୍ୟବସ୍ଥା ଅଛି । ସମ୍ମିଳନୀରେ ରାଜଯୋଗିନୀ ଦାଦି ପ୍ରକାଶମଣି ଯେ କି ବାବାଙ୍କ ପରେ ଅନୁଷ୍ଠାନର ମୁଖ୍ୟ, ସଭାପତିତ୍ୱ କଲେ । ରାଜଯୋଗୀ ବି.କେ. ଜଗଦୀଶ ଚନ୍ଦର୍ ହାସିଜା, ଅନୁଷ୍ଠାନର ମୁଖ୍ୟବକ୍ତା ଓ ଡକ୍ଟର ରମଣଲାଲ୍ ଯୋଗୀ, ନିର୍ଦ୍ଦେଶକ ମହାବିଦ୍ୟାଳୟ ଉନ୍ନୟନ ପରିଷଦ ପ୍ରମୁଖ ସମ୍ମାନିତ ଅତିଥି ଭାବେ ଯୋଗଦେଇଥିଲେ । ଏହା ଏକ ଶାନ୍ତିଧାମ । ସେଠାରେ ମୋତେ ଯେଉଁ ଶାନ୍ତି ମିଳିଲା, ତାହା ଅପୂର୍ବ । ସଭାରେ ସମସ୍ତେ ଇଂରାଜୀରେ ଭାଷଣ ଦେଲେ, ମୁଁ ବି । ସଭା ପରେ ପାଣ୍ଡବଭବନକୁ ଯାଇ ଖାଇଲୁ ଓ ତତ୍‌ପରେ ସର୍କିଟ୍ ହାଉସ୍‌କୁ ଗଲୁ ।

ମାଉଣ୍ଟ ଆବୁରେ ଅନେକ ହୋଟେଲ ଅଛି । ରହିବା ପାଇଁ ବିଶ୍ୱବିଦ୍ୟାଳୟର ଅତିଥିଭବନ ମାନ ମଧ୍ୟ ଅଛି ।

ମାଉଣ୍ଟ ଆବୁକୁ ହିମାଳୟପୁତ୍ର ବୋଲି କୁହାଯାଏ ।

ପରଦିନ ତା ୨୭।୫।୧୯୮୯ରିଖ ଦିନ ସକାଳ ୮ଟା ବେଳେ କିଛିସମୟ ପାଇଁ ଏକ କ୍ଲାସ୍‌ରେ ଯୋଗଦେଲୁ । ଯେଉଁ ଭଉଣୀ କ୍ଲାସ୍ ନେଉଥିଲେ ସେ ଖୁବ୍ ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ତତ୍‌ପରେ ଜଳଖିଆ ଖାଇ ଦିଲ୍‌ୱାରା ମନ୍ଦିର ଦେଖିବାକୁ ଗଲୁ । ସେମାନଙ୍କର ମଧ୍ୟ ଗୋଟିଏ ଗାଡ଼ି ଗଲା । ପୁରୀରୁ ଯାଇଥିବା ଭଉଣୀ ନିରୂପମା ମଧ୍ୟ ଗଲେ ।



# ଦିଲ୍‌ୱାରା ମନ୍ଦିର

ଏହିଠାରେ ୫ଟି ଜୈନ ମନ୍ଦିର ଅଛି । ତନ୍ମଧ୍ୟରୁ ଦୁଇଟି ହେଉଛି ପ୍ରଧାନ ମନ୍ଦିର । ମାର୍ବଲରେ ଏପରି ସୂକ୍ଷ୍ମକାମ କରାଯାଇଛି ଯାହା ଅନୁପମ ।

ପ୍ରଥମ ମୁଖ୍ୟ ମନ୍ଦିର ୧୦୩୧ ମସିହାରେ ୧୮ କୋଟି ୫୩ ଲକ୍ଷ ଟଙ୍କା ଖର୍ଚ୍ଚରେ ନିର୍ମାଣ କରାଯାଇଥିଲା । ଏହାର ନିର୍ମାଣ କାର୍ଯ୍ୟ ୧୪ ବର୍ଷ ଲାଗିଥିଲା । ମନ୍ଦିର ତିଆରିରେ ୧୫୦୦ ସ୍ଥପତି ଓ ୧୨୦୦ ଶ୍ରମିକ ଲାଗିଥିଲେ ।

ଦ୍ୱିତୀୟ ପ୍ରଧାନ ମନ୍ଦିର ନିର୍ମାଣରେ ୧୨ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା ଓ ଏହାର ନିର୍ମାଣ ପାଇଁ ୧୨ ବର୍ଷ ଲାଗିଥିଲା । ଏହା ନିର୍ମିତ ହୋଇଥିଲା ୧୨୩୧ ମସିହାରେ ।

ଏ ଦୁଇ ମନ୍ଦିର ଛଡ଼ା ଆହୁରି ୩ଟି ମନ୍ଦିର ସେଠାରେ ଅଛି । ତନ୍ମଧ୍ୟରୁ ଗୋଟିକରେ ଥିବା ଜୈନ ମୂର୍ତ୍ତିଙ୍କର ଓଜନ ୧୦୮ ମହଣ ଓ ଏହା ୫ଟି ଧାତୁରେ ନିର୍ମିତ । ଏହି ଧାତୁଗୁଡ଼ିକ ପ୍ରତ୍ୟେକ ୨୦ ଭାଗ ରହିଛି । ତେଣୁ ସୁନା ମଧ୍ୟ ୨୦ ଭାଗ ରହିଛି । ୧୦୮ ମହଣରୁ ୨୦ ଭାଗ ହେଉଛି ସୁନା ।

ଶେଷ ମନ୍ଦିରଟିକୁ ଶ୍ରମିକମାନେ ସେମାନଙ୍କ ଅବସର ସମୟରେ ନିର୍ମାଣ କରିଥିଲେ । ସେଠାରେ ପରେଶନାଥଙ୍କ ମୂର୍ତ୍ତି ବିଦ୍ୟମାନ । ୫ଟିଯାକ ମନ୍ଦିରର କାରୁକାର୍ଯ୍ୟ ଆମକୁ ବିସ୍ମିତ କଲା ।

ଆଲ୍ଲାଉଦ୍ଦିନ୍ ଖିଲିଜ୍ ଦିଲ୍‌ୱାରା ମନ୍ଦିରର ସିଲିଂମାନଙ୍କରେ ଥିବା ସୁନ୍ଦର ଦେବତାମାନଙ୍କର ମୂର୍ତ୍ତିଗୁଡ଼ିକର ନାକକୁ ଭାଂଗିଦେଇଥିଲେ । ପରବର୍ତ୍ତୀ କାଳରେ ସେ ନାକ ସବୁ ଯୋଡ଼ାଯାଇଛି । ଏହି ନାକ ଯୋଡ଼ା ହୋଇଥିବାଟା ସ୍ପଷ୍ଟ ଜାଣିହେଉଛି ।



# ଅଚଳଗଡ଼

ଦିଲ୍‌ୱାରା ମନ୍ଦିର ଦେଖିସାରି ଆମେ ଗଲୁ ଅଚଳଗଡ଼ । ଏହା ମଧ୍ୟ ଆବୁ ପାହାଡ଼ ଉପରେ ଅବସ୍ଥିତ । ଆମେ ରହୁଥିବା ସ୍ଥାନରୁ ଏହା ପ୍ରାୟ ୧୦ କି.ମି. ଦୂର । ସେଠାରେ ରହିଛି ଅଚଳେଶ୍ୱର ମହାଦେବଙ୍କ ମନ୍ଦିର । ମନ୍ଦିର ନିକଟରେ ଏକ ବିରାଟ ଯଜ୍ଞକୁଣ୍ଡ । କେଉଁ ପୌରାଣିକ ଋଷି ସେଠାରେ ତପସ୍ୟା କରୁଥିଲେ । ମନ୍ଦିର ସାମ୍‌ନାରେ ନନ୍ଦି ବୃଷଭ । ଆଲ୍ଲାଦିନ ଖିଲିଜ୍ ବୃଷଭ ପେଟରେ ରତ୍ନାଳଙ୍କାର ଥିବା ଲୋଭରେ ତାଙ୍କୁ ଭାଂଗିବା ପାଇଁ ଚେଷ୍ଟା କରିବାରୁ ତନ୍ମଧ୍ୟରୁ ବିରୁଡ଼ି ବାହାରି ଭାଂଗୁଥିବା ସୈନ୍ୟମାନଙ୍କୁ ଦଂଶନ କଲେ । ସେମାନେ ଡହଳ ବିକଳ ହେଇ ସେ ସ୍ଥାନ ଛାଡ଼ି ପଳାୟନ କଲେ ।

ଏହି ମନ୍ଦିର ପ୍ରାଙ୍ଗଣର ବାହାରେ ଥିବା ଏକ ମହାଦେବ ମନ୍ଦିରକୁ ଅନ୍ୟ ଜଣେ ମୁସଲମାନ ସମ୍ରାଟ ନିର୍ମାଣ କରିଥିଲେ ।

ସେଠାରୁ ଫେରିଲୁ ବିଶ୍ୱବିଦ୍ୟାଳୟକୁ । ସେଠାରେ ସୁରେଶଭାଇ ନାମଧାରୀ ଜଣେ ବ୍ୟକ୍ତି, ଯାହାଙ୍କର ଘର ହେଉଛି ଢେଙ୍କାନାଳ, ଯେ'କି ସେଠାରେ କେମେରା ଏବଂ ଭି.ଡ଼ି.ଓ. ଦାୟିତ୍ୱରେ ଥିଲେ ମୋର ଏକ ସାକ୍ଷାତ୍‌କାର ନେଲେ । ସେହି ଅନୁଷ୍ଠାନ ସଂପର୍କରେ ତାଙ୍କର ପ୍ରଶ୍ନ ଓ ମୋର ଉଚ୍ଛ୍ୱସିତ ପ୍ରଶଂସା । ତା' ସହିତ ନୂତନ ଶିକ୍ଷାନୀତିରେ ମୂଲ୍ୟଭିତ୍ତିକ ଶିକ୍ଷାର ଗୁରୁତ୍ୱ ଓ ଯୋଗ ପ୍ରଭୃତି ଉପରେ ଗୁରୁତ୍ୱ ଦିଆଯାଉଥିବା କଥା କହିଲି ।

ରାତ୍ରିଭୋଜନ ପରେ ଦାଦି ପ୍ରକାଶମଣି ମୋ ସହିତ ଆଲୋଚନା କଲେ । ରାତି ୯.୩୦ରୁ ୧୦ଟା ପର୍ଯ୍ୟନ୍ତ ଓଁ ଶାନ୍ତି ଭବନଠାରେ ହେଉଥିବା ଆଲୋଚନାଚକ୍ରରେ ଯୋଗଦେଲି । ବହୁ ଶିକ୍ଷାବିତ୍ ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ଆଲୋଚନାରେ ମୁଖ୍ୟତଃ ଆଧ୍ୟାତ୍ମିକ ଶିକ୍ଷାକୁ ଗୁରୁତ୍ୱ ଦିଆଯାଉଥିଲା ।



# ଉଦୟପୁର

ତା ୨୮।୫।୧୯୮୯ରିଖ ଭୋର ଘ୬ଣ୍ଟା ୨୦ ମିନିଟ୍‌ରେ ଉଦୟପୁର ଅଭିମୁଖେ ଯାତ୍ରା । ଉଦୟପୁର ମାଉଣ୍ଟ୍ ଆବୁରୁ ୧୮୫ କିଲୋମିଟର । ସିରୋଇରୋଡ ଷ୍ଟେସନ ପୂର୍ବରୁ ମୁଖ୍ୟରାସ୍ତା ଛାଡ଼ି ଉଦୟପୁର ରାସ୍ତା ଧରିଲୁ ।

ସିରୋଇରୋଡ ପରେ ପ୍ରାୟ ୨୦ କିଲୋମିଟର ଅଞ୍ଚଳ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ମାଉଣ୍ଟ୍‌ଆବୁ ଏସ୍.ଡି.ଓ.ଙ୍କଠାରୁ ଶୁଣିଥିଲି, ଡ୍ରାଇଭର ମଧ୍ୟ କହିଲା- "ଏଠାରେ ରହୁଥିବା ଆଦିବାସୀମାନେ ରାସ୍ତାକୁ ଅବରୋଧ କରି ଲୁଟ୍‌ତରାଜ କରନ୍ତି ।"

ବେଶୀ ରାତିରେ ଫେରିବା ନିରାପଦ ନୁହେଁ । ୨୦/୨୨ କିଲୋମିଟର ପରେ ବେକ୍‌ରିୟା ଥାନା ପଡ଼ିଲା । ଗାଡ଼ି ଅଟକାଇ ଥାନା ଅଫିସର୍‌ଙ୍କୁ କହିଲୁ- ଯଦି ଫେରିବାକୁ ବେଶୀ ରାତି ହେଇଯାଏ, ଆମ ସୁରକ୍ଷା ପାଇଁ କିଛି ପୋଲିସ୍ ଆମ ସହିତ ପଠାଇବାକୁ । ସେ କହିଲେ- ବର୍ତ୍ତମାନ ଆଉ ସେମିତି କିଛି ଭୟ ନାହିଁ । ଆମେ ଚାହିଁଲେ ଫେରିବାବେଳେ ଏଇ ଅଞ୍ଚଳ ପାରିହେବା ପର୍ଯ୍ୟନ୍ତ ସେ ଆମ ସୁରକ୍ଷାର ବ୍ୟବସ୍ଥା କରିବେ ।

ପ୍ରାୟ ଦିନ ୧୦.୩୦ ମିନିଟ୍‌ରେ ଉଦୟପୁର ସର୍କିଟ୍ ହାଉସ୍‌ରେ ପହଞ୍ଚିଲୁ । ସର୍କିଟ୍ ହାଉସ୍‌ର ସବୁ କର୍ମଚାରୀ ଟି.ଭି.ରେ ମହାଭାରତ ଦେଖୁଥିଲେ । କୋଠରି ଖୋଲିବାକୁ ୫ ମିନିଟ୍ ଲାଗିଗଲା । ୧୧ଟା ସୁଦ୍ଧା ଉଦୟପୁରର ଦର୍ଶନୀୟ ସ୍ଥାନ ଦେଖିବାକୁ ବାହାରିପଡ଼ିଲୁ ।

ସର୍କିଟ୍ ହାଉସ୍‌ରେ ସହକାରୀ ଜିଲ୍ଲାପାଳ ଶ୍ରୀପୂରଣ ପ୍ରକାଶ ଆମ ଅପେକ୍ଷାରେ ଥିଲେ । ଭାରି ମେଳାପୀ ଲୋକ । ଆମକୁ କହିଲେ- "ତିନିଘଣ୍ଟା ଭିତରେ ଯାହା ଦେଖିବାର କଥା ସବୁ ଦେଖାଇଦେବି ।"

ସେ ନ'ବର୍ଷ ହେଲା ଏଠାକୁ ଆସୁଥିବା ଅତିଥିମାନଙ୍କର ଦାୟିତ୍ୱରେ ଅଛନ୍ତି ।

ପ୍ରଥମେ ସେ ଆମକୁ କୃତ୍ରିମ ହ୍ରଦ ଫତେସାଗର ଦେଖେଇ ତା'ର ଇତିହାସ କହିଲେ । ଏହାକୁ ଫତେସିଂ ଖୋଳାଇଥିଲେ । ରାଣା ପ୍ରତାପଙ୍କ ପିତା ଉଦୟସିଂ ଚିତୋଡ଼ଗଡ଼ରୁ ତାଙ୍କ ରାଜଧାନୀ ଏଠାକୁ ଉଠାଇଆଣି ଏହାର ନାମ ଉଦୟପୁର ରଖିଥିଲେ । ସେ ପ୍ରଥମେ ଯେଉଁ ପ୍ରାସାଦଟି ନିର୍ମାଣ କରିଥିଲେ, ତାହାର କାନ୍ଥସବୁ ଏବେ ମଧ୍ୟ ଅଛି । ଫତେସାଗର କୂଳରେ ହିଁ ଏହି ପ୍ରାସାଦ ତିଆରି ହୋଇଥିଲା । ରାଣାପ୍ରତାପ ଘୋଡ଼ା ପିଠିରେ ବସିଥିବାର ମୂର୍ତ୍ତି ଏଠାରେ ଅଛି । ରାଣାପ୍ରତାପ ୧୫୪୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ମୂର୍ତ୍ତି ଠିଆହୋଇଥିବା ସ୍ତମ୍ଭର ଗୋଟିଏ ପଟେ ହଳଦିଘାଟ ଯୁଦ୍ଧର ଦୃଶ୍ୟ ଓ ଆଉ ଗୋଟିଏ ପଟେ ଚେତକ ଘୋଡ଼ାର ଶେଷ ନିଃଶ୍ୱାସ ତ୍ୟାଗର ଦୃଶ୍ୟ ଖୋଦିତ ହୋଇଛି ।

ଏହାପରେ ଦେଖିଲୁ ଶୈଳିଓକି ବାଡ଼ି । ଏହା ୧୮ଶହ ଶତାବ୍ଦୀରେ କରାଯାଇଥିଲା । ଏଠାରେ ସେ ସମୟରେ କରାଯାଇଥିବା ଅନେକ ଫୁଆରା ଏବେ ବି ସଚଳ ଅଛି । ବହୁତ ବଡ଼ ବଗିଚା । ରାଣୀଙ୍କ ସାଥୀମାନେ ରାଣୀଙ୍କ ସହିତ ଆସି ଏହିଠାରେ ବିହାର କରୁଥିଲେ । ଏଠାରେ ଗୋଟିଏ ଫୁଆରାର ନାମ Lotus Fountain- ପଦ୍ମଝରଣା । ମହାରାଣା ପ୍ରତାପ ରହୁଥିବା ନୂତନ ପ୍ରାସାଦଟିର ମୁଖ୍ୟ ଅଂଶଟି ସଂଗ୍ରହାଳୟ ହୋଇଛି । ନାଆଁ ତାର ସିଟିପେଲେସ୍ ମ୍ୟୁଜିୟମ୍ । ସେଠାରେ ରାଣାପ୍ରତାପଙ୍କ ପୋଷାକ, ସାଞ୍ଜୁ, ଧନୁ, ତୀର, ତୂଣୀର ପ୍ରଭୃତି ସାଇତା ହୋଇ ରହିଛି । ରାଜବଂଶର ଆହୁରି ଅନେକ ରାଜାଙ୍କର ତୈଳଚିତ୍ର ଓ ସେମାନେ ବ୍ୟବହାର କରୁଥିବା ସାଜ ସରଞ୍ଜାମ ରହିଛି । ଚେତକ କକ୍ଷରେ ଚେତକ ଘୋଡ଼ାର ମୂଳ ପୋଷାକ ସହିତ ଚେତକ ଆକୃତିର ଏକ ଘୋଡ଼ା ନିର୍ମିତ ହୋଇ ରହିଛି । ଚେତକର ରଂଗ ଧଳା ଥିବାରୁ ଏହି ନିର୍ମିତ ଘୋଡ଼ାଟି ଧଳାରଂଗର । ତ୍ରିତଳ ପ୍ରାସାଦର ପ୍ରାୟ ସବୁ ଅଂଶ ମାର୍ବଲ ନିର୍ମିତ । ଏହି ପ୍ରାସାଦ ନିକଟରେ ଆହୁରି ଅନେକ ପ୍ରାସାଦ ରହିଛି । ଗୋଟିଏ ପ୍ରାସାଦରେ ସାନଭାଇ ରହୁଛନ୍ତି । ବଡ଼ଭାଇ ବାହାରେ ଆଉ ଏକ ପ୍ରାସାଦରେ ରହୁଛନ୍ତି । ଦୁଇଭାଇଙ୍କ ଭିତରେ ଦ୍ୱନ୍ଦ୍ୱ । ସାନଭାଇ ସବୁ ସଂପତ୍ତି ଭୋଗ କରି ବଡ଼ଭାଇଙ୍କି କିଛି ଦେଉ ନଥିବା ଯୋଗୁଁ ଏହି ଦ୍ୱନ୍ଦ୍ୱ । ବୋଧହୁଏ ମାଲିମୋକଦ୍ଦମା ଚାଲିଛି ।

ପ୍ରାସାଦରେ ରାଜାଙ୍କର ଶୟନକକ୍ଷ, ରାଣୀ ରହୁଥିବା ମୋତିମହଲ, ଭୋଜନଶାଳା, ରଂଗଶାଳା ପ୍ରଭୃତି ଦେଖିଲୁ ।

ଉଦୟପୁରରେ ତିନୋଟି ହ୍ରଦ ରହିଛି । ରାଜପ୍ରାସାଦ ପଛକୁ ରହିଛି ଲେକ୍ ପେଲେସ୍ । ଏହା ଥିଲା ରାଜାଙ୍କର ଗ୍ରୀଷ୍ମ ନିବାସ । ବର୍ତ୍ତମାନ ଏହା ଏକ

ହୋଟେଲ । ସାନଭାଇ ଏହାକୁ ଚଳାଉଥିଲେ । ଏବେ ଅନ୍ୟକୁ ଭଡ଼ାରେ ଦେଇଦେଇଛନ୍ତି । ଆମ ସହିତ ଯାଇଥିବା ଅଫିସର ବାଧ୍ୟ କଲେ ସେଠାକୁ ଯିବାକୁ । କହିଲେ- "ଲେକ୍ ପେଲେସ୍ ହୋଟେଲ ନ ଦେଖିଲେ ଉଦୟପୁର ଦେଖା ଅସଂପୂର୍ଣ୍ଣ ରହିଯିବ । ପୃଥିବୀର ପ୍ରତିଷ୍ଠିତ ବ୍ୟକ୍ତିମାନେ ଏଠାକୁ ଆସିଲେ ଏହି ହୋଟେଲରେ ରହନ୍ତି । ଏହା ଏକ ମହଙ୍ଗା ହୋଟେଲ । ମଟର ବୋଟ୍‌ରେ ହୋଟେଲ୍‌କୁ ଗଲୁ । ଗୋଟିଏ ସୁଟ୍ (Suite) ଦେଖିଲୁ । ସେତେବେଳେ ଏହାର ଭଡ଼ା ଦିନକୁ ଥିଲା ପାଞ୍ଚହଜାର ଟଙ୍କା । ଏହି ହୋଟେଲର ପାନାଗାର ଯେଉଁଠି ବସି ମଦ୍ୟପାନ କରାଯାଏ ତାହାର ନାମ 'ଅମୃତସାଗର' ।

ଅଫିସର ଜଣକ ଆମକୁ ଆଇସ୍‌କ୍ରିମ୍, କିଛି ଭାତ ଓ ବଢ଼ିଆ ରନ୍ଧାଯାଇଥିବା କିଛି କୁକୁଡ଼ା ମାଂସ ଖୁଆଇଲେ । ଅଫିସର୍ ରଖିଥିବା ଆଲ୍‌ବମ୍‌ରେ ମନ୍ତ୍ରୀ ଥିବା ହରିହର କରଣ ଓ ତାଙ୍କ ପରିବାରର ଫଟୋ ଦେଖିଲୁ । ସେ ଗୋଟିଏ ଡାଏରୀ ରଖିଥିଲେ, ଯେଉଁଥିରେ ବହୁ ପଦସ୍ଥ ବ୍ୟକ୍ତି ସେମାନଙ୍କର ମତାମତ ଲେଖିଛନ୍ତି । ସେସବୁ ମତାମତ ତାଙ୍କରି ସଂପର୍କରେ । ଏହିସବୁ ମତାମତ ତାଙ୍କ ପାଇଁ ସାର୍ଟିଫିକେଟ୍ । ତା ୨୮।୫।୧୯୮୯ରିଖରେ ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ ତାଙ୍କ ବିଷୟରେ ମତାମତ ଲେଖିଛନ୍ତି । ଲେକ୍‌ପେଲେସ୍ ହୋଟେଲରେ ମୋ'ଠୁ ମଧ୍ୟ ଏକ ଭଲ ସାର୍ଟିଫିକେଟ୍ ଲେଖାଇନେଲେ । ସେଠାକାର ଦୃଶ୍ୟ ସବୁ ମୋ ମନରେ ଜୀବନ୍ତ ଅଛି ।

ତା ୨୯।୫।୧୯୮୯ରିଖ ସକାଳେ ପୁରୀର ଭଉଣୀ ନିରୂପମା ଓ ଭାଇ ସୁରେଶ ଗାଡ଼ି ନେଇ ଆସିଲେ । ଆମେ ସର୍କିଟ୍‌ହାଉସ୍‌ରୁ ଯାଇ ସେଠାରେ ଜଳଖିଆ ଖାଇଲୁ । ଝିଅ ସୁଚିତ୍ରା ଓ ଜ୍ୱାଇଁ ଅଶୋକ ଓ ମୋ ସ୍ତ୍ରୀ ବଜାର ଗଲେ । ସୁରେଶଭାଇ ମୋର ଯେଉଁ ଭି.ଡ଼ି.ଓ. ଉତ୍ତୋଳନ କରିଥିଲେ ସେଥିରେ କିଛି ଦାଗ ରହିଯାଇଥିବାରୁ ସେ ପୁଣି ଥରେ ମୋର ଭି.ଡ଼ି.ଓ ଉତ୍ତୋଳନ କଲେ । ଓଁପ୍ରକାଶଭାଇଙ୍କ ସହ ବହୁ ଆଲୋଚନା ହେଲା । ଦାଦିଙ୍କ ସହ ଆଲୋଚନା ଓ ଫଟୋ ନିଆଗଲା । ସେମାନଙ୍କର Visitors' ବିହରେ ମୋ ମତ ମୁଁ ଲେଖିଦେଲି ।

ଦାଦି ପ୍ରକାଶମଣି ଆମକୁ କିଛି ଉପଢ଼ୌକନ ଦେଲେ । ସେ ମୋ ବେକରେ ଏକ ଶାଲ୍ ପକାଇଦେଲେ । ଦିନ ଗୋଟାଏ ବେଳେ ଆମେ ଆବୁରୋଡ ଷ୍ଟେସନ୍‌ରୁ ଅହମ୍ମଦାବାଦ୍-ଦିଲ୍ଲୀ ମେଲ୍ ଟ୍ରେନ୍ ଯୋଗେ ଦିଲ୍ଲୀ ଫେରିଲୁ ।



# ଭଜନ

(ତା ୨୫।୫।୧୯୮୯ରିଖରେ ଦିଲ୍ଲୀରୁ ମାଉଣ୍ଟ୍‌ଆବୁ ଯିବାବେଳେ ଟ୍ରେନ୍‌ରେ ବସି ଯେଉଁ ଭଜନଟି ଲେଖିଥିଲି ତାହା ଏଠାରେ ପ୍ରଦାନ କଲି ।)

ନୀଳାଦ୍ରିବିହାର ହରି ହେ ନିଖିଳନାଥ
ଅଗତିର ଗତି ତୁମେ ପ୍ରଭୁ ଜଗନ୍ନାଥ । ୦ ।

ଆକାଶର ମେଘମାଳା ଚନ୍ଦ୍ରସୂର୍ଯ୍ୟ ତାରା
ତୁମରି ସର୍ଜନା ପ୍ରଭୁ ସସାଗରା ଧରା
ତୁମରି ଇଚ୍ଛାରେ ସୃଷ୍ଟି ହୁଏ ଆତଯାତ । ୧ ।

ମଣିଷର ଗର୍ବ ଦମ୍ଭ ମାନ ଅଭିମାନ
ଲୋଭ ମୋହ କ୍ରୋଧ ହୁଏ କ୍ରୋଧର କାରଣ
ପ୍ରଭୁ ହେ; ବଢ଼ାଇ ଦିଅ କରୁଣାର ହାତ । ୨ ।



# ଖଇରି ବଙ୍ଗଳାରେ ରାତ୍ରି ରହଣି

ତା ୮।୧୧।୧୯୮୯ରିଖରେ ମୟୁରଭଞ୍ଜ ଜିଲାର ଯଶିପୁରଠାରେ ହେଉଥିବା କର୍ମୀ ସମ୍ମିଳନୀରେ ଯୋଗଦେବାପାଇଁ ବାଲେଶ୍ୱରରୁ ବାରିପଦାହେଇ ବିଶୋଇଠାରେ ରାମ ମହାନ୍ତିଙ୍କ ହୋଟେଲ୍‌ରେ ଖାଇ ଗଲି । କର୍ମୀ ସମ୍ମିଳନୀରେ ବାଚସ୍ପତି ପ୍ରସନ୍ନ କୁମାର ଦାଶ, ମୟୁରଭଞ୍ଜ ମହାରାଜା ପ୍ରଦୀପଚନ୍ଦ୍ର ଭଞ୍ଜଦେଓ, ହେମାନନ୍ଦ ବିଶ୍ୱାଳ, କୁଆଁରିଆ ମାଝୀ ପ୍ରମୁଖ ଯୋଗ ଦେଇଥିଲେ । ସେଠାକାର କର୍ମୀ ସମ୍ମିଳନୀ ଶେଷହେବାପରେ, ରଗୁଆଁ କର୍ମୀ ସମ୍ମିଳନୀରେ ଯୋଗଦେଇ ଯଶିପୁର ଫେରିଲି ଓ ରାତିରେ ଜଙ୍ଗଲ ବିଭାଗର ଡାକବଙ୍ଗଳାରେ ରହିଲି । ବଙ୍ଗଳାର ଚୌକିଦାରଠୁ ଶୁଣିଲି ଏଇ ବଙ୍ଗଳାରେ ବାଘୁଣୀ ଖଇରି ରହୁଥିଲା । ମୁଁ ଯେଉଁ କୋଠରିରେ ରହିଲି ସେଇ କୋଠରିରେ ରହୁଥିଲେ ଜଙ୍ଗଲ ବିଭାଗର ଅଫିସର୍ ମିଷ୍ଟର ଚୌଧୁରି, ମିସେସ୍ ଚୌଧୁରି ଓ ଖଇରି । ତିନିଟି ଜଣକିଆ ଖଟ ଯୋଡ଼ାଯୋଡ଼ି ହୋଇ ପଡ଼ିଥିଲା । ଚୌଧୁରି ବାରଣ୍ଡାର ଝରକାପାଖକୁ, ମଝିଖଟରେ ଖଇରି ଓ ଶେଷରେ ମିସେସ୍ ଚୌଧୁରି ଶୋଉଥିଲେ । ଖଇରି ବାଘୁଣୀ ହେଇ ବି କାହାରି କିଛି କ୍ଷତି କରୁନଥିଲା । ଚୌଧୁରି ଦମ୍ପତିଙ୍କ ସହିତ ତାଙ୍କର ସନ୍ତାନଭଳି ସେ ବ୍ୟବହାର କରୁଥିଲା । ଅନ୍ୟମାନଙ୍କ ସହିତ ବ୍ୟବହାରରେ ମଧ୍ୟ ତା'ର ହିଂସ୍ରତା ନଥିଲା । ଯେଉଁ ରାତିକଥା ମୁଁ ଲେଖୁଛି ସେ ସମୟରେ ଖଇରି ଜୀବିତ ନଥିଲା ।

ମୁଁ ଖଟ ଉପରେ ଶୋଇଚି, ଚୌକିଦାର ଖଟ ପାଖରେ ବସି ଗପି ଚାଲିଚି । ଖଇରିର ମୃତ୍ୟୁପରେ ସେଇ ଡାକବଙ୍ଗଳା ପରିସରରେ ଖଇରିର ମୃତଦେହକୁ ପୋତିଦିଆଯାଇଛି । ଏ ବଙ୍ଗଳାର ଡାକନାମ ହେଇଗଲାଣି 'ଖଇରି ବଙ୍ଗଳା' ।

ରାତି ବାରଟା ବାଜିଲା । ଚୌକିଦାର ମୋ'ଠୁ ବିଦାୟ ନେଲା । ମୋତେ ଆଉ ନିଦ ହେଲା ନାହିଁ । ଖାଲି ମିଷ୍ଟର ଓ ମିସେସ୍ ଚୌଧୁରି ଓ ଖଇରି କଥା

ମୁଁ ଭାବୁଥାଏ । ତାଏରିଟା ଆଣି କବିତାଟିଏ ଲେଖିବା ଆରମ୍ଭ କଲି । ରାତିରେ ଶେଷକରି ପାରିଲି ନାହିଁ, ପରଦିନ ସକାଳେ ସେଇ ବଙ୍ଗଳାରେ ଶେଷ କଲି ।

ଖଇରି
ସେ କ'ଣ ଖାଲି ବାଘୁଣୀ ଥିଲା
କିଛି ବୁଝିପାରୁନଥିବା ବାଘୁଣୀଟିଏ ?
\+ + + +
ମୋର କାହିଁକି ବିଶ୍ୱାସ ହେଉନଥିଲା
ଯଶିପୁର ଖଇରି ବଙ୍ଗଳାରେ ଚୌକିଦାରଠୁ
ତା'ର ସବୁ କାହାଣୀ ଶୁଣିବାପରେ ବି ।
\+ + + +
ନଖଥିବା ଦାନ୍ତ ଥିବା ସେଇ ବାଘୁଣୀଟି
ହିଂସ୍ରତାରୁ ଦୂରେଇ ରହି
ଚୌଧୁରି ସାହେବଙ୍କର ଏଇ ଦୁଇନମ୍ବର ସୁଟ୍‌ରେ
ମିଷ୍ଟର ଓ ମିସେସ୍ ଚୌଧୁରିଙ୍କ ମଝିରେ
ରାତିରେ ଶୋଉଥିଲା
ଲାଗିଥିବା ପାଇଖାନାରେ ନିତ୍ୟକର୍ମ ସାରୁଥିଲା
ଆଗନ୍ତୁକ ଦର୍ଶନାର୍ଥୀମାନଙ୍କୁ
ସ୍ୱଜନଭଳି ବ୍ୟବହାର କରୁଥିଲା
ଚାହୁଁଥିଲା ନିରୀହତାର ଆଖି ତୋଳା
ଲେଉଟାଇ ଆଗକୁ ପଛକୁ
ବୁଲୁଥିଲା ଲାଂଜପିଟି ବଗିଚାରେ
ଏଇ ଇଲାକାରେ
ସୃଷ୍ଟିକର୍ତ୍ତା ଓ ତାଙ୍କ ସୃଷ୍ଟିର ସମସ୍ତଙ୍କୁ
ଚକିତ କରି ସେ ବିତେଇଲା ଆଠବର୍ଷ
ଏଇ ବଙ୍ଗଳାରେ ।
\+ + +
ଖଇରି ଆଜି ନାହିଁ

ଏ ବଙ୍ଗଳା ଶୂନ୍‌ଶାନ୍, ଚୌଧୁରି ସାହେବ ମୃତ
ସ୍ମୃତି ଖାଲି ଚିତ୍କାର କରେ
ତାର ଏଇ ସମାଧି-ପୀଠରୁ
ଚତୁର୍ଦ୍ଦିଗର ଡେଙ୍ଗା ଡେଙ୍ଗା ଗଛମାନଙ୍କରୁ
ଶୁଭେ ଖାଲି ହାହାକାର ଧ୍ୱନି ।

\+ + + +

ମନରେ ପ୍ରଶ୍ନ ଉଠେ
ସେ କ'ଣ ଖାଲି ବାଘୁଣୀଟିଏ ଥିଲା
ଖାଲି ବାଘୁଣୀଟିଏ
ନା ତା' ଭିତରେ ରହିଥିଲା
ସ୍ୱର୍ଗଛାଡ଼ି ଆସିଥିବା
କୌଣସି ଏକ ଅସ୍ୱରୀର ଆତ୍ମା ?



# ସ୍ମୃତିରେ ବାଲୁଗାଁ

ବାଲେଶ୍ୱରକୁ ଛାଡ଼ି ଦେଲେ ମୋର ଅତି ଆପଣାର ସ୍ଥାନ ହେଉଛି ବାଲୁଗାଁ । ଚିଲିକା କୂଳରେ ଥିବା ଏଇ ବାଲୁଗାଁ ହେଉଛି ମୋର ଦ୍ୱିତୀୟ ଘର । ବାଲେଶ୍ୱର ପରି ମୋତେ ଜନ୍ମ ଦେଇ ନଥିଲେ ବି, ତା' କୋଳରେ ମୋତେ ବଢ଼େଇ ନଥିଲେ ବି, ବାଲୁଗାଁ ସହ ମୋର ଆନ୍ତରିକତା ବାଲେଶ୍ୱର ଠାରୁ କୌଣସି ଗୁଣରେ କମ୍ ନୁହେଁ । ଥରେ ନୁହେଁ, ଜୀବନରେ ଅନେକ ଥର ମୁଁ ବାଲୁଗାଁ ଯାଇଛି । ଚିଲିକା କୂଳରେ ରାତି ବିତେଇଛି । ମନ୍ତ୍ରୀ ହେବା ପୂର୍ବରୁ, ମନ୍ତ୍ରୀ ଥିଲା ସମୟରେ ଓ ମନ୍ତ୍ରିତ୍ୱ ଗଲା ପରେ ବି ।

ବାଲୁଗାଁ ସହ ମୋର ସଂପର୍କ ବଢ଼ିବାର କାରଣ ହେଉଛି- ବାଲୁଗାଁ ନିବାସୀ ପଦ୍ମଚରଣ ପଟ୍ଟନାୟକଙ୍କ ସହ ମୋର ଖୁବ୍ ଭଲ ସଂପର୍କ ଥିଲା । ଗାଁ ମଝିରେ ଥିବା ତାଙ୍କ ଘରକୁ ମୁଁ ନିୟମିତ ଯାଉଥିଲି । ଅନେକ ଥର ପରିବାର ସହ ମଧ୍ୟ ଯାଉଥିଲି । ଏମିତି ତାଙ୍କ ପରିବାର ଓ ମୋ ପରିବାର ମଧ୍ୟରେ ଏକ ଘରୋଇ ସଂପର୍କ ବଢ଼ି ଉଠିଥିଲା, ଯାହା ଆଜି ପର୍ଯ୍ୟନ୍ତ ଅତୁଟ ରହିଛି ।

ପଦ୍ମଚରଣ ବାବୁ 'ଗୁପ୍ତଚର' ନାମରେ ଏକ ପତ୍ରିକା ପ୍ରକାଶ କରୁଥିଲେ । ସେଥିରେ ରହସ୍ୟ ରୋମାଞ୍ଚଭରା ଉପନ୍ୟାସ ପ୍ରକାଶିତ ହେଉଥିଲା । ମୋର ମଧ୍ୟ ଗୋଟିଏ ଉପନ୍ୟାସ ସେଇ 'ଗୁପ୍ତଚର' ପତ୍ରିକାରେ ପ୍ରକାଶ ପାଇଥିଲା । ପଦ୍ମଚରଣ ବାବୁ ଅତି ଭଲ ଲୋକ ଥିଲେ । ତାଙ୍କର ସରଳ ଅମାୟିକ ବ୍ୟକ୍ତିତ୍ୱ ମୋତେ ମୁଗ୍ଧ କରିଥିଲା । ସେ ମଧ୍ୟ ଜଣେ ନାଟ୍ୟକାର । ସେ ଖାଲି ନାଟକ ଲେଖୁ ନ ଥିଲେ, ନାଟକର ନିର୍ଦ୍ଦେଶନା ମଧ୍ୟ ଦେଉଥିଲେ । ଚିଲିକା କୂଳରେ ଏକ ସଙ୍ଗୀତ ଅନୁଷ୍ଠାନ ମଧ୍ୟ ତାଙ୍କରି ତତ୍ତ୍ୱାବଧାନରେ ଚାଲିଥିଲା । ସେଠାରେ ପିଲାମାନେ ସଙ୍ଗୀତ ଶିକ୍ଷା କରୁଥିଲେ । ସେ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କ ସହ ମୋର ଯୋଉ ସଂପର୍କ, ତା' କେବେ ବି ଭୁଲିହେବନି ।

ତାଙ୍କ ବଡ଼ ପୁଅ ତପନ ହେଉଛି, ଦୁଇ ପରିବାର ମଧ୍ୟରେ ସମନ୍ୱୟ-ସେତୁ । ସେ ବି ଜଣେ ଭଲ ଲେଖକ । ତା'ର ଅନେକ ବହି ବାହାରିଛି । ସେ ସବୁବେଳେ ମୋ ଘରକୁ ଆସେ । ମୋ ପୁଅ ଅଜିତର ସେ ଅନ୍ତରଙ୍ଗ । ଯଦିଓ ଦୁଇଜଣଙ୍କ ମଧ୍ୟରେ ବୟସର ତଫାତ୍ ଅନେକ, ତଥାପି ସେମାନେ ବନ୍ଧୁ । ତପନ ଲେଖିବା ସହିତ ପୁସ୍ତକ ପ୍ରକାଶନ ସହ ମଧ୍ୟ ଜଡ଼ିତ, ଏହା ବଡ଼ ଖୁସିର କଥା ।

ତା ୧୪।୧।୨୦୦୧ରେ ପଦ୍ମଚରଣ ବାବୁଙ୍କର ଦେହାନ୍ତ ହେଲା । ମୋ ପାଇଁ ଏହା ଏକ ଦାରୁଣ ଆଘାତ ଥିଲା । ତାଙ୍କର ସ୍ନେହ, ତାଙ୍କର ଆତିଥ୍ୟ ଜୀବନରେ କେବେ ଭୁଲିବାର ନୁହେଁ । ତା ୨୫।୧।୨୦୦୧ ରିଖରେ ପଦ୍ମଚରଣଙ୍କ ସ୍ମୃତିସଭାରେ ଯୋଗଦେବା ପାଇଁ ମୁଁ ବାଲୁଗାଁ ଯାଇଥିଲି । ମୋ ସହିତ ମୋ ସ୍ତ୍ରୀ ଓ ପୁଅ ଅଜିତ ବି ଯାଇଥିଲେ । ସନ୍ଧ୍ୟା ୫ଟାରେ ବାଲୁଗାଁରେ ପହଞ୍ଚି ପ୍ରଥମେ ବାଣପୁର ଗଲୁ । ମା' ଭଗବତୀଙ୍କୁ ଦର୍ଶନ କଲୁ । ସେଠାରୁ ଫେରି ବାଲୁଗାଁରେ ଆୟୋଜିତ ସ୍ମୃତି-ସଭାରେ ଯୋଗଦେଲି । ମୋ ସଭାପତିତ୍ୱରେ ସଭା କାର୍ଯ୍ୟ ଆରମ୍ଭ ହେଲା । ଡାକ୍ତର ଦେବେନ୍ଦ୍ର ମାନସିଂହ ଓ ଚିଲିକା ଅଞ୍ଚଳର ସବୁ ରାଜନୈତିକ ଦଳର ଲୋକ, ସାମ୍ବାଦିକ ଓ ବୁଦ୍ଧିଜୀବୀମାନେ ସଭାରେ ଉପସ୍ଥିତ ଥିଲେ । ତାଙ୍କ ଉଦ୍ଦେଶ୍ୟରେ ଏକ ସ୍ମରଣିକା 'ଲୁହବିନ୍ଦୁ' ପ୍ରକାଶ ପାଇଥିଲା, ଯାହା ଖୋର୍ଦ୍ଧାର ପୂର୍ବତନ ବିଧାୟକ ଡକ୍ଟର ଦିଲୀପ ଶ୍ରୀଚନ୍ଦନ ସଭାସ୍ଥଳକୁ ଆଣି ପହଞ୍ଚିଥିଲେ । ସଭା ପରେ ପୁରୀରୁ ଅଣାଯାଇଥିବା ମହାପ୍ରସାଦ ଖାଇ ଆମେ ଫେରିଥିଲୁ ।



# ରାଜନୀତିରୁ ସନ୍ୟାସ

ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳର ପତନ ପରେ ଅର୍ଥାତ୍ ୧୯୯୦ ମସିହା ପର ଠାରୁ ରାଜନୀତି ପ୍ରତି ମୋର ଆଗ୍ରହ କମି କମି ଆସିଲା । ମନସ୍ଥ କଲି, ଆଉ ରାଜନୀତି କରିବି ନାହିଁ । ମାତ୍ର ସୋର ନିର୍ବାଚନ ମଣ୍ଡଳୀର ଭାଇ ଭଉଣୀମାନଙ୍କ ଅନୁରୋଧରେ ଏହା ସମ୍ଭବ ହେଲା ନାହିଁ । ପୁଣି କିଛି ବର୍ଷ ମୁଁ ସକ୍ରିୟ ରାଜନୀତିରେ ରହିଲି । ୧୯୯୦ ମସିହା ନିର୍ବାଚନରେ କଂଗ୍ରେସରୁ ଦଳୀୟ ଟିକେଟ ମୋତେ ମିଳି ନଥିଲା । ଦଳର ଉଚ୍ଚ କର୍ତ୍ତୃପକ୍ଷଙ୍କ ହୀନ ଚକ୍ରାନ୍ତ ଯୋଗୁ ମୋତେ ଟିକେଟ ଦିଆଗଲା ନାହିଁ । ଡର ଥିଲା, ମୁଁ ଟିକେଟ ପାଇ ଜିତିଲେ ତାଙ୍କ ଆସନ ପ୍ରତି ବିପଦ ସୃଷ୍ଟି ହୋଇପାରେ । "ମୂଳୁ ମାରିଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି" ନ୍ୟାୟରେ ମୋତେ ଟିକେଟରୁ ବଞ୍ଚିତ କରାଗଲା ।

ସୋରବାସୀଙ୍କ ଅନୁରୋଧରେ ମୁଁ ସ୍ୱାଧୀନ ପ୍ରାର୍ଥୀ ଭାବରେ ସୋର ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କଲି । କହିବା ବାହୁଲ୍ୟ, କଂଗ୍ରେସରୁ ଯୋଉ ବ୍ୟକ୍ତି ଟିକେଟ ପାଇଥିଲେ, ସେ ମୋ'ରି ମନ୍ତ୍ରିତ୍ୱ ସମୟରେ ସୋର ବ୍ଲକର ଚେୟାରମ୍ୟାନ ଥିଲେ- ଯାହାଙ୍କୁ ରାଜନୀତି କ୍ଷେତ୍ରରେ ଅତୀତରେ ମୁଁ ବହୁତ ସାହାଯ୍ୟ କରିଥିଲି । ତାଙ୍କ ନାମ ଶ୍ରୀ କାର୍ତ୍ତିକଚନ୍ଦ୍ର ମହାପାତ୍ର । ଯାହା ହେଉ, ତାଙ୍କ ସହ ମୋର ପ୍ରତିଦ୍ୱନ୍ଦିତା ହେଲା ଓ ଦୁର୍ଭାଗ୍ୟବଶତଃ ମୁଁ ନିର୍ବାଚନରେ ହାରିଗଲି ।

୧୯୯୦ ମସିହା ପରଠାରୁ ରାଜନୀତିର ଢାଞ୍ଚା ବଦଳିଗଲା । ନିର୍ବାଚନ ପରିଚାଳନା ପଦ୍ଧତି ବଦଳିଗଲା । ନିର୍ବାଚନରେ ଗୁଣ୍ଡାରାଜ, ଅର୍ଥ, ମଦ ଇତ୍ୟାଦି ସେମାନଙ୍କର ବଳ ଦେଖାଇଲେ । ଆମେ ଯୋଉମାନେ ପୁରୁଣା ପଦ୍ଧତିରେ ରାଜନୀତି କରିବାକୁ ପସନ୍ଦ କରୁଥିଲୁ, ଆମର ମନେହେଲା ଏ ଯୁଗର ରାଜନୀତି

ପାଇଁ ଆମେ ପୂରାପୂରି ଅକ୍ଷମ । ଏଇ ଭାବଧାରା ନେଇ ମୁଁ ପୁଣି ଚେଷ୍ଟା କଲି ରାଜନୀତିରୁ ଦୂରେଇ ରହିବା ପାଇଁ । ମାତ୍ର ଏଥର ବି ସମ୍ଭବ ହେଲା ନାହିଁ ।

ଶ୍ରୀଯୁକ୍ତ ଶରଦ ପାୱାରଙ୍କ ଦ୍ୱାରା ଗଠିତ ଜାତୀୟ ଦଳ ଏନ୍.ସି.ପି.ର ମୁଁ ଓଡ଼ିଶା ଶାଖାର ସଭାପତି ହେଲି । ଶ୍ରୀ ମକ୍ସୁଦ୍ ଅଲ୍ଲୀ ସଂପାଦକ ହେଲେ । ଜାତୀୟ ସ୍ତରରେ ଶ୍ରୀଯୁକ୍ତ ପି.ଏ.ସାଙ୍ଗମା ଓ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଦଳରେ ଥିଲେ । ଓଡ଼ିଶାରେ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ମଧ୍ୟ ଏହି ଦଳରେ ଥିଲେ । ଏନ୍.ସି.ପି. ଦଳର ଓଡ଼ିଶା ରାଜ୍ୟର ସଭାପତି ହିସାବରେ କିଛି ବର୍ଷ କାର୍ଯ୍ୟ କଲି । ଶେଷରେ ସଭାପତି ପଦ ଛାଡ଼ି ଦେଇ ସବୁଦିନ ପାଇ ରାଜନୀତିରୁ ବିଦାୟ ନେଲି ।



# ସଞ୍ଜ ଗଡ଼ିଗଲା ପରେ

ବାଲେଶ୍ୱରରେ ଓକିଲାତି ଜୀବନରୁ ରାଜନୀତି ଆରମ୍ଭ କରି, ଦୀର୍ଘ ପଚାଶ ବର୍ଷ ଓଡ଼ିଶା ରାଜନୀତିରେ ସକ୍ରିୟ ରହି, ରାଜନୀତିରୁ ବିଦାୟ ନେଇ ଚୁପ୍‌ଚାପ୍ ଘରେ ରହିବା ଯେ କେତେ କଷ୍ଟପ୍ରଦ, ତାହା ଅନୁଭବୀ ହିଁ ଜାଣିବ । ପ୍ରତ୍ୟେକ ଦିନ ଲୋକମାନଙ୍କ ସହ କଥା ହେବା, ସେମାନଙ୍କ ସୁଖଦୁଃଖର କାହାଣୀ ଶୁଣିବା- ମୋ ଜୀବନର ଏକ ଅଙ୍ଗ ହୋଇଯାଇଥିଲା । ତେଣୁ ସମସ୍ତଙ୍କ ଠାରୁ ଦୂରେଇ, ଏକା ଏକା ଘରେ ରହିବା ଯଦିଓ ମୋତେ ଅସ୍ଥିର କରି ଦେଉଥିଲା ତଥାପି ଧୀରେ ଧୀରେ ତାହା ଅଭ୍ୟାସରେ ପରିଣତ ହୋଇଗଲା । ଏ ଦିଗରେ ମୋତେ ସବୁଠୁ ବେଶୀ ସାହାଯ୍ୟ କଲା ସାହିତ୍ୟ । ସତରେ ରାଜନୀତି ଠାରୁ ସାହିତ୍ୟ ବଡ଼ । ରାଜନୀତି ହେଉଛି କ୍ଷଣିକ, ସାହିତ୍ୟ କିନ୍ତୁ ଚିରନ୍ତନ ।

ପ୍ରକୃତରେ ମୁଁ ଯଦି ସାହିତ୍ୟ ଲେଖୁ ନଥା'ନ୍ତି, ସାହିତ୍ୟ ସହ ମୋର ଯଦି ଆନ୍ତରିକତା ନଥା'ନ୍ତା, ତା'ହେଲେ ଏ ପରିସ୍ଥିତିର ମୁକାବିଲା କରିବା ଅବଶ୍ୟ ମୋ ପାଇଁ ଯଥେଷ୍ଟ କଷ୍ଟସାଧ୍ୟ ହୋଇଥାଆନ୍ତା । ୨୦୦୦ ମସିହା ପରଠାରୁ ମୁଁ ବିଶେଷ ଭାବରେ ଶିଶୁମାନଙ୍କ ପାଇଁ ଗଳ୍ପ, କବିତା ଲେଖୁଛି, ଯାହା ମୋତେ ଅପାର ଆନନ୍ଦ ଦେଉଛି । ଜଗନ୍ନାଥଙ୍କ ପାଇଁ ଭଜନ ଲେଖୁଛି । ଯାହା ସବୁ ଚିଠି ପତ୍ର ଆସୁଛି, ତା'ର ଉତ୍ତର ଲେଖୁଛି । ଯୋଉ ସବୁ ପତ୍ରିକା ଓ ଖବର କାଗଜ ମୋ ପାଖକୁ ଆସୁଛି, ତା'କୁ ସବୁ ପଢୁଛି । ଏଇମିତି ଭାବରେ ସମୟ ବିତିଯାଉଛି ।

ପରିବାର ସହିତ ଶାନ୍ତିରେ, ଆନନ୍ଦରେ ଏବେ ସମୟ ବିତୁଛି । ପତ୍ନୀ, ପୁଅ ବୋହୂ, ଝିଅ ଜୋଇଁ, ନାତି ନାତୁଣୀଙ୍କ ମେଳରେ ମୋତେ ଲାଗୁଛି, ଯେମିତି ମୋ ପିଲାଦିନ ପୁଣିଥରେ ଫେରି ଆସିଛି । ପିଲାମାନଙ୍କ ହସରେ ଯେତେବେଳେ ମୋ ଘରେ ସକାଳ ଆସେ, ମୁଁ ବିଭୋର ହୋଇଉଠେ । ଜୀବନରେ ଯା'ଠାରୁ ବଡ଼ କଥା କ'ଣ ?

ପ୍ରତ୍ୟେକ ଦିନ ଠାକୁରଙ୍କ ପାଇଁ, ପୂଜା ପାଇ ମୁଁ ଯଥେଷ୍ଟ ସମୟ ଏବେ ଦେଉଛି । ଜଗନ୍ନାଥଙ୍କ ପାଖରେ ନିଜକୁ ସମର୍ପିତ କରିବା ପାଇ ଚେଷ୍ଟା କରୁଛି । ପ୍ରଭୁଙ୍କୁ ସବୁବେଳେ ଗୋଟିଏ କଥା କହୁଛି- "ହେ ପ୍ରଭୁ ! ଏ ସମାଜ, ଏ ଜାତିକୁ ଉଦ୍ଧାର କର । ସମସ୍ତଙ୍କୁ ଭଲରେ ରଖ ।"

ଅନେକ ଘାତ ପ୍ରତିଘାତ, ଉତ୍‌ଥାନ ପତନ ଭିତରେ ବୟସ ଆସି ଏମିତି ଏକ ସ୍ଥାନରେ ପହଞ୍ଚିଛି, ଯୋଉଠୁ ମୋତେ ସବୁକିଛି ସୁନ୍ଦର ଦେଖାଯାଉଛି । ସକାଳର କିରଣ, ରାତିର ଜ୍ୟୋତ୍ସ୍ନା, ପିଲାମାନଙ୍କର ହସ, ଠାକୁରଙ୍କ ସହ ଆତ୍ମୀୟତା, ଗଛରେ ଫୁଟିଥିବା ଫୁଲ- ସବୁ କିଛି ଭଲ ଲାଗୁଛି । ବାର୍ଦ୍ଧକ୍ୟ ଆସିଛି ସତ, ହେଲେ ମୁଁ ତା'କୁ ଘରର ଦୁଆରବନ୍ଧ ସେପଟେ ରହିବାକୁ କହିଛି । ରକ୍ତରେ ଶିଥିଳତା ଦେଖାଦେଇଛି, କଲମ ଧରି ଲେଖିଲା ବେଳେ ଯଦିଓ ହାତ ଥରୁଛି, ତଥାପି ମୋ ପରିବାର, ମୋ ଘର ମୋତେ ସେ ଅନୁଭବରୁ ଦୂରେଇ ରଖିବା ପାଇଁ ଖାଲି ଚେଷ୍ଟିତ ନୁହନ୍ତି, ସଫଳ ମଧ୍ୟ ହୋଇଛନ୍ତି ।

ସମୟ ସରି ଆସୁଛି । ବୟସ ବଢ଼ି ଯାଉଛି । ଜୀବନର ଅବଧି କମିଯାଉଛି । ତଥାପି ମୁଁ ଚିନ୍ତିତ ନୁହେଁ କି ମ୍ରିୟମାଣ ନୁହେଁ । ସାହିତ୍ୟରସ ପାନ କରି, ସଂପର୍କର ସୁନେଲି ବନ୍ଧନୀ ଭିତରେ, ପରିବାର ସୁରକ୍ଷା ମଧ୍ୟରେ ଜୀବନ ଚାଲିଛି । ଇମିତ ଚାଲୁଥାଉ । ହେ ଜୀବନ ! ମୁଁ ଆଜି ତୁମକୁ ଖୋଲା ହୃଦୟରେ ନମସ୍କାର କରୁଛି । ହେ ଈଶ୍ୱର ! ମୁଁ ଆଜି ତୁମକୁ ମଥା ନୁଆଁଇ ପ୍ରଣାମ କରୁଛି ।

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୋ ହାତରେ କଲମ ଥାଉ । କଲମ ମୁନରେ ଶବ୍ଦ ଥାଉ । ଶବ୍ଦ ଭିତରେ ଜୀବନବୋଧ ଥାଉ । ସ୍ନେହ, ମମତା ଓ ଭଲ ପାଇବାର ନିର୍ଯ୍ୟାସ ଥାଉ । ସେ ଭଲ ପାଇବା ସମସ୍ତଙ୍କ ମନକୁ ସ୍ପର୍ଶ କରୁ । ତା' ହେଲେ ଜାଣିବି, ଏ ଜୀବନ ସାର୍ଥକ ହୋଇଛି ।

ଶେଷରେ, ମୋତେ ଜନ୍ମ ଦେଇଥିବା ମାଟିକୁ ପ୍ରଣାମ । ମୋତେ ଜନ୍ମ ଦେଇଥିବା ମୋର ପିତାମାତାଙ୍କୁ ପ୍ରଣାମ ।



# ପ୍ରକାଶିତ ପୁସ୍ତକ

**କବିତା :**

୧. ରକ୍ତମୁଖୀ
୨. ସାର୍ଥକ କବିତା
୩. ଯନ୍ତ୍ରଣାର ଅନ୍ୟନାମ
୪. ହେ ଜୀବନ ! ହେ ଦୂରନ୍ତ ଝଡ଼
୫. ମେଘବର୍ଣ୍ଣା
୬. ନିଜ ଚିତାଗ୍ନିରେ ନିଜେ
୭. ଏବଂ ସମୁଦ୍ର
୮. ମଣିଷ ଖୋଜା
ନିର୍ବାଚିତ କବିତା

**ଗଳ୍ପ**

୯. ଦୁଇଟି ବୃନ୍ତରେ ଆଠଟି ଫୁଲ
(ଯୁଗ୍ମ ଲେଖକ : କସ୍ତୁରୀ ଚରଣ ଦାସ)
୧୦. ଜୀବନ ଜ୍ୱାଳା ଓ ଅନ୍ୟାନ୍ୟ ଗଳ୍ପ
୧୧. ମୋର ଗଳ୍ପ
୧୨. ନିଷିଦ୍ଧ ଚୌହଦୀ
୧୩. ସୀତାର ଅଭିଶାପ
୧୪. ମୁଖଦର୍ପଣ
୧୫. ସୂର୍ଯ୍ୟତାପରେ ଜଳୁଥିବା କୁନ୍ତୀ
୧୬. ନିର୍ବାଚିତ ଗଳ୍ପ
୧୭. ଦ୍ୱାରପାଳ ଓ ଅନ୍ୟାନ୍ୟ ଗଳ୍ପ

## ଉପନ୍ୟାସ

୧୮. ମଣିଷ ରାଜ୍ୟର ପଶୁ
୧୯. ପ୍ରଳୟପୟୋଧିଜଳେ
୨୦. ପ୍ରେମର ପ୍ରଥମ ସମ୍ବୋଧନ
୨୧. ଟିକିଏ ଭୁଲ୍ ପାଇଁ
୨୨. ମୃତ ବନ୍ଦରର ଇତିକଥା
୨୩. ବିଭୀଷିକା
୨୪. ଗ୍ରାମ୍ୟ ନଦୀର ତୀରେ
୨୫. ସାତତାଳ ପଙ୍କ
୨୬. ଭଗ୍ନ ମାନସୀ
୨୭. ନୀଡ଼ର ସନ୍ଧାନେ
୨୮. ମାଘ ଶେଷ ମେଘ ଶେଷ
୨୯. ଭଙ୍ଗା ଘର
୩୦. ଲୁହର ଫୁଲ
୩୧. ସନ୍ତାନ ସେତୁ
୩୨. ରାହୁ ମୁକ୍ତି
୩୩. କାହାଣୀ କୁବେର ପୁତ୍ରର
୩୪. ଶେଷ ସଂଳାପ
୩୫. ଆଦ୍ୟ ମଧ୍ୟ ପ୍ରାନ୍ତ

## ନାଟକ

୩୬. ପରଶ ମଣି
୩୭. ସଂଗ୍ରାମ
୩୮. ନୂଆ କିଛି ନୁହେଁ
୩୯. ସୂର୍ଯ୍ୟ ମନ୍ଦିର
୪୦. ଭୁଲି ହୁଏନା
୪୧. ସେତୁବନ୍ଧ
୪୨. କ୍ଷମା କରିବେ କି ?
୪୩. ରାତ୍ରି ଗୋ ତୁମେ କଥା- କୁହ

୪୪. ଅଥବା ଅନ୍ଧାର
୪୫. ଅଶାନ୍ତ ଦ୍ରୌପଦୀ
୪୬. ବାନ୍ଦୀ ବେଗମ୍ ବାଦଶାହା
୪୭. କଂସ

## ଏକାଙ୍କିକା

୪୮. ପଥ ଭିକାରୀ
୪୯. କ୍ଷୀରଚୋରା ଗୋପୀନାଥ
୫୦. ଆହତ ଅଶ୍ୱାରୋହୀ
୫୧. ଛୋଟ ନାଟକ
୫୨. ବାଘପୁରର ମିରିଗ ପଲ

## ଶିଶୁ ସାହିତ୍ୟ

୫୩. ଜାତିର ବାପୁଜୀ
୫୪. ପିଲାଏ ଶୁଣ
୫୫. ଗାଁ ହେଲା ଧରଗ
୫୬. ବିରାଡ଼ିଠୁ ସିଂହ
୫୭. ତିନି ବୀର
୫୮. ପଶୁପକ୍ଷୀ ମଣିଷ
୫୯. ଉଠରେ ପିଲେ ଉଠ
୬୦. ଓଡ଼ିଶା ଆମର ମାଆ

## ପ୍ରବନ୍ଧ ଓ ସମାଲୋଚନା

୬୧. ଓଡ଼ିଆ ସାହିତ୍ୟରେ ତ୍ରିବେଣୀ ଯୁଗ
୬୨. ଓଡ଼ିଆ ନାଟକ ପ୍ରସଙ୍ଗ

## ଅନୁବାଦ

୬୩. ସୁଖ
(ମୂଳ ଲେଖକ: ଅନ୍ନଦାଶଙ୍କର ରାୟ)
୬୪. ଲ୍ଭାଜ ଅତିଥି
(ମୂଳ ଲେଖକ: ଅନ୍ନଦାଶଙ୍କର ରାୟ)

୬୫. ବିବେକାନନ୍ଦ

କବିତା ଓ ଗଳ୍ପକୁ ମିଶେଇ ଏକତ୍ର ବହି କରିବା ଓଡ଼ିଶାରେ ନଥିଲା ପ୍ରଥମଥର ପାଇଁ ପ୍ରକାଶିତ ହେଲା-

୬୬. କବିତା ଓ ଗଳ୍ପ

**English**

67. Wings of the past
(Poetry collection)

**ହିନ୍ଦୀ**

୬୮. ସୂର୍ଯ୍ୟଛାୟା
(Short Story Collection)

୬୯. ସୂର୍ଯ୍ୟ ମନ୍ଦିର (ନାଟକ)
(ଅନୁବାଦକ: ଡ. ଶଙ୍କରଲାଲ ପୁରୋହିତ)

# ପୁରସ୍କାର ଓ ସମ୍ମାନ

୧. ଝଙ୍କାର କବିତା ପୁରସ୍କାର-୧୯୭୪
୨. ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର-୧୯୭୮
(ନାଟକ 'ଅଥବା ଅନ୍ଧାର' ପାଇଁ)
୩. ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର-୧୯୮୪
୪. ରାଧାନାଥ ପାଠାଗାର ସମ୍ମାନ
୫. ଶ୍ରଦ୍ଧାକର ସୂପକାର ସମ୍ମାନ
୬. ଗାଁଆ ମଜଲିସ୍ ସମ୍ମାନ (ସୋର)-୨୦୦୧
୭. ଆଦି ନାଟ୍ୟକାର ସମ୍ମାନ (ମାହାଙ୍ଗା)-୨୦୦୧
୮. ଜୀବନରଙ୍ଗ ସମ୍ମାନ - ୨୦୦୧
୯. ରାମଚନ୍ଦ୍ର ମିଶ୍ର ନାଟକ ସମ୍ମାନ
(ଉତ୍କଳ ସାହିତ୍ୟ ସମାଜ)-୨୦୦୨
୧୦. କବି ସରସ୍ୱତୀ ଫକୀରମୋହନ ସମ୍ମାନ
('କାଳାନ୍ତର' ପତ୍ରିକା)-୨୦୦୩

୧୧. ପରିଷଦ ଗୌରବ ସମ୍ମାନ
(ଫକୀରମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର)-୨୦୦୪

୧୨. ଆଦିକବି ସମ୍ମାନ (ତିର୍ତ୍ତୋଲ)- ୨୦୦୪

୧୩. ଶ୍ରେଷ୍ଠ ସାହିତ୍ୟିକ ସମ୍ମାନ
(କାଂଶବାଂଶ ସାଂସ୍କୃତିକ ପରିଷଦ, ସୋର)- ୨୦୦୫

୧୪. ସୁଲେଖା ସାରସ୍ୱତ ସମ୍ମାନ
ଓ ଶିଶୁ ସାହିତ୍ୟିକ ସମ୍ମାନ- ୨୦୦୫

Konark National Theatre Award

୧୫. (Award for Life time Achievement
by Indian Theatre Olympiad) ୨୦୦୬

୧୬. ଭୁବନେଶ୍ୱର ପୁସ୍ତକମେଳା ସମ୍ମାନ-୨୦୦୭

୧୭. ଶିଶୁ କଲମ ସମ୍ମାନ- ୨୦୦୭

୧୮. ସଂସାର ବିଶେଷ ସମ୍ମାନ- ୨୦୦୭

୧୯. ନବକାକଳି ସମ୍ମାନ- ୨୦୦୭

୨୦. ସାରଳା ସମ୍ମାନ- ୨୦୦୭

୨୧. ସାଗରିକା ସମ୍ମାନ- ୨୦୦୮

୨୨. ରସରାଜ ଗୀତିକୁଞ୍ଜ ସମ୍ମାନ-୨୦୧୦

୨୩. ପୂର୍ବତନ [illegible] ପତି ସମ୍ମାନ
(ଫକୀ[illegible]ମୋହନ [illegible]ତ୍ୟ ପରିଷଦ, ବାଲେଶ୍ୱର)- ୨୦୦୮

୨୪. ମୀନାକ୍ଷ[illegible] ସାହିତ୍ୟ ସମ୍ମାନ- ୨୦୦୯

୨୫. ଶିରାପୁର ହାଇସ୍କୁଲ ସମ୍ମାନ

୨୬. ଗଙ୍ଗାଧର ମହାପାତ୍ର ସ୍ମୃତି ସମ୍ମାନ - ୨୦୧୦

୨୭. ଫକୀରମୋହନ ବିଶ୍ୱ ବିଦ୍ୟାଳୟ ସମ୍ମାନ - ୨୦୧୦

୨୮. କବିବର ରାଧାନାଥ ରାୟ ସମ୍ମାନ (ଚିରସନ୍ଧାନ)- ୨୦୧୧

୨୯. ସ୍ମାର୍ଟ ସମ୍ମାନ - ୨୦୧୨

୩୦. ଫକୀରମୋହନ କଲେଜ ଛାତ୍ର ଗୌରବ ସମ୍ମାନ ।





## ଶ୍ରୀଯୁକ୍ତ ଯଦୁନାଥ ଦାଶମହାପାତ୍ର

ଜନ୍ମ - ୧୯୨୯ ମସିହା

ଓଡିଶାର ସାରସ୍ୱତ ଜଗତରେ ଶ୍ରୀ ଯଦୁନାଥ ଦାଶମହାପାତ୍ର ଅନ୍ୟତମ କୃତବିଦ୍ୟ ଲେଖକ । ପିତା ରାଜନାରାୟଣ ଓ ହାରାମଣି ଦେବୀଙ୍କର ସେ ଦ୍ୱିତୀୟ ସନ୍ତାନ । ୧୯୨୯ ମସିହା ମାର୍ଚ୍ଚ ମାସ ତା ୧ ରିଖରେ ବାଲେଶ୍ୱର ଜିଲ୍ଲା କୁଡେଇ ଗାଁରେ ସେ ଜନ୍ମ ଗ୍ରହଣ କରିଥିଲେ । ରାଧାନାଥ ମଧ ଇଂରାଜୀ ବିଦ୍ୟାଳୟ ସୋରରୁ ମାଇନର, ସତ୍ୟାନନ୍ଦ ହାଇସ୍କୁଲରୁ ମାଟ୍ରିକ୍, ବାଲେଶ୍ୱର କଲେଜ (ବର୍ତ୍ତମାନ ଫକୀର ମୋହନ କଲେଜ) ରୁ ଆଇ. ଏ ଏବଂ ରେଭେନସା କଲେଜରୁ ବି.ଏ, କଲିକତା ବିଶ୍ୱବିଦ୍ୟାଳୟରୁ ଏଲ୍. ଏଲ୍. ବି ପାସ କରି ବାଲେଶ୍ୱରରେ ଓକିଲାତି ଓ ସାମ୍ବାଦିକତାରେ କିଛିବର୍ଷ ପାଇଁ ଅଧିଷ୍ଠିତ ହେଲେ । ଛାତ୍ର ସମୟରୁ ଲେଖାଲେଖିରେ ମନୋନିବେଶ କରି ଆଜିସୁଦ୍ଧା ତାଙ୍କର ସାଧନାକୁ ଅବ୍ୟାହତ ରଖି ପାରିଛନ୍ତି । ତାଙ୍କ ଦ୍ୱାରା ଲିଖିତ ଆଠଖଣ୍ଡ କବିତା, ନଅଖଣ୍ଡ ଗଳ୍ପ, ଅଠରଖଣ୍ଡ ଉପନ୍ୟାସ, ବାରଖଣ୍ଡ ନାଟକ, ପାଞ୍ଚଖଣ୍ଡ ଏକାଙ୍କିକା, ଆଠଖଣ୍ଡ ଶିଶୁ ସାହିତ୍ୟ, ଦୁଇଖଣ୍ଡ ପ୍ରବନ୍ଧ ଓ ସମାଲୋଚନା, ଦୁଇଖଣ୍ଡ ଇଂରାଜୀ କବିତା, ହିନ୍ଦୀରେ ଅନୁଦିତ ଦୁଇଖଣ୍ଡ ଗଳ୍ପ ଓ ନାଟକ ଓଡିଆ ସାହିତ୍ୟର ମହାର୍ଘ ସଂପଦ । ସେ ୧୯୭୮ ମସିହାରେ "ଅଥବା ଅନ୍ଧାର"ନାଟକ ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

ତାଙ୍କର ସାରସ୍ୱତ କୃତୀ ପାଇଁ ତିରିଶିରୁ ଉର୍ଦ୍ଧ୍ୱ ପୁରସ୍କାର ଓ ସମ୍ମାନ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ପ୍ରଦାନ କରାଯାଇଅଛି ।

ଶିକ୍ଷା ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ବି ତାଙ୍କର ଅବଦାନ ବେଶ୍ ଉଲ୍ଲେଖ ଯୋଗ୍ୟ । ଓଡିଶା ରାଜନୀତିରେ ସେ ଦୀର୍ଘ ଦୁଇ ଦଶନ୍ଧି ଧରି ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରୀପଦ ହାସଲ କରି ଅର୍ଥ, ଶିକ୍ଷା, ସଂସ୍କୃତି, ପର୍ଯ୍ୟଟନ କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି କରାଇଛନ୍ତି । ତାଙ୍କର ଶାସନକାଳ ଭିତରେ ଶିକ୍ଷା ଓ ସଂସ୍କୃତି ବିଭାଗ ପକ୍ଷରୁ ଓଡିଶାର ଦୁଃସ୍ଥ କଳାକାରମାନଙ୍କୁ ୧୯୭୪ ମସିହାଠାରୁ ନିୟମିତ କଳାକାର ଭତ୍ତା ପ୍ରଦାନ କରାଗଲା । ୧୯୭୬ ମସିହା ପରଠାରୁ ଓଡିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶିଶୁ ସାହିତ୍ୟିକମାନଙ୍କୁ ନିୟମିତ ଶିଶୁସାହିତ୍ୟ ପୁରସ୍କାର ଦେବାକୁ ବ୍ୟବସ୍ଥା କରା ଯାଇଥିଲା ।

ଗୋଟିଏ ଉଚ୍ଚ କୋଟୀର ବ୍ୟକ୍ତି ସତ୍ତା, ଗୋଟିଏ ନିରୋଳା ମଣିଷର ଜୀବନ, ଗୋଟିଏ ନିଛକ କବିପଣ ନିଜ ଭିତରେ ବାନ୍ଧିରଖି ଦୀର୍ଘ ସତାଅଶୀଟି ଋତୁକୁ ସେ ଅତିସନ୍ତର୍ପଣରେ ଅତିକ୍ରମ କରି ସାରିଛନ୍ତି ।

ସାରସ୍ୱତ ଜଗତର ଜଣେ ସିଦ୍ଧସାଧକ ଭାବରେ ଓଡିଶାର ଜନସାଧାରଣଙ୍କ ହୃଦୟରେ ସବୁଦିନ ସେ ପ୍ରତିଭାତ ହେଉଥିବେ ।

ତାଙ୍କର ଆତ୍ମଜୀବନୀ ଗ୍ରନ୍ଥ "ଜୀବନ ସ୍ମୃତି" ସବୁ ବର୍ଗର ପାଠକପାଠିକାଙ୍କର ସ୍ପୃହଣୀୟ ଓ ଗ୍ରହଣୀୟ ହୋଇ ଅନେକ କାଳ ପାଇଁ ରହିଥିବ ।

- ଅଧ୍ୟୟନ